# ୧୯୦୯ ମସିହାରୁ ଏ ପର୍ଯ୍ୟନ୍ତ



ଲେଖିକା

ରାଜମାତା ରତ୍ନପ୍ରଭା ଦେବୀ

ରାଜବାଟୀ, ଢେଙ୍କାନାଳ

ଓଡ଼ିଶା

ପ୍ରକାଶକ:
**ରାଜୀବ ଲୋଚନ ସିଂହଦେଓ**
ବିଦ୍ୟୁତ୍‌ମାର୍ଗ ୯(କ)
ଭୂବନେଶ୍ୱର

**ପ୍ରଥମ ପ୍ରକାଶ:**
**ଦଶହରା - ୧୯୯୭**

ମୁଦ୍ରଣ:
**ଚନ୍ଦ୍ରଶେଖର ପ୍ରେସ୍**
କୁଞ୍ଜକାନ୍ତ, ଢ଼େଙ୍କାନାଳ,ଫୋନ୍ - ୩୪୭୮୧

**ମୂଲ୍ୟ : ୬୦/-(ଷାଠିଏ ଟଙ୍କା)**
( ଏହାର ବିକ୍ରି ,ଲବ୍‌ଧ ଅର୍ଥ ଢ଼େଙ୍କାନାଳ ମହିଳା ପ୍ରସୂତୀ ବିଭାଗରେ ବିନିଯୋଗ କରାଯିବ)



ରାଜମାତା ରତ୍ନପ୍ରଭା ଦେବୀ

ଜନ୍ମ: ୧୯୦୯ ମସିହା ଡ଼ିସେମ୍ବର, ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀ

ବିବାହ: ୧୯୨୪ ମସିହା

ଓଡ଼ିଶା ବିଧାନ ସଭାର ପ୍ରତିନିଧି - ୧୯୫୬ରୁ ୧୯୭୧

# ପୂର୍ବାଭାସ

ଭୁବନେଶ୍ୱର, ଜୁନ୍ ୧୨/୧୯୯୫
ବିଦ୍ୟୁତ ମାର୍ଗ ୯ (ବ)

## ଓଁ ନମୋ ଭଗବତେ ବାସୁଦେବାୟ

କନକ - ଜଳଦଗାତ୍ରୌ     ନୀଳସ୍ୱର୍ଣ୍ଣାବ୍ଜନେତ୍ରୌ
ମୃଗମଦବରଭାଲୌ     ମାଳତୀକୁନ୍ଦମାଳୌ
ତରୁଣିତରୁଣବେଶୌ     ନୀଳପୀତାମ୍ବରୌ ତୌ
ସ୍ମର ନଭୃତ ନିକୁଞ୍ଜେ     ରାଧିକାକୃଷ୍ଣକାନ୍ତୌ

**ହରି ଓଁ**

ମୋର ଏହି ବହିଟି ମୁଁ ଦିଲ୍ଲୀ ଭ୍ରମଣରେ ଆଜିକୁ ଦୁଇ ବର୍ଷରୁ ଅଧିକ ହେବ ଯାଇଥିବା ସମୟରେ ମୋର ବଡ଼ପୁଅ କାମାକ୍ଷ୍ୟା ମୋତେ ଦିନେ କହିଲେ, "ମା" ଲୋକର ବାର୍ଦ୍ଧକ୍ୟ ଅବସ୍ଥା ଆସିଲେ ସ୍ୱତଃ ମନରେ ରାଗ ଆସେ ଓ ଲୋକର ସ୍ମରଣ ଶକ୍ତି ଅଳ୍ପ ବହୁତ ଲୋପପାଇଯାଏ, ତେଣୁ ମନରେ ଯେଉଁ ଭାବ ବା ଭାଷା ଉଦ୍ରେକ ହେଉଛି ତାହା ପୁସ୍ତକ ଆକାରରେ ଲିପିବଦ୍ଧ କରି ରଖ ।" ମୁଁ ସେହିଦିନରୁ ମୋର ଢେଙ୍କାନାଳର ଏହି ୭୦ବର୍ଷ ସ୍ମୃତିର ସୁଖ ଦୁଃଖର କାହାଣୀ ବହିଟି ଲେଖିବାକୁ ଆରମ୍ଭ କଲି । ଏପର୍ଯ୍ୟନ୍ତ ସେଥିରେ ଯାହା ଉଲ୍ଲେଖ ଅଛି ତାହା ପାଠକ ପାଠିକାବୃନ୍ଦ ପଢିଲେ ସମ୍ୟକ ଜ୍ଞାନ ଉପଲବ୍ଧି କରିପାରିବେ । ମୁଁ ସମୟ ସୁବିଧା ଦେଖି ବହିଟି ଲେଖିଥିବାରୁ ଏଥିରେ ଧାରାବାହିକ କ୍ରମ ବ୍ୟତିକ୍ରମ ହୋଇପାରିଥାଏ । ତେଣୁ ପାଠକ ପାଠିକାଙ୍କଠାରୁ କ୍ଷମା ଭିକ୍ଷା କରୁଛି ।

ମୁଁ ଯେ ଜଣେ ପଣ୍ଡିତ ଏ ଧାରଣା ମୋର ନାହିଁ । କେବଳ ସବୁ ପାଠକ ପାଠିକାବୃନ୍ଦ ଯଦି କିଛିଟା ମୋ ବହିରୁ ଭଲ ମନ୍ଦ ବିବେଚନା କରି ମୋ ପ୍ରତି ସେମାନଙ୍କର କରୁଣା ପ୍ରଦର୍ଶନ କରନ୍ତି ତା'ହେଲେ ମୋର ଲେଖା ସାର୍ଥକ ହେବ ।

ରତ୍ନପ୍ରଭା ଦେବୀ

# ଦୁଇପଦ !

ଏ ପୁସ୍ତକ ଉପରେ ଦୁଇ ପଦ ଲେଖିବାକୁ ମୋତେ ସୁଯୋଗ ମିଳି ଥିବାରୁ, ମୁଁ ନିଜକୁ ଧନ୍ୟ ମନେ କରୁଅଛି ।

ଢେଙ୍କାନାଳରେ ୭୦ ବର୍ଷ ତଳର ରାଜତନ୍ତ୍ର ଶାସନ କାଳରେ କଡା ପରଦା ନିୟମ ଭିତରୁ ବାହାରି ରାଣୀ ଶ୍ରୀମତୀ ରତ୍ନପ୍ରଭା ଦେବୀ, ଗ୍ରାମ୍ୟ ଲଳନାଙ୍କୁ ସ୍ୱାସ୍ଥ୍ୟ ସେବାପାଇଁ ଡାକ୍ତରଖାନାକୁ ଯିବା ପାଇଁ ପ୍ରବର୍ତ୍ତାଇଥିଲେ । ଏଥିରେ କିଛି ସଫଳତା ଲାଭ କଲା ପରେ ସେ ଏହି ଗ୍ରାମ୍ୟ ଲଳନାମାନଙ୍କୁ ଧରି ଗୋଟିଏ ଗାର୍ଲଗାଇଡ ଦଳ ଗଢିଥିଲେ । ସେ ନିଜେ ଥିଲେ ଏହି ଦଳର ଚିଫ୍ ଗାଇଡ୍ । ଏ ସଂଗଠନକୁ କଲିକତା, ଦିଲ୍ଲୀ ଆଦି ସ୍ଥାନକୁ ନେଇ ଏହା ମାଧ୍ୟମରେ ବାହାର ଦୁନିଆକୁ ପ୍ରଭାବିତ କରି ପାରିଥିଲେ ।

ସେ ଇଂଲଣ୍ଡ, ସ୍କଟଲ୍ୟାଣ୍ଡ, ପଶ୍ଚିମ ଓ ମଧ୍ୟ-ଇଉରୋପ ଏବଂ ଉତ୍ତର ଆମେରିକା ଓ କାନାଡା ପରିଭ୍ରମଣ କରି ବହୁତ କିଛି ପାଶ୍ଚାତ୍ୟ ସଭ୍ୟତା ସଂସ୍କୃତି ଉପରେ ବେଶ୍ କିଛି ଅଭିଜ୍ଞତା ଅର୍ଜ୍ଜନ କରିଛନ୍ତି ।

ସେ ଢେଙ୍କାନାଳ ଦେବୋତ୍ତର ବିଭାଗର ମୁଖ୍ୟଥିଲେ ଓ ମୁଁ ତାଙ୍କ ନିର୍ଦ୍ଦେଶରେ ଦେବୋତ୍ତର ଅଫିସର ଭାବେ କାର୍ଯ୍ୟ ତୁଲାଇ ଥିଲି । ସେ କାଳରେ ଦେବୋତ୍ତର ବିଭାଗର ନିୟନ୍ତ୍ରିତ କାର୍ଯ୍ୟ ଧାରା ଆଜି ଭଳି ବିଶୃଙ୍ଖଳିତ ନଥିଲା ।

ସେ ସ୍ୱାଧୀନ ଭାରତର ଓଡିଶା ବିଧାନ ସଭାରେ ତିନିଥର ୧୯୫୬ ରୁ ୧୯୭୧ ମସିହା ଯାଏ ନିର୍ବାଚିତ ପ୍ରତିନିଧି ଥିଲେ ।

ସେ ଜଣେ ଭକ୍ତିମତୀ ମହିଳା ଏବଂ ବହୁ ଦେବା ଦେବୀ ପୂଜା କରି ସନ୍ତାନ ପ୍ରାପ୍ତ ହୋଇଛନ୍ତି । ଜ୍ୟେଷ୍ଠ ପୁତ୍ର ଶ୍ରୀ କାମାଖ୍ୟା ପ୍ରସାଦ ସିଂହଦେଓ ଦେଶର ଗର୍ବ ଓ ଗୌରବ ଭାବେ ଆଜି କେନ୍ଦ୍ର ମନ୍ତ୍ରୀ ମଣ୍ଡଳରେ ସୂଚନା ପ୍ରସାରଣ ମନ୍ତ୍ରୀ ଅଛନ୍ତି ।

ତାଙ୍କ ଲିଖିତ ତାଙ୍କର ଏ ଜୀବନ ଚରିତ ପୁସ୍ତକଟି ତାଙ୍କର ପ୍ରଥମ ଓଡିଆ ପୁସ୍ତକ ନୁହେଁ । ମନେ ହୁଏ ତାଙ୍କର ପ୍ରଥମ ଓଡିଆ ପୁସ୍ତକ ହେଉଛି 'ଗାର୍ଲ ଗାଇଡି ଶିକ୍ଷା' । କଟକର କେତେକ ପ୍ରତିଷ୍ଠିତ ପୁସ୍ତକ ବିକ୍ରେତାଙ୍କ ପୁସ୍ତକ ତାଲିକାରେ ଏ ଗୁଡିକ ପଞ୍ଜିକୃତ ହୋଇ ଅଛି ।

ମୋର ଆଶା ଏ ପୁସ୍ତକ ଖଣ୍ଡିକ ନିଶ୍ଚୟ ପାଠକଙ୍କ ଦ୍ୱାରା ଆଦୃତ ହେବ ଓ ଓଡିଆ ସାହିତ୍ୟକୁ ସମୃଦ୍ଧ କରିବ ।

ବୋରାପଦା

ଢେଙ୍କାନାଳ, ୩୦/୬/୯୫

**ଶ୍ରୀଶେଷ ପ୍ରତାପ ସିଂହଦେଓ**

(ଓଡିଆ ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ)

# ୧୯୦୯ ମସିହାରୁ ଏପର୍ଯ୍ୟନ୍ତ

ମୋର ବର୍ତ୍ତମାନ ବୟସ ୮୪ ବର୍ଷ । ମୁଁ ୧୯୨୪ ମସିହାରେ ଢେଙ୍କାନାଳ ଆସିଲି । ମୋର ଦୀର୍ଘ ୭୦ବର୍ଷର ଅଭିଜ୍ଞତା, ଢେଙ୍କାନାଳ ଜୀବନ ବିଷୟରେ ମୁଁ ମୋର ପିଲାମାନଙ୍କ ପାଇଁ ଲେଖୁଛି । ଅଧିକ ବୟସର ଅବସାଦ ଆସିଥିଲେ ମଧ୍ୟ ମୋର ମନ ଏବଂ ଦେହ ଏବେ ମଧ୍ୟ ଯଥେଷ୍ଟ ସୁସ୍ଥ ଓ ସତେଜ ରହିଛି । ଏହି କାରଣରୁ ବାର୍ଦ୍ଧକ୍ୟ ଜନିତ କ୍ଲାନ୍ତି ମୁଁ ବେଶି କିଛି ଅନୁଭବ କରୁ ନାହିଁ ଏହା ସହିତ ଦୁଇ ସୁଯୋଗ୍ୟ ପୁତ୍ର, ନାତି, ନାତୁଣୀ ଓ ଅଣନାତି, ଅଣନାତୁଣୀଙ୍କ ଆନନ୍ଦ ମୁଖରିତ ସଂସାର ମୋତେ ସବୁବେଳେ ଅଧିକ ଉତ୍ସାହିତ କରୁଛି ସୁସ୍ଥ ସବଳଭାବରେ ଦିବ୍ୟ ଜୀବନ କଟାଇନେବାକୁ । ଏବେ ମଧ୍ୟ ମୋର କର୍ମରେ ଓ ଚିନ୍ତାରେ କୌଣସି ମଳିନତା ପ୍ରବେଶ କରି ନାହିଁ । ଦୀର୍ଘ ୮୪ ବର୍ଷ ସମୟର ଅନେକ ଘଟଣା, ବହୁ ଅଙ୍ଗନିଭା କାହାଣୀ, ବିଭିନ୍ନ ପରିସ୍ଥିତି ଏବଂ ନାନା ପରଚାଳନାଗତ କାର୍ଯ୍ୟକ୍ରମ ପ୍ରାୟ ପ୍ରତ୍ୟେକ ସମୟରେ ମୋର ସ୍ମୃତି ପଟକୁ ଆପଣାଛାଏଁ ଆସିଯାଉଛି । ଏହା ଯେପରି ସ୍ମୃତି ବହୁଳ, ସେହିପରି ଶିକ୍ଷଣୀୟ ଓ ଆନନ୍ଦ ଦାୟକ । ଏହିସବୁ କଥାର ଖିଅ ଧରି ଭାବି ବସିଲେ ମନ ବେଶ୍ ଆବେଗମୟ ହୋଇ ଉଠୁଛି ଏବଂ କ୍ଷୟ ହୋଇ ଆସୁଥିବା ଏହି ଶରୀର ମଧ୍ୟରେ ଅକ୍ଷୟ ଶକ୍ତି ସଂଚାରିତ ହେଉଛି । ଏତେ କାଳର ଦୀର୍ଘ ଜୀବନରେ ଯେତେବେଳେ ଏକାକୀ ହୋଇପଡେ ସେତେବେଳେ ବେଶୀ ମନେ ପଡନ୍ତି ମୋର ଆରାଧ୍ୟ ଜୀବନ ଦେବତା ସ୍ୱାମୀ Honorary Wing Commander ରାଜା ଶଙ୍କର ପ୍ରତାପ ସିଂହଦେବ ମହୀନ୍ଦ୍ର ବାହାଦୁର ବିଦ୍ୟାସାଗର FRAS (Fellow of Royal Asiatic Society) True Massonic Lodge, Scotland Yard, Magic Circle, London. Diploma from Berlitz School of Language, Berlin.

ରାଜା ଶଙ୍କର ପ୍ରତାପ ଥିଲେ ଆଦର୍ଶବାଦୀ, ଦେବତୁଲ୍ୟ ମଣିଷ । ଅତି ସରଳ ତାଙ୍କର ଜୀବନ ଯାପନ । ସେ ଥିଲେ ଅତ୍ୟନ୍ତ ଜ୍ଞାନପିପାସୁ ଏବଂ ନିରହଙ୍କାରୀ । ବିଚାର ଆଲୋଚନା କଲାବେଳେ ସେ ପ୍ରତ୍ୟେକ ବିଷୟର ଅତି ଗଭୀର ଓ ବିଶଦ ଅନୁଧ୍ୟାନ କରୁଥିଲେ । ତହିଁ ମଧ୍ୟରୁ ସେ କେବଳ ସତ୍ୟକୁ ହିଁ ବାହାର କରୁଥିଲେ ଏବଂ ବିନା ବାଧାରେ କେବଳ ସେହି ସତ୍ୟକୁ ଗ୍ରହଣ କରୁଥିଲେ । ମିଥ୍ୟା ପ୍ରତି ଥିଲା ତାଙ୍କର ଅଶେଷ ଘୃଣା । ମିଛ କହୁଥିବା ଲୋକଙ୍କୁ ସେ ଅନାୟାସରେ ଚିହ୍ନିପାରୁଥିଲେ ଏବଂ ସର୍ବଦା ସେମାନଙ୍କଠାରୁ ନିଜକୁ ଦୂରରେ ରଖୁଥିଲେ । ଛଳନା କରୁଥିବା ବ୍ୟକ୍ତିମାନଙ୍କୁ ସେ କେବେହେଲେ ପ୍ରଶୟ ଦେଉ ନଥିଲେ । ଏହି କାରଣରୁ ମିଥ୍ୟାବାଦୀ ଓ ଛଳନାକରୀ ବ୍ୟକ୍ତିମାନେ ଯେଝା ସ୍ୱାର୍ଥ ସିଦ୍ଧି

ମାୟାଜାଲ ସୃଷ୍ଟିକରି ବହୁ ଚକ୍ରାନ୍ତ ମୂଳକ ଇତିହାସର ଖଳନାୟକ ହୋଇଥିଲେ । ସେମାନଙ୍କର ବହୁରଙ୍ଗ ବୋଲା କଥାରେ କିପରି ଅନେକ ଭଳି ଯାଉଥିଲେ, ତାହା ସେ ଉପଲବ୍ଧି କରୁଥିଲେ ମଧ୍ୟ ସେମାନଙ୍କର କ୍ଷତି ହେଲାପରି କୌଣସି କାର୍ଯ୍ୟ କରୁନଥିଲେ । ସେ ଥିଲେ ଚିରନ୍ତନ ଉଦାର ଏବଂ କ୍ଷମାଶୀଳ । ସେ ବହୁ ଆପଦ ବିପଦ ନିଜ ଉପରକୁ ନେଇ ଅନ୍ୟମାନଙ୍କୁ ବିପଦ ଆପଦରୁ ଜୀବନ ସର୍ବସ୍ୱ ଦେଇ ରକ୍ଷା କରୁଥିଲେ । ବିଜ୍ଞାନ, ସାହିତ୍ୟ, କଳା, ଇତିହାସ, ଭୂଗୋଳ, ପ୍ରାଣୀ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ, ସମର ବିଜ୍ଞାନ ଆଦି ପ୍ରତ୍ୟେକ ବିଷୟରେ ତାଙ୍କର ଅପୂର୍ବ ଜ୍ଞାନ ଥିଲା । ବିଭିନ୍ନ ବିଷୟରେ ଜାଣିବାକୁ ଅନେକ ପୁସ୍ତକ ପଢୁଥିଲେ । ବିଭିନ୍ନ ପ୍ରକାର ପୁସ୍ତକ କିଣିବା ପଢିବା ଏବଂ ବାନ୍ଧିବା ଥିଲା ତାଙ୍କର ଏକମାତ୍ର ସଉକ ବା ବିଳାସ । ଅଶେଷ ମମତା ଥିଲା ତାଙ୍କର ପୁସ୍ତକ ପାଠରୁ ଜ୍ଞାନ ଆହରଣ କରିବା । ବହି ସେ ଏପରି ପଢୁଥିଲେ ଯେ ତାହାର ସଂଖ୍ୟା, ପୃଷ୍ଠା ଓ ବିଷୟବସ୍ତୁ ଆକ୍ଷରିକ ଏବଂ ନିର୍ଭୁଲଭାବରେ ସ୍ପଷ୍ଟ ମନେ ରଖିପାରୁଥିଲେ । ତାଙ୍କର ସ୍ମରଣ ଶକ୍ତି ଅତ୍ୟନ୍ତ ପ୍ରଖର ଥିଲା । ସେ ପୁସ୍ତକ ପାଠରୁ ଏବଂ ଦେଶ ବିଦେଶ ତଥାଭାରତର ପ୍ରତ୍ୟେକ ଅଞ୍ଚଳ ଭ୍ରମଣ କରି ସେଠାକାର କଳା, ସଂସ୍କୃତି ଓ ଅନୁଷ୍ଠାନ ବିଷୟରେ ଯେଉଁ ଜ୍ଞାନ ଅର୍ଜନ କରୁଥିଲେ ତାହା କିପରି ତାଙ୍କ ରାଜ୍ୟରେ ପ୍ରତିଫଳିତ ହେବ ଏବଂ ଏହାଦ୍ୱାରା ସମସ୍ତଙ୍କର ଆଚରଣ କିପରି ପରିମାର୍ଜିତ ହେବ, ସମସ୍ତେ କିପରି ଜ୍ଞାନଦୀପ୍ତ ହେବେ ଏହା ସବୁବେଳେ ସେ ଚିନ୍ତାକରୁଥିଲେ । ଜ୍ଞାନବଳରେ ଢ଼େଙ୍କାନାଳର ଜନସାଧାରଣ କିପରି ପ୍ରତିଷ୍ଠା ଲାଭ କରିବେ, ସର୍ବ କ୍ଷେତ୍ରରେ କିପରି ଯଶସ୍ୱୀ ହେବେ, ବିଜୟ ଲାଭ କରିବେ ଓ ଗୌରବ ଅର୍ଜନ କରିବେ, ଏହି ବିଷୟ ନେଇ ସେ ସର୍ବଦା ଭାବୁଥିଲେ ଓ ପରିସର ଭୁକ୍ତ ନିଜ କ୍ଷମତା ଭିତରେ ଯଥାବିଧି କାର୍ଯ୍ୟ କରୁଥିଲେ । କାଳେ ବହି ଗୁଡିକ କେହି ସଂପୂର୍ଣ୍ଣ ଭାବରେ ପଢିପାରିବେ ନାହିଁ କିମ୍ବା ନିଜେ କେବେ ବହିଟିର ବିଷୟବସ୍ତୁ ଭୁଲିଯିବେ ଏଥିଲାଗି ସବୁ ବହିଗୁଡିକର ସାରାଂଶ ଅତି ପ୍ରାଞ୍ଜଳ ଭାବରେ ସୁନ୍ଦର ସୁନ୍ଦର ଅକ୍ଷରରେ ବହିର ୧ମ ପୃଷ୍ଠାର ପୂର୍ବରୁ ଲେଖି ନେଇଥାନ୍ତି । କେବଳ ସେତିକି ପଢିଦେଲେ ସମଗ୍ର ବହିକୁ ପଢିଲାପରି ମନେହେବ । ତାଙ୍କ ପାଣ୍ଡିତ୍ୟର ଏହା ହେଉଛି ଅନ୍ୟ ଏକ ଦିଗନ୍ତ । ସମୟ ଦେଇ ପରିଶ୍ରମ କରି ବହିଗୁଡିକର ସୁରକ୍ଷା ପାଇଁ ସେ ଅନ୍ୟ କାହାର ସାହାଯ୍ୟ ନନେଇ ବହିକୁ ସିଲେଇ କରି ସୁନ୍ଦର ଭାବରେ ବାନ୍ଧନ୍ତି ଏବଂ ସୁଦୃଶ୍ୟ ଭାବରେ ସଜାଇ ରଖନ୍ତି । ଜଣେ ଉଚ୍ଚମନା, ନିରଳସ, ନିରହଙ୍କାରୀ ପାଣ୍ଡିତ୍ୟପୂର୍ଣ୍ଣ ସଫଳ ମଣିଷ ଭିତରେ ଯେଉଁ ସବୁ ସଦ୍‌ଗୁଣ ପରିପୂର୍ଣ୍ଣ ଭାବରେ ରହିବାର କଥା, ସେହିସବୁ ତାଙ୍କରିଠାରେ ଭରପୁର ହୋଇ ରହିଥିଲା । ତାଙ୍କ ସହିତ ଯେଉଁମାନେ କିଛିଟା ପରିଚିତ ହେବାର ସୁଯୋଗ ପାଇଛନ୍ତି,

ସେମାନେ ମୁକ୍ତ କଣ୍ଠରେ ବିନା ଦ୍ୱିଧାରେ ଏହା ଆଜି ଗଭୀର ଭାବରେ ସ୍ୱୀକାର କରନ୍ତି । ଏବେ ମଧ୍ୟ ବହୁବ୍ୟକ୍ତି ବହୁ ଅନୁଷ୍ଠାନରେ ବିଭିନ୍ନ ସ୍ଥାନରେ ଓ ବିଭିନ୍ନ ପଦପଦବୀରେ ରହିଛନ୍ତି ଯେଉଁମାନେ କି ଏ ସମ୍ପର୍କରେ ସ୍ପଷ୍ଟମତ ପ୍ରକାଶ କରନ୍ତି ଯେ, ସେ ଥିଲେ ଜଣେ ବହୁ ପ୍ରତିଭାଶାଳୀ ସଫଳ ବ୍ୟକ୍ତିତ୍ୱ । ସଫଳତାର ପ୍ରତୀକ ଭାବରେ ସେ ନିଜେ ହିଁ ପ୍ରକୃତରେ ଥିଲେ ଜଣେ ସତ୍ୟାନୁଶ୍ରୟୀ ଉତ୍ତମ ମଣିଷ ଏବଂ ସାମଗ୍ରିକ ଭାବରେ ଏକ ଶ୍ରେଷ୍ଠ ଅନୁଷ୍ଠାନ ଓ ସାଧକ ।

ସେ ଥିଲେ ଅତ୍ୟନ୍ତ ଈଶ୍ୱରଭକ୍ତ । ଦେଶର ଓ ରାଜ୍ୟର ସମସ୍ତ ଧର୍ମାନୁଷ୍ଠାନଗୁଡିକ ସେ କେବଳ ଦର୍ଶନ କରି ତୃପ୍ତିଲାଭ କରୁ ନଥିଲେ, ପ୍ରତ୍ୟେକ ତୀର୍ଥାନୁଷ୍ଠାନ ଗୁଡିକରେ ଲୋକାଚାର ଓ କୁଳାଚାର ରକ୍ଷାକରି ସମସ୍ତ ବିଧିବିଧାନ ଅନୁସାରେ ନିଷ୍ଠାର ସହିତ ପାରମ୍ପରିକ ରୀତିରେ ପୂଜା ଆରାଧାନା କରୁଥିଲେ ଅତି ପବିତ୍ର ମନରେ ଓ ତନ୍ମୟ ଚିତ୍ତରେ । ଓଡିଶାର ସମସ୍ତ ଦେବାଦେବୀଙ୍କ ଦର୍ଶନ ସହିତ ଅମରନାଥ, କେଦାରନାଥ, ବଦ୍ରିନାଥ, କନ୍ୟାକୁମାରୀ, ରାମେଶ୍ୱରମ୍, କାମାକ୍ଷା, ପଦ୍ମନାଭସ୍ୱାମୀ, ନଟରାଜ, ପକ୍ଷୀତୀର୍ଥ, ଶ୍ରୀଲଙ୍କା ଓ ଢାକା ସମେତ ସବୁ ଅଞ୍ଚଳର ଦେବାଦେବୀ ତାଙ୍କ ଦର୍ଶନରେ ଅନ୍ତର୍ଭୁକ୍ତ ଥିଲା । ତୀର୍ଥାନୁଷ୍ଠାନଗୁଡିକରେ ପୂଜାପୂଜି କରିବା ସହିତ ଦେଶଭ୍ରମଣ ଏବଂ ରମଣୀୟ ସ୍ଥାନ ପରିଦର୍ଶନର ସେ ସଂପୂର୍ଣ୍ଣ ସୁଯୋଗ ନେଉଥିଲେ । ଏହା ଦ୍ୱାରା ବିଭିନ୍ନ ଅଞ୍ଚଳର ଇତିହାସ ସଂସ୍କୃତି, ଚାଲିଚଳଣର ଧାରା, ଜୀବନ ନିର୍ବାହର ମାଧ୍ୟମ, ଭାଷା, କଳା, କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ବ୍ୟବସାୟ ଆଦି ବିଭିନ୍ନ ବିଷୟ ସମ୍ପର୍କରେ ବିସ୍ତୃତ ଅନୁଧ୍ୟାନ କରୁଥିଲେ ଏବଂ ଗ୍ରହଣୀୟ ଓ ଶିକ୍ଷଣୀୟ ବିଷୟବସ୍ତୁ କାର୍ଯ୍ୟରେ ବିନିଯୋଗ କରିବାପାଇଁ ଉଦ୍ୟମ କରୁଥିଲେ । ସେ ଖୁବ୍ ସହଜରେ ଲୋକମାନଙ୍କ ସହିତ ମିଶି ପାରୁଥିଲେ । ବଡ, ସାନ, ଜ୍ଞାନୀ, ମୁର୍ଖ, ଗାଉଁଲି, ସହରୀ ଆଦି ଭେଦଭାବ ତାଙ୍କଠାରେ ଆଦୌ ନଥିଲା । ଫଳରେ ଲୋକମାନଙ୍କ ବିଷୟରେ ସେ ଅନେକ କିଛି ସଂଗ୍ରହ କରି ପାରୁଥିଲେ । ଦେଶ ବିଦେଶର ଯାହା କିଛି ଭଲ, ଜାତି, ଧର୍ମ ଓ ବର୍ଣ୍ଣନିର୍ବିଶେଷରେ ତାହା ସେ ଉଦାର ଚିତ୍ତରେ ଗ୍ରହଣ କରୁଥିଲେ । ନିଜ ଦେଶ ଭାରତ ବର୍ଷକୁ ଛାଡିଦେଲେ ଇଂଲଣ୍ଡ, ଆମେରିକା, ହଙ୍ଗେରୀ, ଯୁଗୋସ୍ଲୋଭିଆ, ଜର୍ମାନୀ, ଫ୍ରାନ୍ସ, ମିଶର, ଅଷ୍ଟ୍ରିଆ, ସ୍କଟଲାଣ୍ଡ ଆଦି ବିଭିନ୍ନ ଦେଶମାନ ଏକ ଭାରତୀୟ ହିସାବରେ ନିଜର ସ୍ୱାତନ୍ତ୍ର ଓ ସ୍ୱାଭିମାନ ରକ୍ଷାକରି ପରିବାର ସହିତ ପରିଭ୍ରମଣ କରିଥିଲେ । ଆମର ଏ ବିଦେଶ ଭ୍ରମଣ ବେଳେ ଭାରତୀୟ ଆତ୍ମାର, ସଂସ୍କୃତିର ଓ ଐତିହ୍ୟର ଶ୍ରୀବୃଦ୍ଧିପାଇଁ ସେ ସର୍ବଦା ସଚେତନ ରହି ସମ୍ମାନ ଓ ମର୍ଯ୍ୟାଦାର ସହିତ କାର୍ଯ୍ୟ କରୁଥିଲେ । ଏହାଦ୍ୱାରା

ବିଦେଶର ପ୍ରତ୍ୟେକ ସ୍ଥାନରେ ମର୍ଯ୍ୟାଦାପୂର୍ଣ୍ଣ ସମ୍ମାନ ପାଉଥିଲେ । ତାହା ସେତେବେଳେ ଆମଦେଶ ପାଇଁ ଏକ ଗୌରବମୟ ଅଧ୍ୟାୟ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେତେବେଳର ଶାସିତ ଦେଶର ଜଣେ ବ୍ୟକ୍ତିକୁ ଶାସକ ଦେଶର ଜନସାଧାରଣ ଓ ଶାସନ କର୍ତ୍ତୃପକ୍ଷ ସମ୍ମାନ ପ୍ରଦର୍ଶନ କରିବା କିଛି କମ କଥା ନଥିଲା । ନିଜର ପ୍ରତିଭାପୂର୍ଣ୍ଣ ବ୍ୟକ୍ତିତ୍ୱ ଦ୍ୱାରା ଅନ୍ୟମାନଙ୍କୁ ପ୍ରଭାବିତ କରିବାର ଅଦ୍ଭୁତ କ୍ଷମତା ତାଙ୍କଠାରେ ଦୈବୀକୃପା ବଳରେ ନିହିତ ଥିଲା । ଏହିସବୁ ଦେବୋପମ ଗୁଣଯୋଗୁଁ ସେ ଏକ କାଳଜୟୀ ବ୍ୟକ୍ତିତ୍ୱ ଭାବରେ ଆତ୍ମପ୍ରକାଶ କରିଥିଲେ ହେଁ ଅନେକ ଈର୍ଷ୍ୟାତୁର ହୋଇ ତାହା ସହ୍ୟ କରିପାରିନଥିଲେ । ତେବେ ମଧ୍ୟ ସେ ସବୁବେଳେ 'ସ୍ଥିତପ୍ରଜ୍ଞ' ଭାବରେ ଅବିଚଳିତ ରହୁଥିଲେ ଏବଂ କାହାପ୍ରତି ଅସୂୟାଭାବ ପୋଷଣ କରୁନଥିଲେ । ଅମ୍ଳାନ ଥିଲା ତାଙ୍କର ବହୁମୁଖୀ ପ୍ରତିଭା ।

ନିଜର ପିତାମାତାଙ୍କ ପ୍ରତିଥିଲା ତାଙ୍କର ଅସୀମ ଭକ୍ତି । ତାଙ୍କର ପିତା, ରାଜା ସ୍ୱର୍ଗତଃ ସୁରପ୍ରତାପ ମହୀନ୍ଦ୍ର ବାହାଦୁର ଥିଲେ ମଣିଷ ରୂପରେ ଦେବ ପୁରୁଷ । ଧର୍ମ, କର୍ମ, ନ୍ୟାୟ, ସତ୍ୟ, ଦୟା, ସଦଜ୍ଞାନ ଓ ସଦାଚାରର ପ୍ରତୀକ ଭାବରେ ସେ ରାଜ୍ୟ ଶାସନ କରୁଥିଲେ ଏବଂ ଏହା ଇତିହାସର ଏକ ଉଜ୍ଜ୍ୱଳ ଅଧ୍ୟାୟ ବୋଲି ସ୍ୱୀକାର କରାଯାଏ । ଯେଉଁମାନେ ତାଙ୍କର ସମ୍ପର୍କରେ ଆସିଛନ୍ତି ସେମାନେ କେବେ ତାଙ୍କୁ ଏବଂ ତାଙ୍କର ସ୍ମୃତିକୁ ଭୁଲି ପାରିବେ ନାହିଁ । ଯେତେବେଳେ ରାଜ୍ୟର ପ୍ରଭୂତ ଉନ୍ନତି ପାଇଁ ପ୍ରାଣ ଦେଇ କାର୍ଯ୍ୟ କରି ଆସୁଥିଲେ ସେତେବେଳେ, ମାତ୍ର ୩୩ ବର୍ଷ ବୟସରେ ଆଶ୍ୱିନ ଶୁକ୍ଳ ଏକାଦଶି ତିଥିରେ ୧୯୧୮ ମସିହାରେ ତାଙ୍କର ଅକାଳ ବିୟୋଗ ଘଟିଲା । ସେତେବେଳେ ଶଙ୍କର ପ୍ରତାପ ଥିଲେ ମାତ୍ର ୧୪ ବର୍ଷ ବୟସର ବାଳକ । ଅବୋଧ ହେଲେ ହେଁ ପିତାଙ୍କର ବହୁ ଦେବ ଦୁଃର୍ଲଭ ଗୁଣ ତାଙ୍କୁ ପର୍ଯ୍ୟାପ୍ତ ଭାବରେ ଅନୁପ୍ରାଣିତ କରିଥିଲା । ଫଳରେ ପିତାଙ୍କ ମୃତ୍ୟୁଜନିତ ଦୁଃଖରେ ସେ ଭାଙ୍ଗି ପଡି ନଥିଲେ । ଧୈର୍ଯ୍ୟର ସହିତ ପିତୃବିୟୋଗାତ୍ମକ ପରିସ୍ଥିତିକୁ ସାହସର ସହିତ ମୁକାବିଲା କରିଥିଲେ । ଜୀବନ କାଳ ମଧ୍ୟରେ ପିତୃଋଣ ପରିଶୋଧ କରି ପାରିବେ କି ନାହିଁ ସେ ଚିନ୍ତା କରି ବେଳେବେଳେ ସେ ଅତ୍ୟନ୍ତ ମର୍ମାହତ ହୋଇ ପଡୁଥିଲେ । ତଥାପି ସେହି ଲୁହଝରା ଦୁଃଖ ମଧ୍ୟରେ ନିଜର କର୍ତ୍ତବ୍ୟ ସେ ନିର୍ଦ୍ଧାରଣ କରି ନେଇଥିଲେ ।

## ପ୍ରତିଭାନ୍ୱିତ କ୍ଷଣଜନ୍ମା ସୁରପ୍ରତାପଙ୍କ ଜନ୍ମ

୧୮୮୫ ମସିହା ଶିବଚତୁର୍ଦ୍ଦଶୀ ଦିନ କପିଳାସ ପ୍ରଭୁ ଚନ୍ଦ୍ରଶେଖରଙ୍କ ଜାଗର ଉତ୍ସବରେ ଯେତେବେଳେ ମହାଦୀପ ଉଠୁଥିଲା ସେହି ଶୁଭକ୍ଷଣରେ ମାତୃକୋଳରୁ ରାଜର୍ଷି

ସୁରପ୍ରତାପ ଭୂମିଷ୍ଠ ହୋଇଥିଲେ । ତାଙ୍କ ଜନ୍ମ ମୁହୂର୍ତ୍ତ ତାଙ୍କୁ ଦେବତାର ଆସନରେ ବସାଇଥିଲା । ତାଙ୍କ ମା' ଅର୍ଥାତ ମୋ ଜେଜେ ଶାଶୁ ସ୍ୱର୍ଗତାଃ ଅର୍ଣ୍ଣପୂର୍ଣ୍ଣା ଦେବୀ ଶାସ୍ତ୍ରଜ୍ଞ, ଧର୍ମପରାୟଣା, ବୁଦ୍ଧିମତୀ ଏବଂ ସର୍ବଗୁଣ ସମ୍ପନ୍ନା ମହିୟସୀ ମହିଳା ଥିଲେ । ଏକମାତ୍ର ସନ୍ତାନ ସୁରପ୍ରତାପଙ୍କୁ ଗଢିବାରେ ତାଙ୍କର ମାତୃତ୍ୱ ଓ ପ୍ରତିଭା ବିଶେଷ ଭାବରେ ସାହାଯ୍ୟ କରିଥିଲା । ପରେ ତୀର୍ଥ ପର୍ଯ୍ୟଟନ, ଦେବାଦେବୀରେ ଭକ୍ତି ଓ ପ୍ରଜାରଞ୍ଜନ କାର୍ଯ୍ୟକ୍ରମରେ ସୁରପ୍ରତାପ ତାଙ୍କର ସ୍ୱଳ୍ପ ଜୀବନକାଳ ସଂପୂର୍ଣ୍ଣ ବିନିଯୋଗ କରିଥିଲେ । ଶ୍ରୀବୃନ୍ଦାବନରେ ରାଧାରମଣ ଜୀଉ ମନ୍ଦିରର ପୂଜକ ଓ ସତ୍ତ୍ୱାଧିକାରୀ ସ୍ୱର୍ଗତଃ ମଧୁସୂଦନ ଗୋସ୍ୱାମୀ ମହାଶୟଙ୍କଠାରୁ ସେ ଦୀକ୍ଷା ନେଇଥିଲେ ଏବଂ ଯଥାର୍ଥରେ ଏକ ସାର୍ଥକ ସାଧୁସନ୍ଥଙ୍କ ପରି ଜୀବନ କଟାଇ ରାଜ୍ୟର ପ୍ରଭୂତ ଉନ୍ନତି ସକାଶେ କାର୍ଯ୍ୟ କରିଥିଲେ ।

ରାଜର୍ଷି ସୁର ପ୍ରତାପ କୁଞ୍ଜକାନ୍ତ ମନ୍ଦିର ନିର୍ମାଣପରେ ଏହାର ପୂଜାବିଧି ନିମନ୍ତେ ସମସ୍ତ ସୁବିଧା କରିଥିଲେ। ସେତେବେଳେ ଅଗମ୍ୟ କପିଳାସ ଚନ୍ଦ୍ରଶେଖର ମନ୍ଦିର ନିକଟରେ ଗୋଟିଏ ପକ୍କା ବିଶ୍ରାମାଗାର ନିର୍ମାଣ କରିଥିଲେ । ଦେଓଗାଁଠାରୁ ମନ୍ଦିର ପର୍ଯ୍ୟନ୍ତ ରାସ୍ତା ହେଉଛି ତାଙ୍କର ଅକ୍ଷୟ କୀର୍ତ୍ତି, ତାଙ୍କ ମା ଅର୍ଣ୍ଣପୂର୍ଣ୍ଣା ଦେବୀ ତାଙ୍କର ସ୍ୱକୀୟ ଧାର୍ମିକ ପରାକାଷ୍ଠା ଦେଇ ଶ୍ରୀ ନାରାୟଣ ମୂର୍ତ୍ତି ପ୍ରତିଷ୍ଠା କରିଥିଲେ । ତାଙ୍କର ପ୍ରତ୍ୟକ୍ଷ ନିର୍ଦ୍ଦେଶରେ ମୂର୍ତ୍ତି ନିର୍ମାଣ କଲାବେଳେ କପିଳାସର ଝରପାଣି ବିଗ୍ରହଙ୍କର ପାଦରୁ ଅମୃତ ଝରିବାଭଳି ମୌଳିକ ଧାର୍ମିକ ଚିନ୍ତାର ରୂପରେଖ ଦେଇ ତିଆରି କରିଥିବାରୁ ଏହା ଦର୍ଶନ କଲାବେଳେ ଆଜି ପ୍ରତ୍ୟେକଙ୍କ ମନରେ ଗଭୀର ଧର୍ମଭାବ ଉଦ୍ରେକ ହୋଇଥାଏ । କପିଳାସ ଏକ ପ୍ରଖ୍ୟାତ ଧର୍ମପୀଠ ଏବଂ ଐତିହାସିକ ତଥା ରମଣୀୟ ଓ ସ୍ୱାସ୍ଥ୍ୟକର ସ୍ଥାନ । ଜୀବନର ଦୁଃଖକଷ୍ଟ ପାସୋରି ହୋଇ ଯାଏ ଯଦି କେହି କପିଳାସରେ କିଛି କ୍ଷଣ ପାଇଁ ରହି ଶ୍ରୀ ଚନ୍ଦ୍ରଶେଖରଙ୍କୁ ଦର୍ଶନ କରେ ଓ କ୍ରମେ ଛାଏଁ ଛାଏଁ ବିସ୍ତୃତ ଦିଗବଳୟ ଓ ଆକାଶ ପୃଥିବୀ ମଧ୍ୟରେ ବଣ ପାହାଡ ଘେରା କପିଳାସର ରମଣୀୟ ଶୋଭା ସମ୍ଭାର, ତା'ର ମୃଦୁମନ୍ଦ ସୁଶୀତଳ ସମୀରଣ, ତା'ର ଶୀତଳ, ସୁସ୍ୱାଦୁ ରୋଗହାରୀ, ଚିରସ୍ରୋତା ଜଳଧାରା, ପକ୍ଷୀମାନଙ୍କ ମଧୁର ଗୁଞ୍ଜନ, ମର୍କଟ ଶାବକ ମାନଙ୍କର ମନୋମୁଗ୍ଧକର ଖେଳ ଭିତରେ ନିଜକୁ ଭୁଲିଯାଏ ।

ରାଜା ସୁରପ୍ରତାପ ମହୀନ୍ଦ୍ର ବାହାଦୁର ଢ଼େଙ୍କାନାଳ ହାଇସ୍କୁଲ ସହିତ ଗୋଟିଏ କଲେଜ ପ୍ରତିଷ୍ଠା ପାଇଁ ଉଦ୍ୟମ କରିଥିଲେ । ସେହି ଉଦ୍ଦେଶ୍ୟରେ ହାଇସ୍କୁଲ ଗୃହ ନିର୍ମାଣ କାର୍ଯ୍ୟ ଚାଲୁଥିଲା ବେଳେ ତାଙ୍କର ମୃତ୍ୟୁ ହେବାରୁ ତାହା ସେତେବେଳେ ବନ୍ଦ ରହିଲା । ତାଙ୍କର ଏହି ଅସଂପୂର୍ଣ୍ଣ କାର୍ଯ୍ୟକୁ ସଂପୂର୍ଣ୍ଣ କରିବା ପାଇଁ ପରବର୍ତ୍ତୀ ସମୟରେ ତାଙ୍କର ପୁତ୍ର

ରାଜା ଶଙ୍କର ପ୍ରତାପ ଉଦ୍ୟମ କରିଥିଲେ ହେଁ ରାଜ୍ୟରେ ଅନାବଶ୍ୟକ ଅସ୍ଥିରତା ଏବଂ କେତେକ ସ୍ୱାର୍ଥାନ୍ୱେଷୀ ମୁଷ୍ଟିମେୟ ଲୋକଙ୍କର ଦୁଷ୍ଟ ବୁଦ୍ଧି ଓ ଖଳପ୍ରକୃତି ଯୋଗୁଁ ତାହା ସମ୍ଭବ ହୋଇ ପାରିଲା ନାହିଁ । କିନ୍ତୁ ଉଦ୍ୟମ ଅବ୍ୟାହତ ରହିଥିଲା, ସୁଯୋଗ ସମୟରେ ଏହା ସମ୍ପୂର୍ଣ୍ଣ କରିବା ପାଇଁ ।

ମୋର ବାପା ଷଢେଇକଳା ମହାରାଜା ସ୍ୱର୍ଗତଃ ଆଦିତ୍ୟ ପ୍ରତାପ ସିଂହଦେଓ ଏବଂ ମୋର ପୂଜ୍ୟନୀୟ ଶ୍ୱଶୁରଙ୍କ ସହିତ ଶଳା ଭିଣୋଇ ସମ୍ପର୍କ । ମୋର ପିଉସୀ କୃଷ୍ଣଚନ୍ଦ୍ର ପ୍ରିୟା ବିବାହ ହୋଇ ଥାଆନ୍ତି ରାଜା ସୁରପ୍ରତାପ ମହୀନ୍ଦ୍ର ବାହାଦୁରଙ୍କୁ । ତାଙ୍କର ମୃତ୍ୟୁ ବେଳକୁ ମୋ ବାପା ଆସିଥାନ୍ତି ଢ଼େଙ୍କାନାଳ ଶୋକାକୁଳ ତାଙ୍କ ଭଉଣୀ ଓ ଭଣଜାମାନଙ୍କୁ ପ୍ରବୋଧନା ଦେବା ପାଇଁ । ଅନ୍ତ୍ୟେଷ୍ଟିକ୍ରିୟା ପରେ ସୁରପ୍ରତାପଙ୍କର ନିଜହାତ ଲେଖା ଟୁକୁରା କାଗଜ ଖଣ୍ଡିଏ ମୋ ବାପାଙ୍କୁ ଦେଖିବାକୁ ଦିଆଗଲା । ସେଥିରେ ଲେଖାଥିଲା ତାଙ୍କର ଅନ୍ୟ ପାଞ୍ଚ ପୁଅମାନେ କେଉଁ କେଉଁ ଖମାର ସେମାନଙ୍କର ଚଳପ୍ରଚଳ ପାଇଁ ପାଇବେ । ସେ କାଗଜ ଖଣ୍ଡିକ ପଢ଼ିବାପରେ ତାଙ୍କ ବଡ ଭଣଜା ଶଙ୍କର ପ୍ରତାପଙ୍କୁ ଫେରାଇ ଦେଲେ କୌଣସି ମନ୍ତବ୍ୟ ନଦେଇ । ସେତିକିରେ ମାତ୍ର ଏକ ଇଂଗୀତ ଧର୍ମୀ କର୍ତ୍ତବ୍ୟକର୍ମ ପାଳନ କରିବା ପାଇଁ ସ୍ୱଷ୍ଟ ସଙ୍କେତ ଆମ୍ବ ପ୍ରକାଶ କରିଥିଲା । ଏହି ହାତଲେଖା କାଗଜଖଣ୍ଡିକ ଶଙ୍କର ପ୍ରତାପ ସାଇତି ରଖିଥିଲେ ଯେତେବେଳେ ସମୟସୁଯୋଗ ଆସିବ ସେତେବେଳେ ଲେଖାଅନୁସାରେ ପିତୃଆଜ୍ଞା ପାଳନ କରିବେ । ସେ ଯେତେବେଳେ ସାବାଳକ ହେଲେ ଏବଂ ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣ କଲେ ପିତୃ ନିର୍ଦ୍ଦେଶ ଅନୁସାରେ ଜମିବାଡି ସହିତ ଉଲ୍ଲିଖିତ ଖମାରଗୁଡିକ ଭାଇମାନଙ୍କ ନାମରେ ତତ୍‌କାଳୀନ ନିୟମାନୁସାରେ ମଞ୍ଜୁର କରିଥିଲେ । ଏହାଦ୍ୱାରା ସେ ପିତୃଆଜ୍ଞା ପାଳନ କଲେ ଏବଂ ନାବାଳକ ଭାଇମାନଙ୍କ ପ୍ରତି କର୍ତ୍ତବ୍ୟ ସଂପାଦନ କଲେ । ସେମାନଙ୍କ ପ୍ରତି ତାଙ୍କର ସ୍ନେହ ଶ୍ରଦ୍ଧା ପରିପୂର୍ଣ୍ଣ ଭାବରେ ରହିଥିଲା । ତାଙ୍କ ଭାଇମାନେ ମଧ୍ୟ ସେହିପରି ବଡଭାଇଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କରୁଥିଲେ । ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ଭଲ ମଣିଷ ହିସାବରେ ଗଢ଼ିବାକୁ ପ୍ରବଳ ଉଦ୍ୟମ କରିଥିଲେ । ଆତ୍ମନିର୍ଭରଶୀଳ ହେବାକୁ ସେ ସବୁବେଳେ ସେମାନଙ୍କୁ ଉତ୍ସାହ ପ୍ରଦାନ କରୁଥିଲେ । ତାଙ୍କର ତଳ ଭାଇ ସ୍ୱର୍ଗତଃ ନୃସିଂହ ପ୍ରତାପ ସିଂହ ଦେଓଙ୍କୁ ସେ ବିଲାତ ପଠାଇଥିଲେ ବାର-ଆଟ-ଲ ପଢ଼ିବାକୁ । ୩ୟ ଭାଇ ରାଜକୁମାର ଶ୍ରୀ ଶ୍ରୀଶେଷ ପ୍ରତାପ ସିଂହଦେଓଙ୍କୁ ବି.ଏ. ପଢ଼ିବାପରେ କଟକ ଓ ପାଟନାରେ ଆଇନ ବିଦ୍ୟା ପଢ଼ାଇଥିଲେ । ତାଙ୍କ ତଳ ଭାଇ ଶ୍ରୀ ବ୍ରଜେଶ ପ୍ରତାପ ସିଂହଦେଓଙ୍କୁ ପ୍ରତିଷ୍ଠିତ କରିବା ପାଇଁ ଡମପଡାର ରାଜଗାଦୀରେ ଅଧିଷ୍ଠିତ

କରାଇଥିଲେ । ତମପଡାରେ ସେ ଅମରେନ୍ଦ୍ର ମାନସିଂହ ଭ୍ରମରବର ରାୟ ନାମରେ ଗାଦିସୀନ ହେଲେ । ଏଥିରେ ଅନେକ ସମସ୍ୟା ସୃଷ୍ଟି ହୋଇଥିବାରୁ ତାଙ୍କୁ ପ୍ରିଭି କାଉନ୍‌ସିଲ୍ ପର୍ଯ୍ୟନ୍ତ ଲଢିବାପାଇଁ ଯିବାକୁ ପଡିଥିଲା । ସେଠାରେ ସେ ସମ୍ମାନର ସହିତ ଜୟଯୁକ୍ତ ହୋଇଥିଲେ । ପଞ୍ଚମ ଓ ଷଷ୍ଠଭାଇ ଯଥାକ୍ରମେ ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେଓ ଓ ଶ୍ରୀ ସମରେନ୍ଦ୍ର ପ୍ରତାପ ସିଂହଦେଓଙ୍କୁ ବିଲାତର ଯଥାକ୍ରମେ Leeds University ଓ Kings College, London University କୁ ପଢିବାପାଇଁ ପଠାଇଥିଲେ । ଶ୍ରୀମାନ ଗୌରେନ୍ଦ୍ର ଇଂଲଣ୍ଡ ପକ୍ଷରୁ ଆନ୍ତର୍ଜାତୀୟ କ୍ଷେତ୍ରରେ ହକି ଖେଳିଥିଲେ ଏବଂ ୧୯୩୪ ମସିହାରେ ୱାର୍ଲଡ Scout Jamboree ରେ ପଣ୍ଡିତ ଶ୍ରୀ ବାମଦେବ ରଥ IAS ଓ Flg. Officer ବିନୟ ଘୋଷ, IASଙ୍କ ସହିତ ଅଷ୍ଟ୍ରେଲିଆଠାରେ ଭାରତବର୍ଷକୁ ପ୍ରତିନିଧିତ୍ୱ କରିଥିଲେ । ଶ୍ରୀମାନ ସମରେନ୍ଦ୍ରଙ୍କୁ ସେତେବେଳର ଭାରତୀୟ ପୋଲିସ୍ (IP) ପରୀକ୍ଷା ପାଇଁ ଉତ୍ସାହ ଓ ପ୍ରୋତ୍ସାହନ ଦେଇଥିଲେ ଏବଂ ସେଥିରେ ସେ କୃତକାର୍ଯ୍ୟ ହୋଇଥିଲେ । ସେତେବେଳେ ଓଡିଶାରେ ମାତ୍ର ଅଳ୍ପ କେତେ ଜଣ ଥିଲେ ସର୍ବୋଚ୍ଚ ପୋଲିସ ସେବା ଚାକିରିରେ । ଶ୍ରୀମାନ ସମରେନ୍ଦ୍ର ସେମାନଙ୍କ ମଧ୍ୟରୁ ଅନ୍ୟତମ । ସେ ମୁଙ୍ଗେର ପୋଲିସ ଅଧୀକ୍ଷକ ଭାବରେ ନିଯୁକ୍ତି ପାଇଥିଲେ ମଧ୍ୟ ବ୍ରିଟିଶ ସରକାର ଅଧୀନରେ ଚାକିରୀ କରିବେ ନାହିଁ ବୋଲି ତାହାକୁ ସମ୍ମାନର ସହିତ ପ୍ରତ୍ୟାଖାନ କରିଥିଲେ । କେବଳ ନିଜଭାଇମାନଙ୍କର ପଢାପଢି ଦିଗରେ ସେ ନିଜର କର୍ତ୍ତବ୍ୟ ସଂପାଦନ କରି ତୃପ୍ତି ଲାଭ କରିନଥିଲେ, ଢେଙ୍କାନାଳନର ମେଧାବୀ ଓ ଗରିବ ଛାତ୍ରମାନଙ୍କୁ ପଢିବା ପାଇଁ ସେ ବିଭିନ୍ନ ଭାବରେ ଉତ୍ସାହିତ କରୁଥିଲେ । ଉଦାରତାର ସହିତ ଆର୍ଥିକ ସାହାଯ୍ୟ ଦେଉଥିଲେ । ବିଶେଷ ଶିକ୍ଷାପ୍ରାପ୍ତି ପାଇଁ କେତେକଙ୍କୁ ସେ ବିଲାତ ବା ଅନ୍ୟାନ୍ୟ ପାଶ୍ଚାତ୍ୟ ଦେଶକୁ ପଠାଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ସ୍ୱର୍ଗତଃ ପଣ୍ଡିତ ଶିଖରେଶ୍ୱର ମିଶ୍ର, ସ୍ୱର୍ଗତଃ ପଣ୍ଡିତ ବାମଦେବ ରଥ, ଶ୍ରୀ ହରେକୃଷ୍ଣ ମିଶ୍ର, ଶ୍ରୀ ବାଞ୍ଛାନିଧି ମିଶ୍ର, ଶ୍ରୀ ଗୌରହରି ବିଶ୍ୱାଳ, ଶ୍ରୀ ରାମକୃଷ୍ଣ ମଙ୍ଗରାଜ, ଶ୍ରୀ କୃଷ୍ଣ ଚନ୍ଦ୍ର ହରିଚନ୍ଦନ ସିଂ ଏବଂ ଆହୁରି ଅନେକ । ସେ ଅଭୟ ଶଙ୍କର ରାୟ ଓ ଅଜୟ ଶଙ୍କର ରାୟଙ୍କୁ ଯଥାକ୍ରମେ ଜାପାନ ଓ ଜର୍ମାନ ପଠାଇଥିଲେ ଗୃହ ଶିଳ୍ପ, ଖାଦ୍ୟ ସଂରକ୍ଷଣ ଏବଂ Art ଓ Printing ପଢିବାକୁ । ତତ୍‌କାଳୀନ S.P. ରାୟ ବାହାଦୁର ଶ୍ରୀ ବ୍ରଜବିହାରୀ ବର୍ମନଙ୍କ ପୁତ୍ର ଶ୍ରୀ ଏସ୍.ପି. ବର୍ମନଙ୍କୁ ବାର-ଏଟ-ଲ ପଢିବାରେ ସେ ଆଂଶିକ ସାହାଯ୍ୟ କରିଥିଲେ । ଶ୍ରୀ ଏସ୍.ପି ବର୍ମନ ପରବର୍ତ୍ତୀ କାଳରେ ଓଡିଶା ହାଇକୋର୍ଟର Chief Justice ହୋଇଥିଲେ । ତାଙ୍କ ମହତ୍ତ୍ୱପୂର୍ଣ୍ଣ ବ୍ୟକ୍ତିତ୍ୱର ଅନ୍ୟ ଏକ ଆକର୍ଷଣୀୟ ସଦ୍‌ଗୁଣ ହେଲା ନିଜ ନାମରେ କୌଣସି ଖମାର ସେ ରଖିନଥିଲେ ।

ପରିବାର ତଥା ବନ୍ଧୁବାନ୍ଧବ ଓ ଅନେକ ହିତୈଷୀ ବ୍ୟକ୍ତି କିଛି ଖମାର ନିଜ ନାମରେ ଭବିଷ୍ୟତ ପାଇଁ ରଖିବା ନିମନ୍ତେ ପ୍ରସ୍ତାବ ଦେଇଥିଲେ ହେଁ ତାହାକୁ ସେ ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରିଥିଲେ । ସେଥିରେ ତାଙ୍କର ଯୁକ୍ତି ଥିଲା ଅତ୍ୟନ୍ତ ଅକାଟ୍ୟ ଏବଂ ତହିଁରେ ଥିଲା ବୈଷ୍ଣବୀୟ ଆଧ୍ୟାତ୍ମିକତାର ପ୍ରତିଫଳନ । ''ମୁଁ ମାତ୍ର ଜଣେ ମଣିଷ । ମୋର ଭବିଷ୍ୟତ ମୋ ନିଜ ହାତରେ ନାହିଁ । ମଣିଷ ଜନ୍ମନିଏ ଶୂନ୍ୟ ହାତରେ ଯାଏ ମଧ୍ୟ ଶୂନ୍ୟ ହାତରେ ।

ଭବିଷ୍ୟତ କଥା ଭବିଷ୍ୟତ ବୁଝିବ ।'' ଆସନ୍ତାକାଲିର କଥା ଆଜି ବୁଝିବାର ଆବଶ୍ୟକତା କେଉଁଠି ? ବୋଲି ସେ ପଚାରି ବସନ୍ତି । ଆଉ ସେଇଥିରେ ସମସ୍ତଙ୍କର ମୁହଁ ବନ୍ଦ ହୋଇ ଯାଏ । ଏକ ମୁକ୍ତ ବଳୟ ଭିତରେ କର୍ତ୍ତବ୍ୟ ସଂପାଦନ ପାଇଁ ତାଙ୍କ ପରି ଜଣେ ନିର୍ଲିପ୍ତ ମଣିଷର ପ୍ରଜ୍ଞାବାଦୀ ମାନବିକ ସତ୍ତା ତାଙ୍କୁ ସବୁବେଳେ ପ୍ରବର୍ତ୍ତାଇଥିଲା । ଲୋଭ ତାଙ୍କୁ ଆଦୌ ସ୍ପର୍ଶ କରି ପାରି ନଥିଲା । ଟଙ୍କା, ପଇସା, ସୁନାରୂପା ଅନ୍ୟାନ୍ୟ ସଂପତ୍ତି ପ୍ରତି ତାଙ୍କର କୌଣସି ଲାଳସା ନଥିଲା କି ମମତା ନଥିଲା । ସେ ଟଙ୍କା ପଇସାରୁ ଦୂରରେ ରହୁଥିଲେ ।  ସଂପତ୍ତି ସବୁ ଅନର୍ଥର ମୂଳକାରଣ ବୋଲି ସେ ପୂର୍ଣ୍ଣଭାବରେ ହୃଦୟଙ୍ଗମ କରିଥିଲେ ।

ମୋର ଶ୍ୱଶୁର ମହାରାଜ ସୁରପ୍ରତାପଙ୍କର କୀର୍ତ୍ତନ, ଭଜନ ଓ ଯାଗଯଜ୍ଞରେ ଯେପରି ମନ ଥିଲା, ସେହିପରି ମୋ ସ୍ୱାମୀଙ୍କଠାରେ ମଧ୍ୟ ସେହି ସବୁ ସଦ୍‌ଗୁଣମାନ ପରିପୂର୍ଣ୍ଣ ଭାବରେ ରହିଥିଲା । ସେତେବେଳର ପ୍ରଖ୍ୟାତ କୀର୍ତ୍ତନ ପ୍ରେମୀ ରାମଦାସ ବାବାଜୀଙ୍କୁ ଅଣାଇ ଅନେକଥର ଅଷ୍ଟପ୍ରହରୀ, ଚବି ଶପ୍ରହରୀ ଅନୁଷ୍ଠାନମାନ କରାଇଥିଲେ । ବିଭିନ୍ନ ସମୟରେ ପ୍ରସିଦ୍ଧ ଭାଗବତ୍‌ବିତ୍ ପଣ୍ଡିତ କୁଳଦା ଭୂଷଣ ମଲ୍ଲିକଙ୍କ ସମେତ ବହୁ ଆଧ୍ୟାତ୍ମିକବାଦୀ ପ୍ରଖ୍ୟାତ ଗୁଣଗ୍ରାହୀ ପଣ୍ଡିତ ବ୍ୟକ୍ତି ବିଶେଷଙ୍କୁ ନିମନ୍ତ୍ରଣ କରି ଗୀତା, ଭାଗବତ ଓ ବିଭିନ୍ନ ପୁରାଣ ଉପରେ ତାତ୍ତ୍ୱିକ ପ୍ରବଚନର ଆୟୋଜନ କରାଉଥିଲେ । ପ୍ରତ୍ୟେକ ରବିବାର ସଂଧ୍ୟାରେ ନିୟମିତ ନାମ ସଂକୀର୍ତ୍ତନ କରାନ୍ତି । ଉଦ୍ଦେଶ୍ୟ, କର୍ମ ବହୁଳ ଜୀବନରେ ଦିବ୍ୟଶକ୍ତି ପାଇଁ ତଥା ଆଧ୍ୟାତ୍ମିକ କ୍ରିୟା କର୍ମ ପାଇଁ ସମସ୍ତଙ୍କୁ ଅନୁପ୍ରାଣିତ କରିବା । ସେ ନିଜେ ଏହାଦ୍ୱାରା ଅପୂର୍ବ ଶକ୍ତି ଆହରଣ କରୁଥିଲେ । ଏହି ଶକ୍ତି ବଳରେ ନିଜକୁ ଜଣେ ଅଜେୟ ବ୍ୟକ୍ତି ହିସାବରେ ଗଢି ନେଇଥିଲେ । ସମୟ ସମୟରେ ରାସଲୀଳା, ମହାଭାରତ ଓ ରାମାୟଣର ବିଷୟ ବସ୍ତୁ ଉପରେ ଆଲୋଚନା ମୂଳକ ସଭାମାନ ଅନୁଷ୍ଠିତ କରାଉଥିଲେ ଏବଂ ଏହାର ସାରତତ୍ତ୍ୱ ଉପରେ ମନଧ୍ୟାନ ପୂର୍ବକ ଅନୁଶୀଳନ କରୁଥିଲେ । ସେ ଥିଲେ ଯଥାର୍ଥରେ ଆଧ୍ୟାତ୍ମବାଦୀ ଏବଂ ଈଶ୍ୱରପରାୟଣ । ନାମ ସଂକୀର୍ତ୍ତନର ବିକାଶ ପାଇଁ ଓ

ଈଶ୍ୱର ଚିନ୍ତନରେ ସତ୍‌ଜୀବନ ଯାପନ ପାଇଁ ସେ ଢେଙ୍କାନାଳ ଓ ମଡ଼ି (ଯାହାକି ୯ ଅଗଷ୍ଟ ୧୯୪୨ ମସିହା ଶ୍ରୀମାନ କାମାଖ୍ୟା ପ୍ରସାଦଙ୍କ ପ୍ରଥମ ଜନ୍ମ ଦିନରେ 'କାମାକ୍ଷାନଗର' ନାମରେ ନାମିତ ହେଲା )ପାଇଁ ଦୁଇଜଣ କୀର୍ତ୍ତନ ନିରୀକ୍ଷକଙ୍କୁ ନିଯୁକ୍ତ କରିଥିଲେ ।

ଗାଁଗୁଡିକର ଶିକ୍ଷା, ସଂସ୍କୃତି, କୃଷି, ସ୍ୱାସ୍ଥ୍ୟ, ଜଙ୍ଗଲ ସୁରକ୍ଷା ସହିତ କଳିଗୋଳର ଆପୋଷ ସମାଧାନ ଏବଂ ଅଧ୍ୟାତ୍ମିକ ଜୀବନର ବିକାଶ ପାଇଁ ଗ୍ରାମ୍ୟ ଏକତାର ନିଦର୍ଶନ ସ୍ୱରୂପ ପ୍ରତ୍ୟେକ ଗ୍ରାମରେ ସଭା ଘର ଓ ଭାଗବତ ଘର ପରିଚାଳନା ଥିଲା ତାଙ୍କର ପରିକଳ୍ପନାର ଅନ୍ୟତମ ପ୍ରଧାନ ଅଙ୍ଗ । ସମସ୍ତେ ଏକତ୍ରିତ ହୋଇ ଗ୍ରାମ୍ୟ ପରିଚାଳନା ସଂପୃକ୍ତ ବିଷୟ ବସ୍ତୁ ଉପରେ ବିଚାର ଆଲୋଚନା କରିବାପରେ ପୁରାଣପାଠ ଓ ନାମସଂକୀର୍ତ୍ତନ ପ୍ରାୟତଃ ପ୍ରତ୍ୟେକ ଦିନ କରାଯାଉଥିଲା । ଏହାଦ୍ୱାରା ଆଧ୍ୟାତ୍ମିକ ଜୀବନଯାପନ ସହିତ, ଶାନ୍ତିଶୃଙ୍ଖଳା ରକ୍ଷାକରିବା, ନିୟମାନୁବର୍ତ୍ତୀ ହେବା, କର୍ତ୍ତବ୍ୟ କର୍ମ ସମ୍ପାଦନ କରିବା ଓ ଆଚାର ବିଚାର ପାଳନ କରିବା ସମ୍ଭବ ହେଉଥିଲା । ଏହି ବ୍ୟବସ୍ଥା ଯୋଗୁଁ ପ୍ରାଚୁର୍ଯ୍ୟ ଭିତରେ ନହେଲେ ମଧ୍ୟ ନିଜର ପରିସର ମଧ୍ୟରେ ଶୃଙ୍ଖଳିତ ଜୀବନଯାପନ ପାଇଁ ସେ ସର୍ବଦା ଉଦ୍ୟମ କରୁଥିଲେ । ନୀତି ଓ ନିୟମ ମଧ୍ୟରେ ସମସ୍ତେ ସୁଖ ଶାନ୍ତିରେ ରହିବାର ପ୍ରେରଣା ପାଉଥିଲେ । ଏଥି ପାଇଁ ଅନ୍ୟମାନଙ୍କୁ ମଧ୍ୟ ବିଶେଷ ଭାବରେ ସେ ଅନୁପ୍ରାଣିତ କରୁଥିଲେ । ସେତେବେଳେ ସଦ୍ୟ ପ୍ରକାଶିତ ପୋଲିସ ମାନୁଆଲ ବହି ପଢିବା ପରେ ପୋଲିସ ଭଳି ଶୃଙ୍ଖଳିତ ଜୀବନ ଯାପନ କିପରି ପ୍ରତ୍ୟେକ କ୍ଷେତ୍ରରେ ପ୍ରତ୍ୟେକଙ୍କ ଦ୍ୱାରା ଅନୁସୃତ ହେବ, କିପରି ସେମାନେ ନ୍ୟାୟସଙ୍ଗତ ଭାବରେ କର୍ତ୍ତବ୍ୟ ପରାୟଣ ହେବେ, କିପରି ପ୍ରତ୍ୟେହ ଶାରୀରିକ ବ୍ୟାୟାମକରି ସୁସ୍ଥ ସବଳ ପରିବାର ଗଢିବେ ଏବଂ କିପରି ସୁଖଶାନ୍ତିରେ ଜୀବନ ଯାପନ କରିବେ ସେ ଦିଗରେ ସେ ସବୁବେଳେ ଚିନ୍ତାକରୁଥିଲେ । ସେଥିଲାଗି ନିଜରାଜ୍ୟ ଢ଼େଙ୍କାନାଳରେ 'ବଏ ସ୍କାଉଟ' ଓ 'ଗାର୍ଲ ଗାଇଡ୍' କାଯ୍ୟକ୍ରମ ନିଷ୍ଠାର ସହିତ ପ୍ରଚଳନ କରାଇଥିଲେ । ସମସ୍ତ ବିଦ୍ୟାଳୟର ଛାତ୍ରଛାତ୍ରୀ, ଶିକ୍ଷକ, କର୍ମଚାରୀ ଏବଂ ଗ୍ରାମର ସମବୟସ୍କ ବାଳକ ବାଳିକାମାନେ ନିୟମିତ ଶାରିରୀକ ଶିକ୍ଷା, ସ୍କାଉଟ୍ ଓ ଗାର୍ଲସ ଗାଇଡ୍ କାର୍ଯ୍ୟକ୍ରମ ସକାଶେ ତାଲିମ ପାଉଥିଲେ । କେବଳ ତାଲିମରେ ସେ ସନ୍ତୁଷ୍ଟ ନ ରହି ଏହି କାର୍ଯ୍ୟକ୍ରମରେ ଢ଼େଙ୍କାନାଳ କିପରି ଶୀର୍ଷସ୍ଥାନ ଅଧିକାର କରିବ ଏବଂ ସର୍ବତ୍ର ପ୍ରଶଂସନୀୟ ହେବ ସେଥିପାଇଁ ସେ ସମସ୍ତଙ୍କୁ ବିଭିନ୍ନ ଭାବରେ ଉତ୍ସାହିତ କରୁଥିଲେ । ଢ଼େଙ୍କାନାଳ ଅପ୍ରତିଦ୍ୱନ୍ଦୀ ପ୍ରତିଯୋଗୀ ହେବାକୁ ସେ ବଳିଷ୍ଠ ପଦକ୍ଷେପ ନେଉଥିଲେ । ମୋ ନେତୃତ୍ୱରେ ଢ଼େଙ୍କାନାଳର ଗାର୍ଲ ଗାଇଡମାନେ କଲିକତା କାର୍ଯ୍ୟକ୍ରମରେ ଯୋଗଦାନ କରି ଉଚ୍ଚପ୍ରଶଂସା ଅର୍ଜନ କରିଥିଲେ ।

ବୋଧହୁଏ ତାହାଥିଲା ୧ ୯୩୫ ମସିହା । ବହୁଲୋକଙ୍କ ଉପସ୍ଥିତରେ କେବେ ଘରୁ ପଦାକୁ ବାହାରି ନଥିବା ଝିଅମାନଙ୍କୁ ନେଇ ଗାର୍ଲ ଗାଇଡ କାର୍ଯ୍ୟକ୍ରମ କଲିକତାପରି ବିରାଟ ସହରରେ ପରିବେଷଣ କରିବା ଆମ୍ଭମାନଙ୍କ ପକ୍ଷରେ କିଛି କମ୍ କଥା ନଥିଲା । ସେଦିନ କଲିକତାର ପ୍ରବୁଦ୍ଧ ଜନତା ଢ଼େଙ୍କାନାଳ ଗାର୍ଲ ଗାଇଡର କାର୍ଯ୍ୟକ୍ରମ ଦେଖି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ । ଲର୍ଡ ବେଡେନ୍ ପାଓ୍ୱେଲ ଏବଂ ତାଙ୍କ ସହଧର୍ମିଣୀ ଲେଡି ବେଡେନ୍ ପାଓ୍ୱେଲ ଆମ୍ଭମାନଙ୍କୁ ସମୁଚିତ ଭାବରେ ଧନ୍ୟବାଦ ଦେଇ ଉତ୍ସାହିତ କରିଥିଲେ । ସେମାନେ ପ୍ରକାଶ କରିଥିଲେ ଯେ ଏହି ସ୍କାଉଟିଂ ଏବଂ ଗାର୍ଲସ ଗାଇଡ କାର୍ଯ୍ୟକ୍ରମ ସମଗ୍ର ବିଶ୍ୱରେ ସୁନାମ ଅର୍ଜନ କରିଛି ଏବଂ ଏଥିପାଇଁ ଢ଼େଙ୍କାନାଳର ଅବଦାନ ଯେ ସବୁଠାରୁ ବେଶୀ ତାହା ଅସ୍ୱୀକାର କରାଯାଇ ପାରେନାହିଁ । ଏହିପରି ପ୍ରଶଂସନୀୟ ଭୂମିକା ଯୋଗୁ ହଲାଣ୍ଡଠାରେ ଅନୁଷ୍ଠିତ ବିଶ୍ୱ ସ୍କାଉଟ୍ ଓ ଗାଇଡ୍ ଜାମ୍ବୋରୀ ସମ୍ମେଳନରେ ଢ଼େଙ୍କାନଳ ଦଳ ଯୋଗଦେଇ ସର୍ବସ୍ୱୀକୃତି ଓ ପ୍ରଶଂସା ଅର୍ଜନ କରିଥିଲା । ଲେଡି ବେଡେନ୍ ପାଓ୍ୱେଲ ଆମ ଗାର୍ଲସ ଗାଇଡ୍ କାର୍ଯ୍ୟକ୍ରମରେ ଏପରି ବିମୁଗ୍ଧ ହୋଇଥିଲେ ଯେ ଭିନ୍ନ ଭିନ୍ନ କାର୍ଯ୍ୟକ୍ରମପାଇଁ ଆମ ଢ଼େଙ୍କାନାଳ ଦଳ ଯୋଗ ଦେବାକୁ ସୁପାରିଶ କରିଥିଲେ । ଆମେରିକା ସ୍କାଉଟିଂ ଓ ଗାର୍ଲସ ଗାଇଡର ମୁଖ୍ୟ କାର୍ଯ୍ୟାଳୟ ଓ ଓ୍ୱାଶିଂଟନ ପରିଦର୍ଶନରେ ଯିବା ପାଇଁ ସେ ଆମ୍ଭକୁ ସୁପାରିଶ କରିଥିଲେ । ଆମ୍ଭେମାନେ ଯୋଗଦେଇ ସ୍କାଉଟିଂ ଓ ଗାର୍ଲସ ଗାଇଡ କାର୍ଯ୍ୟକ୍ରମର ବିଭିନ୍ନ ଦିଗ ସଂପର୍କରେ ଅବଗତ ହୋଇଥିଲୁ । ଗୋଟିଏ Blazing hut ରୁ ପିଲାମାନଙ୍କୁ ଉଦ୍ଧାର କରି ରାଜା ସାହେବ, scouting ର ସର୍ବୋଚ୍ଚ ସମ୍ମାନ Silver Cross ରେ ଅଳଙ୍କୃତ ହୋଇଥିଲେ । ଲର୍ଡ ବେଡେନ୍ ପାଓ୍ୱେଲ ଓ ଲେଡି ବେଡେନ୍ ପାଓ୍ୱେଲଙ୍କ ସ୍ନେହ, ଶ୍ରଦ୍ଧା ଓ କର୍ତ୍ତବ୍ୟ ନିଷ୍ଠାରେ ଅନୁପ୍ରାଣିତ ହୋଇ ଥିବାରୁ ତାଙ୍କ ମରଣୋତ୍ତର ଆତ୍ମାପ୍ରତି ମୁଁ ଆଜି ଶ୍ରଦ୍ଧା ଜ୍ଞାପନ କରୁଛି । ସେମାନେ ଥିଲେ ପ୍ରତିଭାର ପୂଜାରୀ । ଆମ୍ଭମାନଙ୍କର ନିଷ୍ଠାପର କାର୍ଯ୍ୟକ୍ରମ ଦେଖି ଏବଂ ଆମ୍ଭମାନଙ୍କର ଅନ୍ତର୍ନିହିତ ଶକ୍ତି ସାମର୍ଥ୍ୟରେ ଅଟଳନ ଅଟଳ ବିଶ୍ୱାସ ରଖି ସବୁବେଳେ ସେମାନେ ଆମ୍ଭମାନଙ୍କୁ ଉତ୍ସାହ ଦେଇ ଆସୁଥିଲେ । ରାଜା ଶଙ୍କର ପ୍ରତାପ କେବଳ ଏହି କାର୍ଯ୍ୟକ୍ରମରେ ନୁହେଁ, ଯେଉଁସବୁ କାର୍ଯ୍ୟରେ ଢ଼େଙ୍କାନାଳର ଗର୍ବ ଓ ଗୌରବ ବଢି ପାରିବ ସେଥିରେ ବହୁତ ଆନନ୍ଦିତ ହେଉଥିଲେ ।

ଏସବୁ କାର୍ଯ୍ୟରେ ମୋତେ ସହଯୋଗିତା କରୁଥିଲେ ମୋର ବନ୍ଧୁ ଡକ୍ଟର ଶ୍ରୀମତୀ ଡି.ଏମ୍.ଲେସିଇ । ସେଥିଲେ ଅତି କର୍ମଠ ଏବଂ ଜ୍ଞାନବତୀ, ଗୁଣଶୀଳା ମହିଳା । ସେ ମୋତେ ଫ୍ରେଞ୍ଚଭାଷା ଶିକ୍ଷା ଦେଇଥିଲେ । ସେତେବେଳେ ଫ୍ରେଞ୍ଚଭାଷା ଆୟତ୍ତ କରିଥିବା

ବ୍ୟକ୍ତି ବିଶେଷଙ୍କର ଏକ ସ୍ୱତନ୍ତ୍ର ପ୍ରତିଷ୍ଠା ରହିଥିଲା । ତାଙ୍କ ଯୋଗୁଁ ମୁଁ ସୁନ୍ଦର ଓ ନିର୍ଭୁଲ ଭାବରେ ଫ୍ରେଞ୍ଚ ଭାଷାରେ କଥାବାର୍ତ୍ତା କରିପାରୁଥିଲି । ରାଜା ଶଙ୍କର ପ୍ରତାପ ଜର୍ମାନର Berlitz School ରୁ ଜର୍ମାନ ଭାଷାରେ ଡିପ୍ଲୋମା ହାସଲ କରିଥିଲେ । ଏହି କାରଣରୁ ପାଶ୍ଚାତ୍ୟ ଦେଶ ପରିଭ୍ରମଣରେ ଗଲାବେଳେ ଆମ୍ଭେମାନେ କୌଣସି ଭାଷାଗତ ଅସୁବିଧାର ସମ୍ମୁଖୀନ ହେଉ ନଥିଲୁ । ବରଂ ଆମ୍ଭମାନଙ୍କର ମର୍ଯ୍ୟାଦା ଯଥେଷ୍ଟ ବଢିଥିଲା । ଶ୍ରୀମତୀ ଲେସିଲଙ୍କୁ ଆଜି ସ୍ମରଣକରି ତାଙ୍କୁ ଆନ୍ତରିକ ଶ୍ରଦ୍ଧା ଜ୍ଞାପନ କରୁଛି ।

ଢ଼େଙ୍କାନାଳର ମହିଳା ଡାକ୍ତର ଶ୍ରୀମତୀ ଆର.କେ. ବୋଧକ ଡାକ୍ତରଖାନା କାର୍ଯ୍ୟ ବ୍ୟତୀତ ମୋ ପ୍ରେରଣାରେ ମହିଳା କାର୍ଯ୍ୟକ୍ରମରେ ଯୋଗଦାନ କରନ୍ତି ଏବଂ ବିଭିନ୍ନ କାର୍ଯ୍ୟକ୍ରମ କରାଇବା ଦିଗରେ ସଂଗଠନ କାର୍ଯ୍ୟ ସଫଳତାର ସହିତ ସମ୍ପାଦନ କରନ୍ତି । ଗାର୍ଲସ ଗାଇଡ୍ କାର୍ଯ୍ୟକ୍ରମରେ ଆମ୍ଭେମାନେ ଯେଉଁ ସଫଳତା ଅର୍ଜନ କରିଥିଲୁ ସେଥିରେ ତାଙ୍କର ଅବଦାନ ଯଥାର୍ଥରେ ଅଭିନନ୍ଦନୀୟ ଏବଂ ଅବିସ୍ମରଣୀୟ ।

ବିଦ୍ୟାଳୟରେ ଛାତ୍ରଛାତ୍ରୀମାନଙ୍କ ପାଇଁ ନିର୍ଦ୍ଧାରିତ ପାଠ୍ୟକ୍ରମ ସହିତ ଖେଳ, କସରତ ଓ ବାଡିବଗିଚା କାର୍ଯ୍ୟକ୍ରମ ସେ ଉତ୍ସାହ ସହିତ ପ୍ରଚଳନ କରାଇଥିଲେ । ଏତଦ୍‌ବ୍ୟତୀତ କୃଷି, ଉଦ୍ୟାନ ଓ ଜଙ୍ଗଲ ସଂପୃକ୍ତ ବିଷୟ ସୂଚୀକୁ ପାଠ୍ୟ ନିର୍ଘଣ୍ଟରେ ଅର୍ନ୍ତଃଭୁକ୍ତ କରି ଶିକ୍ଷାକୁ ଧନ୍ଦାମୂଳକ କରାଇବାର ପ୍ରଚେଷ୍ଟା ଚଳାଇଥିଲେ । ପିଲାବୟସରୁ ପ୍ରତ୍ୟେକ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ କୃଷି ପ୍ରତି ଆଗ୍ରହଆସୁ ଏବଂ ପିଲାମାନେ ଆରମ୍ଭରୁ କର୍ମବିମୁଖ ନ ହୁଅନ୍ତୁ ଏହାହିଁ ଥିଲା ତାଙ୍କର ମୂଳ ଉଦ୍ଦେଶ୍ୟ । ଖାଲି ଆଦେଶ ବା ନିର୍ଦ୍ଦେଶ ଦେଇ ନୁହେଁ ଉପଯୁକ୍ତ ତାଲିମ ମାଧ୍ୟମରେ ଛାତ୍ରଛାତ୍ରୀମାନଙ୍କୁ ଖାଣ୍ଟି ମଣିଷ କରି ଗଢିବାକୁ ସେ ସବୁବେଳେ ଚେଷ୍ଟା କରୁଥିଲେ । ଏ ବିଷୟରେ ସେ ଅତ୍ୟନ୍ତ ବାସ୍ତବବାଦୀ ଥିଲେ । ଉଦାହରଣଟିଏ ଦେଲେ ବେଶ୍ ଭଲଭାବରେ ବୁଝିହେବ । ଆମ ବଡ ପୁଅ ଶ୍ରୀମାନ୍ କାମାକ୍ଷାପ୍ରସାଦ ସେତେବେଳେ ମାତ୍ର ୩/୪ ବର୍ଷର କୋମଳମତି ଶିଶୁ । ସୁବେଦାର ଶ୍ୟାମ ସିଂ, ହାବିଲ୍‌ଦାର ରାମକୃଷ୍ଣ ମଙ୍ଗରାଜ, ଇନିସ୍‌ପେକ୍ଟର ଗୋବିନ୍ଦଚନ୍ଦ୍ର ଶ୍ରୀ ଚନ୍ଦନ ରାୟ ଓ ହାବିଲ୍‌ଦାର ନଉଲାଖ ସିଂହଙ୍କୁ ନିଯୁକ୍ତି କଲେ ତାଙ୍କୁ ପ୍ୟାରେଡ୍ ଘୋଡା ଚଢା ଓ ଶାରିରୀକ ଶିକ୍ଷା ଦେବାକୁ । ଆମ୍ଭେମାନେ ସେତେବେଳେ ଏକଥାକୁ ନାପସନ୍ଦ କରୁଥିଲୁ । ଶିଶୁ ବୟସରେ ଏପରି କଠୋର ତାଲିମ ନେବାର ଆବଶ୍ୟକତା ନାହିଁ ବୋଲି କହିବାରୁ ସେ ତାହାକୁ ଏଡାଇ ଦେଇଥିଲେ । ତାଲିମ କାର୍ଯ୍ୟକ୍ରମକୁ ତାଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ନିଷ୍ଠାର ସହିତ ଚାଲୁରଖିଥିଲେ । ପ୍ୟାରେଡ ସମୟରେ ସେ କେବେ କେବେ ନିଜେ ଉପସ୍ଥିତ ରହୁଥିଲେ ,

କିମ୍ବା ଆଡୁହାଳରେ ରହି ତାର ପ୍ୟାରେଡ୍ ଶିକ୍ଷା ଉପରେ ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ । ସାମାନ୍ୟ ଭୁଲ୍ ହେଉଥିଲେ ବି ତାହାକୁ ସୁଧାରିବା ପାଇଁ କଠୋର ଭାବରେ ନିର୍ଦ୍ଦେଶ ଦେଉଥିଲେ । ଫଳରେ ଶ୍ରୀମାନ୍ କାମାକ୍ଷା ପ୍ରସାଦ ସିଂହଦେଓ ପରବର୍ତ୍ତୀ କାଳରେ ଭାରତର ପ୍ରାଦେଶିକ ସେନାରେ ଯୋଗଦେଇ, ୧୯୭୧ ମସିହାର ଭାରତ ପାକିସ୍ଥାନ ଯୁଦ୍ଧରେ ଯୋଗଦେଇଥିଲେ ଏବଂ ୧୯୭୬ ମସିହାରେ ସାଧାରଣତନ୍ତ୍ର ଦିବସ ପ୍ୟାରେଡ୍‌ରେ ପ୍ରାଦେଶିକ ସେନାର ନେତୃତ୍ୱ କରିଥିଲେ । ଶିକ୍ଷାଦାତା ହିସାବରେ ନଉଲାଖ ସିଂହ ସାମାନ୍ୟ କୋହଳ ହେଲେ ସେ ମଧ୍ୟ ନିସ୍ତାର ପାଉନଥିଲେ । ଶିକ୍ଷାର ମାନ ଉଣାହେଲେ, ଶିକ୍ଷାଦେବାବେଳେ କୋହଳ ଆଚରଣ କଲେ ଓ ମନଯୋଗ ସହକାରେ ଶିକ୍ଷା ପରିସରଭୁକ୍ତ ଜ୍ଞାନକୁ ଆୟତ୍ତ ନକଲେ ପରବର୍ତ୍ତୀ ଜୀବନ ବ୍ୟର୍ଥ ହୁଏ ବୋଲି ସେ ମର୍ମେ ମର୍ମେ ଉପଲବ୍ଧି କରିଥିଲେ । ତାଙ୍କର ଜୀବନଦ୍ୱାରା ସେ ଯେଉଁ ଉପଦେଶ ବା ଆଦେଶ ଦେଇଛନ୍ତି ଭବିଷ୍ୟତ ଜୀବନରେ ଯେ ତାହା କାମରେ ଆସିଛି ଏକଥା ଯେଉଁମାନେ ତାଙ୍କ ନିକଟ ସମ୍ପର୍କରେ ଆସିଛନ୍ତି ନିଶ୍ଚୟ ଅନୁଭବ କରିଛନ୍ତି । ନିଜ ଜୀବନ କ୍ଷେତ୍ରରେ ଶ୍ରୀମାନ୍ କାମାକ୍ଷା ତାଙ୍କ ନିର୍ଦ୍ଦେଶ ଓ ଉପଦେଶ ଅନୁସାରେ ବିଭିନ୍ନ ତାଲିମ୍ ନେଇ ବା ତାଙ୍କଠାରୁ ଅନେକ ବିଷୟରେ ଶିକ୍ଷାପାଇ ତାର ଜୀବନକୁ ଶୃଙ୍ଖଳିତ ଭାବରେ କର୍ମମୟ କରିଛି । ତେଣୁ ତାର ଜୀବନ ଆଜି ଅମୃତମୟ ହୋଇଛି । ଯାହା ଦେଖିବାକୁ ସେ ଅବଶ୍ୟ ଆଜି ନାହାନ୍ତି ସେ ଯେଉଁଠି ଥିଲେ ବି ତାଙ୍କର ଆତ୍ମା ନିଶ୍ଚୟ ଶାନ୍ତି ପାଉଥିବ ଏଥିରେ ସନ୍ଦେହ ନାହିଁ । ମୁଁ ନିଜେ ଏବେ ମଧ୍ୟ ଦେଶର ବିଭିନ୍ନ ସ୍ଥାନକୁ ବିଭିନ୍ନ କାର୍ଯ୍ୟରେ ଯାଉଛି । ସବୁସ୍ଥାନରେ ତାହାର ଜନପ୍ରିୟ କର୍ମମୟ ଜୀବନର ପ୍ରଶଂସାର ପ୍ରାଣସ୍ପର୍ଶୀବାର୍ତ୍ତା ଶୁଣିଛି ଏହାହିଁ ଆମସମସ୍ତଙ୍କର ଗର୍ବ । ତାଙ୍କଠାରୁ ପାଇଥିବା ତାଲିମ୍ ଯୋଗୁ ସେ ନିଜର ବହୁମୁଖୀ ପ୍ରତିଭାକୁ ଦୀପ୍ତିମୟ କରିଛି ଓ ନିଜର ଯୋଗ୍ୟତାକୁ ପ୍ରତ୍ୟେକ କ୍ଷେତ୍ରରେ ମାନ୍ୟତା ପାଇଁ ପ୍ରତିପାଦନ କରିଛି । ଲୋକମାନଙ୍କୁ ତାର ସାଧ୍ୟ ଅନୁସାରେ ସାହାଯ୍ୟ ଦେଇ ଭୂରି ଭୂରି ପ୍ରଶଂସା ଅର୍ଜନ କରୁଛି । ତାଙ୍କରି ଆଦର୍ଶ, ଶିକ୍ଷା ଏବଂ ନିର୍ଦ୍ଦେଶନାରେ ସେ ଜନସାଧାରଣଙ୍କଠାରୁ କିଛି ପାଇବାର ଆଶା ନରଖି କେବଳ ସେବା ହିଁ ଦେଇ ଆତ୍ମତୃପ୍ତି ପାଉଛି । ଏକାନ୍ତ ପ୍ରଣିଧାନ ଯୋଗ୍ୟ ଯେ ସେ ନିଜର ମାତୃଭୂମି ପ୍ରିୟ ଭାରତବର୍ଷର ନିରାପତ୍ତା ରକ୍ଷା କରିବାକୁ ସୈନ୍ୟ ବିଭାଗରେ ଯୋଗ ଦେଇ ଭାରତ ପାକିସ୍ଥାନ ଯୁଦ୍ଧଠାରୁ ଆରମ୍ଭ କରି ସୀମାନ୍ତ ରକ୍ଷା ଆଦିରେ ପ୍ରାଣମୂର୍ଚ୍ଛା ଉଦ୍ୟମର ପରାକାଷ୍ଠା ଦେଖାଇ ଢେଙ୍କାନାଳର ଟେକ ରଖିଛି । ମୁଁ ସ୍ପଷ୍ଟ ସ୍ୱୀକାର କରେ କି ମୋପରି ପ୍ରତ୍ୟେକ ମା'ର ଏହାହିଁ ହେଉଛି ସର୍ବଶ୍ରେଷ୍ଠ ଗର୍ବ ଓ ଗୌରବ । କେବଳ ତାଙ୍କର ତାଲିମ ଯୋଗୁଁ ସେ ପ୍ରଭୂତ ଗୁଣର ଅଧିକାରୀ ହେବାର

ଗୌରବ ଅର୍ଜନ କରିଛି । ଶ୍ରୀମାନ  କାମାକ୍ଷା ଅତ୍ୟନ୍ତ ଧୀର, ଶାନ୍ତ, ସରଳ, ବିନୟୀ, ଧୈର୍ଯ୍ୟବାନ, ଓ ବିଚାରଶୀଳ । ‹‹ସନ ଭୂଷଣ ଓ ଖାଦ୍ୟପେୟରେ ସେ ଅତ୍ୟନ୍ତ ସାଧାରଣ । ଅଂହଂବାଦୀ ନୁହେଁ । କିନ୍ତୁ ନିର୍ଭୀକ, ପରଉପକାରୀ ଏଂବଂ ସର୍ବଦା ହାସ୍ୟମୁଖର ଖୋଲା ହୃଦୟ ମଣିଷ । ସ୍ମରଣଶକ୍ତି ତାହାର ଅତ୍ୟନ୍ତ ପ୍ରଖର । ଏହି ଶିକ୍ଷା କ୍ରମାଗତ ଭାବରେ ସେ ତା ପିତାଙ୍କଠାରୁ ପାଇ ଆସିଛି । କେବଳ କାମାକ୍ଷା ନୁହେଁ ଯେଉଁମାନେ ତାଙ୍କଠାରୁ ସାମାନ୍ୟ ଉପଦେଶ ପାଇଛନ୍ତି ଅଥବା ତାଙ୍କ ସଂସ୍ପର୍ଶରେ ଆସିଛନ୍ତି ସେମାନେ ବହୁ କ୍ଷେତ୍ରରେ ଶୀର୍ଷ ସ୍ଥାନରେ ପହଞ୍ଚିଛନ୍ତି । ଏହିପରି ଉଦାହରଣ ଅନେକ ରହିଛି । ଅନେକ ଏବେ ମଧ୍ୟ ବଞ୍ଚିଛନ୍ତି ଯେଉଁମାନେ କି ସେସବୁକୁ ସ୍ମରଣ କରି ଏକ ମହାନ୍ ପୁରୁଷଙ୍କ ପ୍ରତି ପବିତ୍ର ମନରେ କୃତଜ୍ଞତା ପ୍ରକାଶ କରିଛନ୍ତି ।

ସେତେବେଳେ ପ୍ରାୟ ପ୍ରତ୍ୟେକ ଦିନ ସଂଧ୍ୟାବେଳେ ପାଖ ପାଖ ଗାଁକୁ ଯାଇ ସେ ପୌଢ଼ ଶିକ୍ଷାକେନ୍ଦ୍ର ଓ ସ୍କାଉଟିଂ କାର୍ଯ୍ୟକ୍ରମ ପରିଦର୍ଶନ କରୁଥିଲେ । ଏହା ସହିତ ଥାନା, ସ୍କୁଲ, ରେଞ୍ଜ ଅଫିସ ଓ ଅନ୍ୟାନ୍ୟ ଗ୍ରାମ ଅନୁଷ୍ଠାନମାନ ଅଚାନକ ପରିଦର୍ଶନ ପାଇଁ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ରହୁଥିଲା ଏଥିରେ ସମସ୍ତେ ଉତ୍ସାହିତ ହେଉଥିଲେ, ଭୟ ମଧ ରହୁଥିଲା । କୌଣସି ଭୁଲ୍, ତ୍ରୁଟି ଆଖିରେ ପଡୁଥିଲେ ସେସବୁ ସୁଧାରି ନିଆଯିବା ପାଇଁ ନିର୍ଦ୍ଦେଶ ରହୁଥିଲା । ଏବଂ ଯେଉଁମାନଙ୍କର କାର୍ଯ୍ୟ ଉତ୍ତମ ବୋଲି ଉପଲବ୍ଧ ହେଉଥିଲା ସେମାନଙ୍କୁ ବିଭିନ୍ନ ଉପାୟରେ ଉତ୍ସାହିତ କରାଯାଉଥିଲା । ବେଳେବେଳେ ଆମ୍ଭମାନଙ୍କ ଉପସ୍ଥିତିରେ କ୍ୟାମ୍ପ ଫାୟାରିଂ ହୁଏ । ସମାନ ଭାବରେ ଗ୍ରାମବାସୀମାନେ ଏଥିରେ ପ୍ରତ୍ୟକ୍ଷ ଭାବରେ ଯୋଗଦାନ କରୁଥିଲେ । ଏହି କାର୍ଯ୍ୟକ୍ରମରେ ଆମ୍ଭମାନଙ୍କର ଯୋଗଦାନ ଯୋଗୁଁ ଗ୍ରାମବାସୀମାନେ ଉତ୍ସାହିତ ଓ ଆନନ୍ଦିତ ହେଉଥିଲେ । ଫଳରେ କାର୍ଯ୍ୟକ୍ରମମାନ ସଫଳ କରିବା ପାଇଁ ସବୁବେଳେ ସମସ୍ତଙ୍କ ମନରେ ଆଗ୍ରହ ସୃଷ୍ଟି ହେଉଥିଲା । ଠକାଠକି କରି କାର୍ଯ୍ୟରେ ବାଧାସୃଷ୍ଟି କରିବା ସେତେବେଳେ କାହାରି ଲକ୍ଷ୍ୟ ରହୁନଥିଲା । କାର୍ଯ୍ୟକ୍ରମ ପ୍ରତି ସମସ୍ତଙ୍କର ଆଗ୍ରହ ଥିଲାବୋଲି ଢ଼େଙ୍କାନାଳର ଶିକ୍ଷାବ୍ୟବସ୍ଥା ସେତେବେଳେ ସର୍ବୋତ୍କୃଷ୍ଟ ଥିଲା । ଏବେ ସାଧାରଣ ଶିକ୍ଷା ଓ ବୈଷୟିକ ଶିକ୍ଷାକୁ ଛାଡି ସରକାର ଗଲା କେତେ ବର୍ଷ ଧରି ପୌଢ଼ ଶିକ୍ଷୀ ଏବଂ ସଂପୂର୍ଣ୍ଣ ସାକ୍ଷର ଯୋଜନା କାର୍ଯ୍ୟକ୍ରମ ଚାଲୁ କରିଛନ୍ତି ବୋଲି ଶୁଣୁଛି । ଆଜକୁ ପଚାଶ, ଷାଠିଏ ବର୍ଷ ତଳେ ଶିକ୍ଷା ସହିତ ଗ୍ରାମବାସୀଙ୍କଠାରୁ ଆରମ୍ଭ କରି ସର୍ବରାକାର ଚୌକିଦାର ଏପରିକି ରାଜ୍ୟର ସମସ୍ତ କର୍ମଚାରୀଙ୍କ ପର୍ଯ୍ୟନ୍ତ ଅଙ୍ଗାଅଙ୍ଗୀ ଭାବରେ ସଂପୃକ୍ତ ରହୁଥିଲେ । କେବଳ ଶିକ୍ଷାନୁହେଁ ଜଙ୍ଗଲ, କୃଷି, ସ୍ୱାସ୍ଥ୍ୟ, ଆଦି ଜାବତୀୟ କାର୍ଯ୍ୟକ୍ରମର ସଫଳତାପାଇଁ ଏହାକୁ

ଯଥା ସମ୍ଭବ ନିଜନିଜର ଶକ୍ତି ଓ ପରିସର ମଧ୍ୟରେ ନିଷ୍ଠାର ସହିତ ଗ୍ରାମବାସୀମାନେ କାର୍ଯ୍ୟକାରୀ କରୁଥିଲେ । ଏହାଦ୍ୱାରା ଆପାତତଃ ସେତେବେଳେ ବିଶୃଙ୍ଖଳା ପ୍ରବେଶ କରିନଥିଲା । ମୂଲ୍ୟବୋଧ ହଜି ଯାଇନଥିଲା । ଅଶିକ୍ଷା ପଶିନଥିଲା । ମିଥ୍ୟା ଓ ପ୍ରବଞ୍ଚନା ସମାଜ ବା ଶାସନକୁ ସେତେବେଳେ ଗ୍ରାସକରି ନଥିଲା । ଢ଼େଙ୍କାନାଳରେ ନିରକ୍ଷରଙ୍କ ସଂଖ୍ୟା ପ୍ରାୟତଃ ନଥିଲା ବା ହାତ ଗଣତିରେ ଅତ୍ୟନ୍ତ ନଗଣ୍ୟ ଥିଲା । ସେତେବେଳର ମୋଗଲବନ୍ଦୀ ଅଞ୍ଚଳ ଏବଂ ଅନ୍ୟାନ୍ୟ ଷ୍ଟେଟ ତୁଳନାରେ ଢ଼େଙ୍କାନାଳ ଶିକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଅକଳନ୍ତି ସୁଖ୍ୟାତି ଅର୍ଜନ କରିଥିଲା । ଶିକ୍ଷାର ଉଚ୍ଚମାନ ଓ ଉତ୍କର୍ଷତା ଯୋଗୁଁ ଢ଼େଙ୍କାନାଳର ଜନସାଧାରଣ ବିନୟୀ, ଭଦ୍ର, କର୍ମଠ ଏବଂ ଅସାଧାରଣ ଭାବରେ ଅହଂକାର ଶୂନ୍ୟ ଥିଲେ । ସେମାନେ କୌଣସି କାର୍ଯ୍ୟରେ ଅବହେଳା କରନ୍ତି ନାହିଁ ଏବଂ ଠକିବା ସେମାନଙ୍କର ପ୍ରବୃତ୍ତି ନଥିଲା । କର୍ତ୍ତବ୍ୟ ସଂପାଦନରେ ସେମାନଙ୍କର ଅନୁରକ୍ତିର ପଟ୍ଟାନ୍ତର ନଥିଲା । ସେମାନେ ଚରିତ୍ରବାନ ଏବଂ ଏକାନ୍ତ ଭାବରେ ସରଳ ଥିଲେ । ତେଣୁ ଅନେକ ସମୟରେ ସେତେବେଳେ ମୋଗଲବନ୍ଦୀ ଅଞ୍ଚଳର ଲୋକମାନେ ଅସହିଷ୍ଣୁ ହୋଇ ଅସୂୟା ଭାବନେଇ କଟୁକ୍ତି ପ୍ରକାଶ କରନ୍ତି ଏବଂ ନାନା ଭାବରେ ଥଟ୍ଟା ତାମସା କରନ୍ତି । କିନ୍ତୁ ଅବିଚଳିତ ଭାବରେ ଢ଼େଙ୍କାନାଳର ଲୋକମାନେ ନିଜସ୍ୱ ମୌଳିକ ଚିନ୍ତାଧାରା ମଧ୍ୟରେ ଏହାକୁ ଭ୍ରୁକ୍ଷେପ କରୁନଥିଲେ । ଏବେ ମଧ୍ୟ କରନ୍ତି ନାହିଁ । ଦେବତାମାନଙ୍କ ପ୍ରତି ଆସୁରିକ ବ୍ୟବହାର ସେମାନଙ୍କର କଟୁକ୍ତି ବା ଥଟ୍ଟା ତାମସା କେବଳ ସେହିମାନଙ୍କ ପାଇଁ ପ୍ରଯୁଜ୍ୟ ବୋଲି ମନେ କରନ୍ତି ଢ଼େଙ୍କାନାଳର ଜନସାଧାରଣ, କାରଣ ସେମାନେ ଶିକ୍ଷାରେ, ଦିକ୍ଷାରେ ଚିନ୍ତାରେ, କାର୍ଯ୍ୟରେ ବ୍ୟବହାରରେ ପ୍ରତିଷ୍ଠିତ ଭାବରେ ଜ୍ଞାନବନ୍ତ । ''ନମ୍ରନ୍ତି ଫଳିନୋ ବୃକ୍ଷାଃ'', ଢ଼େଙ୍କାନାଳ ଜନସାଧାରଣଙ୍କର ଏହାହିଁ ହେଉଛି ବିଶେଷତ୍ୱଃ । ସର୍ବଦା ସେମାନେ ଶକ୍ତିବାନ, ପ୍ରତ୍ୟେକ କ୍ଷେତ୍ରରେ । ଢ଼େଙ୍କାନାଳ ମାଟିରେ ସେମାନଙ୍କର ଜନ୍ମ । ଭାଙ୍ଗିଯାଇପାରନ୍ତି କିନ୍ତୁ ନଇଁ ଯିବେ ନାହିଁ । ସେମାନେ ଜ୍ଞାନବାନ ଓ ଚରିତ୍ରବାନ୍, ସେମାନେ ପରିଶ୍ରମୀ, କଷ୍ଟ ସହିଷ୍ଣୁ ଏବଂ ଅଧ୍ୟବସାୟୀ, ସେମାନେ ସରଳ, ସତ୍ୟାଶ୍ରୟୀ, ପରୋପକାରୀ ଏବଂ ସଂବେଦନଶୀଳ । ସେମାନେ ଉଚ୍ଚମନା , ନିଃସ୍ୱାର୍ଥପର, ଦୟାଶୀଳ ଏବଂ ଅତିଥି ପରାୟଣ । ଯେଉଁମାନେ 'ଢ଼େଙ୍କାନାଳିଆ' କହି ଥଟ୍ଟାତାମସା କରନ୍ତି ସେମାନେ ନିଜର ହୀନମନତା, ସଂକୀର୍ଣ୍ଣତା, ଅଶାଳୀନତା, ଅବିବେକିତା ପ୍ରକାଶ କରିଥାଆନ୍ତି ମାତ୍ର । ଢ଼େଙ୍କାନାଳ ଲୋକମାନଙ୍କୁ 'ଢ଼େଙ୍କାନାଳିଆ' କହିବାରେ ଢ଼େଙ୍କାନାଳବାସୀ ଅତ୍ୟଧିକ ଗର୍ବ ଓ ଗୌରବ ବୋଧ କରନ୍ତି । କାରଣ ସେମାନେ ଶିକ୍ଷା କ୍ଷେତ୍ରରେ ଯେପରି ଶୀର୍ଷସ୍ଥାନରେ, ସର୍ବୋଚ୍ଚ ନ୍ୟାୟଳୟରେ,

ପ୍ରଶାସନରେ, ବୈଷୟିକ ଓ ବିଜ୍ଞାନ ଆଦି ଯାବତୀୟ କ୍ଷେତ୍ରରେ ମଧ୍ୟ ଶୀର୍ଷସ୍ଥାନରେ ରହି ନିଜର ମୌଳିକତାର ବିଶେଷତ୍ୱ ଜାହିର କରିବାର ଅଦ୍ଭୁତ କ୍ଷମତା ହାସଲ କରିଥାନ୍ତି । ଏବେ ସମୟ ଆସିଛି ଆମ ବେଳର ନୀତି ନିୟମ ଏବଂ କାର୍ଯ୍ୟନିର୍ବାହର ଧାରା ବା କାର୍ଯ୍ୟ ନିର୍ବାହିକା ପଦ୍ଧତିକୁ ଜନସାଧାରଣ ଗ୍ରହଣ କରିପାରିଲେ ବର୍ତ୍ତମାନ ଭାଙ୍ଗି ଭାଙ୍ଗି ପଡୁଥିବା ସମାଜ ସୁଧୁରି ଯାଇପାରିବ । ଦେଶ ସୁଧୁରିଯିବ, ମିଥ୍ୟାର ଆବରଣ ତଳେ ଗଢିଉଠୁଥିବା ପ୍ରବଞ୍ଚନାର ନାଗଫାଶରୁ ସମସ୍ତେ ଉଦ୍ଧରି ଆସିବେ । ତେବେ ଯାଇ ଏକ ପ୍ରାଚୁର୍ଯ୍ୟର ସଂସାର, ଆନନ୍ଦ ଉତ୍‌ଫୁଲ୍ଲିତ ଜୀବନ ଅନୁଭବ କରିହେବ ।

ସାଧାରଣତଃ ରାଜପରିବାରଗୁଡ଼ିକ ଅତ୍ୟନ୍ତ ରକ୍ଷଣଶୀଳ । ପରମ୍ପରାଗତ ସଂସ୍କୃତିରୁ ବିଚ୍ୟୁତ ହେବା ଦେଖାଯାଏ ନାହିଁ । ରାଜପରିବାରର ମହିଳାମାନେ କଠୋର କୁଳ ପରମ୍ପରା ମଧ୍ୟରେ ଆବଦ୍ଧ ରହନ୍ତି ଏବଂ ସେମାନେ ସବୁବେଳେ ପରଦାସୀନ । କିନ୍ତୁ ମୋ ସ୍ୱାମୀ ରାଜାସାହେବ ସ୍ୱର୍ଗତଃ ଶଙ୍କର ପ୍ରତାପ ଥିଲେ ଅତ୍ୟନ୍ତ ପ୍ରଗତିଶୀଳ ଏବଂ ଶୃଙ୍ଖଳିତ ଭାବରେ ଆଧୁନିକ । ଶାସନ କାର୍ଯ୍ୟ ସହିତ, ଖେଳ କସରତ, ସ୍କାଉଟିଂ, ଗାର୍ଲସ ଗାଇଡ୍, ସଭାସମିତି ଆଦି ବିଭିନ୍ନ କାର୍ଯ୍ୟକ୍ରମରେ ମୋତେ ଯୋଗଦାନ କରିବା ପାଇଁ କେବଳ ଅନୁମତି ଦେଇ ନଥିଲେ, ତାଲିମ୍ ଦେଉଥିଲେ ଏବଂ ନିର୍ଭୟ ଚିତ୍ତରେ ପ୍ରତ୍ୟେକ କାର୍ଯ୍ୟ ସଂପାଦନ କରିବା ପାଇଁ ଉତ୍ସାହିତ କରୁଥିଲେ । ଏହାଦ୍ୱାରା ଶାସନ କାର୍ଯ୍ୟ ଏବଂ ଅନ୍ୟାନ୍ୟ କାର୍ଯ୍ୟ ଯାହା ମୋ ଉପରେ ନ୍ୟସ୍ତ କରାଯାଇଥାଏ , ତାହା ଅସମ୍ଭବ ଭାବରେ ସଫଳ ହୁଏ । ମୁଁ ନିଜେ ଏହାଦ୍ୱାରା ବିଶେଷ ଭାବରେ ଉପକୃତ ହୋଇଛି । ମୋର ଉତ୍ତମ ଜୀବନରେ ଯେଉଁ ସଫଳତା ଆସିଲା ତାହା ତାଙ୍କରି ଅନୁପ୍ରେରଣାର ଅମୂଲ୍ୟଦାନ ବୋଲି ମୁଁ ଆଜି ନିର୍ଦ୍ୱନ୍ଦରେ ସ୍ୱୀକାର କରେ । ମୋର ସୀମିତ ଜ୍ଞାନ କେବଳ ତାଙ୍କରି ଯୋଗୁଁ ପ୍ରସାରିତ ହେବାର ସୁଯୋଗ ପାଇଥିଲା । ତାଙ୍କର ଲକ୍ଷ୍ୟ ଥିଲା "Total development" (ପୂର୍ଣ୍ଣବିକାଶ) ଆମ୍ଭେମାନେ ମଧ୍ୟ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଏହାକୁହିଁ ଗ୍ରହଣ କରିନେଇଥିଲୁ । ସ୍କାଉଟିଂ, ଗାର୍ଲସ ଗାଇଡ୍ ଓ ଖେଳକୁଦ ଆଦି ବିଭିନ୍ନ କାର୍ଯ୍ୟରେ ଯୋଗଦାନ କଲାବେଳେ ଲୋକମାନଙ୍କ ସହ ମିଳିମିଶି ଆଲୋଚନା କରିବାପାଇଁ ଓ ଆମ୍ଭମାନଙ୍କ ମଧ୍ୟରେ ସେମାନଙ୍କ ସହିତ କୌଣସି ଦୂରତ୍ୱ ନ ରଖିବା ପାଇଁ ସେ ନିର୍ଦ୍ଦେଶ ଓ ଉପଦେଶ ଦେଉଥିଲେ । ପ୍ରତିକ୍ଷେତ୍ରରେ ଆମ୍ଭମାନଙ୍କୁ ଯଥାର୍ଥଭାବରେ ଉତ୍ତମ ବ୍ୟବହାର ଓ ସତ୍‌କର୍ମ କରିବା ପାଇଁ ପ୍ରେରଣା ଦେଉଥିଲେ । ତାଙ୍କର ଉତ୍ସାହ ଓ ପ୍ରେରଣାରେ ମୋ ମନ ଭିତରେ ଗୋଟିଏ ଦିବ୍ୟସତ୍ତା ଏପରି ଭାବରେ ସୃଷ୍ଟି ହୋଇଥିଲା ଯେ ମୁଁ ଯେଉଁ କାର୍ଯ୍ୟରେ ହାତ ଦେଉଥିଲି ତାହା ନିଖୁଣ

ଭାବରେ ସଫଳ ହେଉଥିଲା ଏବଂ ସକଳ କାର୍ଯ୍ୟରେ ପାରଦର୍ଶିତା ଲାଭକରି ପ୍ରଶଂସା ଅର୍ଜନ କରୁଥିଲି । ଢ଼େଙ୍କାନାଳ, ସମ୍ବଲପୁର, କଟକର ପ୍ୟାରିମୋହନ ଏକାଡେମୀ ପ୍ରଭୃତି ହାଇସ୍କୁଲ ଓ ୧୯୨୬ ମସିହାରେ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ଏବଂ ୧୯୨୮ ମସିହାରେ ରେଭେନ୍‌ସା କଲେଜର ପୁରସ୍କାର ବିତରଣୀ ସଭାରେ ଭାଷଣ ଦେଇ ପୁରସ୍କାର ବଣ୍ଟନ କରିବାର ସାହାସ ମୁଁ ପାଇଥିଲି ତାଙ୍କଠାରୁ । ସ୍ୱଳ୍ପ ହେଲେ ମଧ୍ୟ ମୋର ଭାଷଣଗୁଡିକ ଯୁଗୋପଯୋଗୀ ଥିଲା ଏବଂ ବେଶ୍ ଉପାଦେୟଥିଲା । ମୁଁ ସେତେବେଳର ବହୁ ପ୍ରତିଷ୍ଠିତ ବ୍ୟକ୍ତି, ଶିକ୍ଷାବିତ୍ ଆଇନିଜ୍ଞ ଓ ସମାଜସେବୀମାନଙ୍କ ଆଲୋଚନା ଶୁଣିଛି । ମୋତେ ଗଢି ମୋ ମାଧ୍ୟମରେ ଢ଼େଙ୍କାନାଳକୁ ପ୍ରଗତୀଶୀଳ କରିବା ପାଇଁ ତାଙ୍କର ଏକ ବାସ୍ତବ ସ୍ୱପ୍ନ ଥିଲା । ସେତେବେଳେ ମୋପରି ଏକ ଅଳ୍ପ ବୟସର ମହିଳା ପକ୍ଷରେ ଓଡିଶାର ଏକମାତ୍ର ଶିକ୍ଷାନୁଷ୍ଠାନ ରେଭେନ୍‌ସା କଲେଜ ପରି ଉଚ୍ଚମାନ ସମ୍ବଳିତ ସାରସ୍ୱତ ପୀଠ ମାନଙ୍କରେ ବହୁ ଉଚ୍ଚକୋଟୀର ବିଦ୍ୱାନ ଶିକ୍ଷକମଣ୍ଡଳୀ, ଉଚ୍ଚ ପଦାରୁଢ ଅଭିଜ୍ଞ କର୍ମଚାରୀ ଏବଂ ବୟସ୍କ ତଥା ଅନୁଭୂତି ସମ୍ପନ୍ନ ଅଭିଭାବକମାନଙ୍କ ଉପସ୍ଥିତିରେ ନିର୍ଭୟ ଚିତ୍ତରେ ରୁଚିପୂର୍ଣ୍ଣ ଭାବରେ ଭାଷଣ ଦେବା ଓ ପୁରସ୍କାର ବଣ୍ଟନ କରିବା କେବଳ ମାତ୍ର ସମ୍ଭବ ହୋଇଥିଲା ତାଙ୍କରି ତାଲିମ୍ ଯୋଗୁଁ । ପରବର୍ତ୍ତୀ ସମୟରେ ମୁଁ ଯେତେବେଳେ ଲୋକ ପ୍ରତିନିଧି ଭାବରେ ପ୍ରତିଦ୍ୱନ୍ଦିତା କରି ବିପୁଳ ଭୋଟରେ ନିର୍ବାଚିତ ହେଲି ଏବଂ ବିଧାନସଭାରେ ଲୋକମାନଙ୍କର ବିଭିନ୍ନ ସମସ୍ୟା ଉପସ୍ଥାପିତ କଲି ଜନସେବା ଉଦ୍ଦେଶ୍ୟରେ, ମୋ ସ୍ୱାମୀଙ୍କର ମୋପ୍ରତି ଆଶୀର୍ବାଦ ଭରା ସମସ୍ତ ଉଦ୍ୟମର ମର୍ଯ୍ୟାଦା ଓ ଉପାଦେୟତା ସେତିକିବେଳେ ଉପଲବ୍ଧି କଲି । ତାଙ୍କରି ଅଫୁରନ୍ତା ଉଦ୍ୟମ, ଉଦାର ଓ ଅନାବିଳ ସ୍ନେହଶ୍ରଦ୍ଧା ଓ ଅବିଚଳିତ ନିଷ୍ଠାଯୋଗୁଁ ମୁଁ ପ୍ରତ୍ୟେକ କ୍ଷେତ୍ରରେ ବିଜୟିନୀର ସମ୍ମାନ ପାଇଛି ଏବଂ ପାଇଛି ସକଳଶ୍ରେଣୀ ଲୋକଙ୍କଠାରୁ ଅକଳନ୍ତି ସ୍ନେହ ଓ ଶ୍ରଦ୍ଧା । ଏକଥା ଜନ୍ମ ଜନ୍ମାନ୍ତର ପାଇଁ ମୁଁ ଭୁଲି ପାରିବି ନାହିଁ ।

ସେ ଥିଲେ ଜଣେ କୁଶଳୀ ଦୂରଦ୍ରଷ୍ଟା । ଦେଶ, କାଳ, ପାତ୍ର ଅନୁସାରେ ଭବିଷ୍ୟତରେ କଣ ଘଟିବ ତାହା ଅନେକାଂଶରେ ସେ କଳ୍ପନାକରି କହି ପାରୁଥିଲେ । ତାଙ୍କର ବିଶ୍ଳେଷଣାତ୍ମକ ଆଲୋଚନା ଥିଲା ସବୁବେଳେ ନିର୍ଭୁଲ । ଭବିଷ୍ୟତ୍‌ର ଉନ୍ନୟନ ମୂଳକ ଯୋଜନାପାଇଁ ତାଙ୍କର ଉଚ୍ଚ ଚିନ୍ତାଧାରା ଥିଲା ଏକାନ୍ତ ଭାବରେ ସୁଦୂର ପ୍ରସାରୀ । ଶାସନ ଦାୟିତ୍ୱ ଗ୍ରହଣ କଲା ପରେ ପିତା ସ୍ୱର୍ଗତଃ ସୁରପ୍ରତାପ ମହୀନ୍ଦ୍ର ବାହାଦୁରଙ୍କ ଢ଼େଙ୍କାନାଳ ସହରକୁ ଯୋଜନାବଦ୍ଧ ଭାବରେ ସଦୃଶ୍ୟକରି ଗଢିବା ପରିକଳ୍ପନାକୁ ସେ ବାସ୍ତବ ରୂପଦେବା

ନିମନ୍ତେ ମନସ୍ଥ କଲେ । ଚଉଡ଼ା ସିଧା ପକ୍କା ରାସ୍ତା ନିର୍ମାଣ କରିବା ଏବଂ ରାସ୍ତାର ଉଭୟପାର୍ଶ୍ୱରେ ଛାଇ ଓ ଫଳପାଇଁ ବୃକ୍ଷ ରୋପଣ କରିବାଥିଲା , ତାଙ୍କର ପ୍ରାରମ୍ଭିକ ଉଦ୍ୟମ । ଗଳି ଉପଗଳିକୁ ସିଧା ଓ ଚଉଡ଼ା ରାସ୍ତାଯିବା ଏବଂ ରାସ୍ତାର ଦୁଇପାଖରେ ଜଳନିଷ୍କାସନ ପାଇଁ ପକ୍କା ନାଳୀ ବା ଡ୍ରେନ୍ କରିବା ଥିଲା ତାଙ୍କର ପରିକଳ୍ପନା । ଏତଦ୍ ବ୍ୟତୀତ ଘରପୋଡ଼ି ଭଳି ବିପତ୍ତିକୁ ମୁକାବିଲା କରିବା ଥିଲା ଏହାର ଅନ୍ୟତମ ଉଦ୍ଦେଶ୍ୟ । ଏହା ଯେହେତୁ ସହର ପାଇଁ ସୌନ୍ଦର୍ଯ୍ୟକାରୀ ଯୋଜନା ଅଥବା ଆବଶ୍ୟକତା ଦୃଷ୍ଟିରୁ ଏକ ଗ୍ରହଣଯୋଗ୍ୟ କାର୍ଯ୍ୟକ୍ରମ, ସେହିହେତୁ ସହର ନିବାସୀ ଜନସାଧାରଣ ନିଶ୍ଚୟ ଏହାକୁ ସ୍ୱାଗତ କରିବେ ବୋଲି ସ୍ୱତଃ ଧାରଣା କରାଗଲା । ଏହି ଯୋଜନା କାର୍ଯ୍ୟକାରୀ କଲାବେଳକୁ ରାଜା ସାହେବଙ୍କର ନିର୍ଦ୍ଦେଶ ଥିଲା କୌଣସି ଗରିବଲୋକ ଯେପରି ଏଥିନେ ଆଦୌ କ୍ଷତିଗ୍ରସ୍ତ ନହୁଅନ୍ତି ଏବଂ ଅନ୍ୟମାନେ ଯେପରି କୌଣସି ଅସୁବିଧାର ସମ୍ମୁଖୀନ ହୋଇ ଅସନ୍ତୋଷ ପ୍ରକାଶ ନକରନ୍ତି । ପରୀକ୍ଷା ନୀରୀକ୍ଷା କରାଗଲା । ଏଥିରେ କୌଣସି ଗରିବଲୋକ ବା ସାଧାରଣଭାବରେ ସେତେବେଶୀ ଲୋକ କ୍ଷତିଗ୍ରସ୍ତ ହେବେନାହିଁ ବୋଲି ସାବ୍ୟସ୍ତ ହେଲା । କେବଳ ମାତ୍ର ୩/୪ଟି ପରିବାର ଯେଉଁ ମାନଙ୍କର କି ସହର ମଧ୍ୟରେ ବେଶୀ ଜମିଥିଲା ଏବଂ ସେମାନଙ୍କର ବାହାରେ ମଧ୍ୟ ଶତାଧିକ ଏକର ଉତ୍କୃଷ୍ଟ ଜମିଥିଲା ଚାଷ ଉଦ୍ଦେଶ୍ୟରେ, କେବଳ ସେହିମାନଙ୍କର କିଛି ସ୍ୱଳ୍ପ ପରିମାଣର ଜମି ରାସ୍ତାନିର୍ମାଣ ପାଇଁ ନୀତି ଓ ନିୟମ ଅନୁସାରେ ନିଆଗଲା । ସେତେବେଳେ ଯେଉଁ କେତୋଟି ମାତ୍ର ରାସ୍ତା ଏହି ପରିକଳ୍ପନାଯୋଗୁଁ ତିଆରି ହୋଇଥିଲା ତାହା ଆଜି ମଧ୍ୟ ପ୍ରାୟ ସେହିପରି ଅଛି । ମାପଚୁପ ନକରି ଅନୁମାନରୁ ଜାଣିହେବ କେତେ ପରିମାଣର ଜମି ସେତେବେଳ ଏହି ସ୍ୱଚ୍ଛଳ ପରିବାରମାନେ ଭବିଷ୍ୟତର ଚଳାଚଳ ପାଇଁ ଛାଡ଼ିଥିଲେ । ସେଥିପାଇଁ ମଧ୍ୟ ଜମି ବଦଳରେ ଜମି ଓ ନିୟମାନୁଯାୟୀ କ୍ଷତିପୂରଣ ଟଙ୍କା ସେତେବେଳର ଦର ଅନୁସାରେ ଦିଆଯାଇଥିଲା । ଭଲକାମ ସେତେବେଳର ଆଖିକୁ ଦେଖାନଯିବା ଭାଗ୍ୟର ବିଡ଼ମ୍ବନା ବୋଲି କହିବାକୁ ହେବ । ସମୂହ ସ୍ୱାର୍ଥ ଚିନ୍ତା କରିବାଥିଲା ସେତେବେଳ ଶାସନର ଏକ ବୈଶିଷ୍ଟ୍ୟ ଏବଂ ଅଗ୍ରପ୍ରାଧାନ୍ୟ ଲାଭ କରିଥିବା ବିଷୟ । ସେତେବେଳ ସମୂହର ଉପକାର ପାଇଁ ଯେଉଁ ୪/୫ ଜଣ ବିଶିଷ୍ଟ ଧନାଢ଼୍ୟ ପରିବାରର ଏଥିସକାଶେ ଜମି ନିଆଗଲା ସେମାନେ ଚତୁରତାର ସହିତ ସେମାନଙ୍କୁ ସୁହାଇଲାଭଳି ମିଥ୍ୟା ଓ ଭୁଲ୍ ପ୍ରଚାରକରି ସେହି କାର୍ଯ୍ୟକ୍ରମକୁ ଆଉ ଆଗେଇବାକୁ ଦେଲେ ନାହିଁ । ସାଧାରଣ ଲୋକେ

ମଧ୍ୟ ସେମାନଙ୍କ କଥାରେ ମାତିଲେ । କେହି ଭବିଷ୍ୟତ ପ୍ରତି ଦୃଷ୍ଟି ରଖିବାକୁ ଚାହିଁଲେ ନାହିଁ । ଫଳରେ ଆଉ ଅନେକ କିଛି ଭଲ କାମ କରିବାକୁ ରାଜ ଦରବାର ଇଛା କଲେ ନାହିଁ । ସମସ୍ତଙ୍କର ମନ ଭାଙ୍ଗିଗଲା । ଆଜିକାଲିପରି ସେତେବେଳେ ଏତେ ଟଙ୍କା ନଥିଲା । ବାହାରୁ ଅର୍ଥାତ୍ ସେତେବେଳର ବିଦେଶୀ ସରକାର ଠାରୁ କେତେବେଳେ ହେଲେ କୌଣସି ଆର୍ଥିକ ସାହାଯ୍ୟ ଆସୁନଥିଲା ; ବରଂ ଫନ୍ଦାଫିକର କରି ବିଭିନ୍ନ ରାଜ୍ୟରୁ ବିପୁଳ ଅର୍ଥ ସେମାନେ ସଂଗ୍ରହ କରିବାକୁ ବାଧ୍ୟ କରୁଥିଲେ । ସାଧାରଣ କ୍ଷେତ୍ରରେ ଅହଙ୍କାର ହେଲାଭଳି ଆଉ କିଛି କରି ଅଶାନ୍ତି ଡ଼ାକିବାକୁ ମନ ବଳିଲା ନାହିଁ । ଅର୍ଥନୈତିକ, ରାଜନୈତିକ ଓ ସାମାଜିକ କ୍ଷେତ୍ରରେ ବର୍ତ୍ତମାନ ଯେପରି ଅଗ୍ରଗତି ଘଟିଛି ସେହି ମାପକାଠିରେ ଆଜି ଚିନ୍ତା କରାଯାଇ ଭୁଲ ଠିକ୍ ନିର୍ଦ୍ଧାରଣ କରାଯାଇପାରିବ ଯେ, ସେତେବେଳେ ଏହା କିପରି ଓ କେତେ ଜନସ୍ୱାର୍ଥ ବିରୋଧୀ, ଅନୀତି, ଅସଂଗତ କାର୍ଯ୍ୟଥିଲା ।

ଏହି ନିକଟ ଅତୀତରେ ଲୋକମାନଙ୍କର ଭୋଟ ଉପରେ ପ୍ରତିଷ୍ଠିତ ସରକାର ହଜାର ହଜାର ପକ୍କାଘର ଓ ଗରିବ ଲୋକଙ୍କର ଆଶ୍ରୟସ୍ଥଳ ଶହ ଶହ ଝୁମ୍ପୁଡ଼ିଘର ଆଦି କେବଳ ମନର ସଉକପାଇଁ ନିର୍ଦ୍ଦୟଭାବରେ ଭାଙ୍ଗି ବହୁଲୋକଙ୍କର ଜୀବନ ନିର୍ବାହକୁ ଉଜାଡ଼୍ କରିଦେଲେ । ଜରୁରୀ କାଳୀନ ପରିସ୍ଥିତି ସମୟରେ ଦିଲ୍ଲୀଠାରୁ ଆରମ୍ଭ କରି ଭୁବନେଶ୍ୱର, କଟକ ପର୍ଯ୍ୟନ୍ତ ସେହି ଅଶୁଭ ପରିବେଶ ଓ ପରିସ୍ଥିତିକୁ ଆଜି ମଧ୍ୟ ଲୋକମାନେ ଭୁଲିନାହାନ୍ତି କି ଭୁଲିବେନାହିଁ ; ଆଗକୁ ବହୁବର୍ଷଧରି । ବାସସ୍ଥାନ ଗଲା , କୁଳକୁଟୁମ୍ବଙ୍କର ବଞ୍ଚିରହିବାର ମାଧ୍ୟମ ଉଜୁଡ଼ିଲା ଏବଂ ଏହା ସହିତ ଅକଥନୀୟ ଅତ୍ୟାଚାର, ଜେଲଦଣ୍ଡ, ଜଳାପୋଡ଼ା ଓ ମାଡ଼ପିଟ ଚାଲିଲା । ଏହା ଏପରି ସାଂଘାତିକଥିଲା ଯାହା ବ୍ରିଟିଶ୍ ଶାସନ କାଳରେ କେହି ଭୋଗୀନଥିଲେ । ଭୟରେ କେହି ପ୍ରତିବାଦ କଲେ ନାହିଁ । ସେହି ଜରୁରୀ କାଳିନ ପରିସ୍ଥିତି ସମୟରେ ସମସ୍ତେ ଉପଲବ୍ଧି କରୁଥିଲେ ଯେ ପ୍ରତିବାଦ କଲେ କିଛି ଭଲ ଫଳ ହେବନାହିଁ । ବରଂ ଜୀଇଁ ଥାଉଁ ଥାଉଁ ମୃତ୍ୟୁର ବିଭୀଷିକା ଗୋଡ଼େଇ ଖାଇବ । ଶୁଣିବାକୁ କେହିନାହିଁ । ଆହା କରିବାକୁ ବି କେହି ନାହିଁ । ଗାଁ ଗହଳରୁ ଆରମ୍ଭକରି ଦେଶର ସର୍ବତ୍ର ବହୁ କିସମର ଜନନାୟକଙ୍କର ଆବିର୍ଭାବ ହୋଇଥିଲେ ହେଁ, ଶିକ୍ଷା ଦୀକ୍ଷାରେ ପାଣ୍ଡିତ୍ୟର ପ୍ରଖରତା ବଢ଼ିଥିଲେ ହେଁ, ଅଧୁନା ଘଟିଯାଉଥିବା ଅସଂଖ୍ୟ ମରଣାନ୍ତକ ଅତ୍ୟାଚାରର ପ୍ରତିବାଦ କ୍ଷୀଣ ସ୍ୱରରେ ମଧ୍ୟ ଆସେନାହିଁ । ଏବେ ମଧ୍ୟ ଜନସ୍ୱାର୍ଥ କାମ ପାଇଁ ସରକାର ଯେ କୌଣସି ଲୋକଙ୍କର

ଜମି ଯେ କୌଣସି ମୂଲ୍ୟରେ ଯେତେବେଳେ ପାରି ସେତେବେଳେ ଦଖଲ କରୁଛନ୍ତି । ଏପରି କ୍ଷେତ୍ରରେ ଲୋକମାନେ କୋର୍ଟ କଚେରୀ ପର୍ଯ୍ୟନ୍ତ ଯାଇ ବହୁ ଅର୍ଥ ଶ୍ରାଦ୍ଧକରି ମଧ୍ୟ ନ୍ୟାୟ ପାଉନାହାନ୍ତି । ବେଶ୍ ଦୁଃଖକଷ୍ଟ ଭୋଗ କରୁଛନ୍ତି । ଏବେ ଏପରି ହୋଇଛି ଯେ, କେହି କାହାର ଅଭିଯୋଗ ଅନୁଯୋଗ ଶୁଣୁ ନାହାଁନ୍ତି । ମନେ ହୁଏ ସମଗ୍ର ସମାଜ ଯେମିତି ଧ୍ୱସ୍ତ ବିଧ୍ୱଂସ୍ତ ଓ ସଂପୂର୍ଣ୍ଣ ଅରାଜକତା ଭିତରେ ଅତ୍ୟନ୍ତ ଅସହାୟ, ନିଃସହାୟ ଭାବରେ କେଉଁ ଏକ ଆକସ୍ମିକ ଦାମ୍ଭିକତା ଦୟାଉପରେ ନାମକୁ ମାତ୍ର ବଞ୍ଚିରହିଛି । ସେତେବେଳେ ଆପାତତଃ ଏପରି ନଥିଲା । ରାଜା ବା ଶାସକ, ପ୍ରଜା ବା ଜନସାଧାରଣ ଉଭୟେ ସମାନ ଭାବରେ ଭୟ କରୁଥିଲେ ସତ୍ୟକୁ, ନ୍ୟାୟକୁ, ଶୃଙ୍ଖଳାକୁ, କର୍ତ୍ତବ୍ୟଜ୍ଞାନକୁ ଏବଂ ସର୍ବୋପରି ଈଶ୍ୱରଙ୍କୁ । ଶୁଣୁଥିଲେ, ନିଷ୍ପତ୍ତି ନେଉଥିଲେ ଏବଂ ସେହି ଅନୁସାରେ ଦଣ୍ଡ ଦିଆଯାଉଥିଲା, କିମ୍ବା ପୁରସ୍କୃତ କରାଯାଉଥିଲା ବା କ୍ଷତିପୂରଣ ଦିଆଯାଉଥିଲା ଅବସ୍ଥା ଭେଦରେ । ଅତ୍ୟଧିକ ଶୃଙ୍ଖଳିତ ସମାଜରେ ସାମାଜିକ, ଅର୍ଥନୈତିକ ଅବସ୍ଥାରେ ଠିକ୍ ଭାବରେ ବୋଧହୁଏ ଭାରସାମ୍ୟ ରହି ନଥିବାରୁ ସେତେବେଳେ ହୁଏତ ସାମାନ୍ୟ କେତେକ କ୍ଷେତ୍ରରେ ଭୁଲ୍ ବୁଝାମଣା ସାମୟିକ ଭାବରେ ଯେ ହେଉନଥିଲା ତାହା ନୁହେଁ ପରେ ପରେ ତାହାର ସମାଧାନ ଆପଣ ଛାଏଁ କିମ୍ବା ବିଚାର ବିମର୍ଷପରେ ହୋଇ ଯାଉଥିଲା । ସମ୍ପର୍କ ଶାନ୍ତିପ୍ରଦ ଥିଲା ଗଭୀର ବିଶ୍ୱାସ ଓ ଆତ୍ମପ୍ରତ୍ୟୟଯୋଗୁଁ ।

## ମୋର୍ ବାଲ୍ୟକାଳ ଏବଂ ଷଢ଼େଇକଳା ସଂସ୍କୃତି ଓ ଇତିହାସ :

ଷଢେଇକଳାର ରାଜବଂଶରେ ମୋର ଜନ୍ମ ୧୯୦୯ ମସିହାରେ । ସେତେବେଳେ ମୋ ବାବାଙ୍କର ଜେଜେବାବା ମହାରାଜା ଉଦିତ ନାରାୟଣ ସିଂହଦେଓ ରାଜତ୍ୱ କରୁଥିଲେ । ତାଙ୍କ ଜୀବିତ ଅବସ୍ଥାରେ ପୁତ୍ର ଟିକାୟତ ନୃପରାଜ ସିଂହଦେଓଙ୍କର ଅକାଳ ବିୟୋଗ ହେବାରୁ ମୋ ବାବା ରାଜଗାଦି ଅଧିକାର କଲେ । ମୋର ବାବାଥିଲେ ଷଢେଇକଳାର ରାଜା ସ୍ୱର୍ଗତଃ ଆଦିତ୍ୟ ପ୍ରତାପ ସିଂହଦେଓ । ତାଙ୍କର ଆଉ ଦୁଇଭାଇ ଥିଲେ ସ୍ୱର୍ଗତଃ ବିଜୟ ପ୍ରତାପ ସିଂହଦେଓ ଓ ସ୍ୱର୍ଗତଃ ଅଜୟ ପ୍ରତାପ ସିଂହଦେଓ । ବାବାଙ୍କର ତିନି ଭଉଣୀ ମଧ୍ୟ ଥିଲେ । ପାଟନା ଷ୍ଟେଟର ରାଜକୁମାରୀ ସ୍ୱର୍ଗତଃ ପଦ୍ମିନୀ କୁମାରୀ ଥିଲେ ମୋର ମା' । ବାପା ମା'ଙ୍କର ଆମେ ଥିଲୁ ଛ' ପୁଅ ତିନି ଝିଅ । ଭାଇମାନଙ୍କ ମଧ୍ୟରେ ବଡ଼ଥିଲେ ସ୍ୱର୍ଗତଃ ନୃପେନ୍ଦ୍ରନାରାୟଣ ସିଂହଦେଓ ଏବଂ ଅନ୍ୟ ଭାଇମାନେ ହେଲେ ରାଜେନ୍ଦ୍ରନାରାୟଣ ସିଂହଦେଓ, ଭୂପେନ୍ଦ୍ର ନାରାୟଣ ସିଂହଦେଓ,

ଶୁଭେନ୍ଦ୍ର ନାରାୟଣ ସିଂହଦେଓ, ବ୍ରଜେନ୍ଦ୍ର ନାରାୟଣ ସିଂହଦେଓ ଓ ଶୁଦ୍ଧେନ୍ଦ୍ର ନାରାୟଣ ସିଂହଦେଓ । ଏମାନଙ୍କ ମଧ୍ୟରେ କେବଳ ଦୁଇଭାଇ ଭୂପେନ୍ଦ୍ର ଓ ଶୁଭେନ୍ଦ୍ର ବର୍ତ୍ତମାନ ଜୀବିତ । ରାଜେନ୍ଦ୍ରନାରାୟଣ ସିଂହଦେଓ ବଲାଙ୍ଗିରପାଟଣାକୁ ପୋଷ୍ୟପୁତ୍ର ଭାବରେ ଆସି ରାଜଗାଦି ପ୍ରାପ୍ତ ହେଲେ । ସ୍ୱାଧୀନତା ପରେ ସର୍ବଭାରତୀୟ ସ୍ତରରେ ସ୍ୱତନ୍ତ୍ର ଦଳର ସେ ଜଣେ ଅପ୍ରତିଦ୍ୱନ୍ଦୀ ପ୍ରଗତିବାଦୀ ନେତା ହିସାବରେ ପରିଚିତ ହେଲେ । ଓଡ଼ିଶା ବିଧାନ ସଭାରେ ସେ ଅନେକ ବର୍ଷଧରି ବିରୋଧୀ ଦଳର ନେତା ନିର୍ବାଚିତ ହୋଇଆସିଥିଲେ ଏବଂ ଥରେ ମୁଖ୍ୟମନ୍ତ୍ରୀ ଭାବରେ ସେ ରାଜ୍ୟ ଶାସନରେ ଥିଲେ । ସେ ଜଣେ ଐତିହାସିକ ପୁରୁଷ ହିସାବରେ ନିଜକୁ ସୁପ୍ରତିଷ୍ଠିତ କରିପାରିଥିଲେ । ଭଉଣୀମାନଙ୍କ ମଧରେ ମୁଁ ଥିଲି ବଡ଼ । ମଝିଆଁ ଭଉଣୀ ହେମପ୍ରଭା । ତାର ବିଭାଘର ହେଲା ପାଟିଆଳା ମହାରାଜ ଯାଦବେନ୍ଦ୍ର ସିଂହଙ୍କ ସହିତ । ସାନ ଭଉଣୀ ମଣିପ୍ରଭା ସହିତ ମଞ୍ଜୁଷା ରାଜା ଜଗନ୍ନାଥ ରାଜ ରାଜମଣିଙ୍କ ବିବାହ ହୋଇଥିଲା । ତାଙ୍କର ତିନି ପୁଅ ଓ ତିନି ଝିଅ । ବଡ଼ ପୁଅ Colonel ଛତ୍ରପତି ସିଂହ ଦେଓ ଭାରତୀୟ ସୈନ୍ୟବାହିନୀରେ ରହି ବାଙ୍ଗଲାଦେଶ ମୁକ୍ତି ସଂଗ୍ରାମରେ ଲଢ଼େଇ କରିଥିଲେ । ମୋର ବିବାହ ହୋଇଥିଲା ୧୯୨୪ ମସିହାରେ ଢେଙ୍କାନାଳର ରାଜା ଶଙ୍କରପ୍ରତାପ ସିଂହଦେଓ ମହୀନ୍ଦ୍ରବାହାଦୂର ଙ୍କ ସହିତ । ସେ ଥିଲେ ମୋ ନିଜ ବଡ଼ ପିଉସୀ ନାରୀକବି ବୁଦ୍ଧିମତୀ, ଧର୍ମପରାୟଣା, ସ୍ଥିତପ୍ରଜ୍ଞା ରାଣୀ ପୂଜନୀୟା କୃଷ୍ଣଚନ୍ଦ୍ର ପ୍ରିୟା ଓ ପୂଜନୀୟ ଢେଙ୍କାନାଳ ରାଜା ରାଜର୍ଷୀ ସ୍ୱର୍ଗତଃ ସୁରପ୍ରତାପଙ୍କ ଜ୍ୟେଷ୍ଠପୁତ୍ର । ଏଠାରେ ଗୋଟିଏ ଘଟଣା ମନେପଡୁଛି ଉଲ୍ଲେଖ କରିବାପାଇଁ । ଏହାଥିଲା ବୋଧହୁଏ ବିଧି ନିର୍ଦ୍ଦିଷ୍ଟ । ମୁଁ ବାପାଙ୍କ ସହିତ ପୁରୀ ଦର୍ଶନ ଉଦ୍ଦେଶ୍ୟରେ ପିଉସା, ପିଉସୀଙ୍କ ଘରକୁ ଆସିଥାଏ ବୁଲିବାକୁ । ମୁଁ ସେତେବେଳେ ଅତ୍ୟନ୍ତ ଛୋଟ ଥିଲି । ଋଷିପ୍ରତିମ ମୋର ପିଉସା ସୁରପ୍ରତାପ ଥିଲେ ଧର୍ମବନ୍ତ, କର୍ମବନ୍ତ, ନ୍ୟାୟପରାୟଣ, ଚରିତ୍ରବାନ, ଦୟାଳୁ, ଆଦର୍ଶବାଦୀ, ସ୍ନେହୀ, ସତ୍ୟାଶ୍ରୟୀ, ଶାନ୍ତ, ସରଳ ଓ ସୁପୁରୁଷ । ଆମକୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ ଓ ମୋତେ କାଖେଇ ବହୁତ ଆଦର କଲେ । ଅତ୍ୟନ୍ତ ଭାବବିହ୍ୱଳ ଭାବରେ କହିଲେ, '' ଏହି ସୁନା କଣ୍ଢେଇଟିକୁ ବଡ ବୋହୂ କରି ନେଲେ ରାଜପୁରୀଟି ପରିପୂର୍ଣ୍ଣ ହୋଇଉଠନ୍ତା । କନକ ପୁରୀରେ ପରିଣତ ହୋଇପାରନ୍ତା । କ'ଣ କହୁଛ ପରମ ବନ୍ଧୁ, '' ବାପାଙ୍କ ଆଡ଼କୁ ଚାହିଁ ପିଉସା ଆବେଗଭରା କଣ୍ଠରେ ପଚାରିଲେ । ପିଉସୀ, ପୀଉସା, ବାପା ଓ ଅନ୍ୟ ଯେଉଁମାନେ ସେତେବେଳେ ନିକଟରେ ଥିଲେ

ସେମାନେ ସମସ୍ତେ ହସିଉଠିଥିଲେ । ସେତେବେଳେ ମୋର ବୟସ କମ୍‌ଥିବାରୁ ମୁଁ କିଛି ବୁଝିପାରି ନଥିଲି । କିନ୍ତୁ ତାଙ୍କର ମୃତ୍ୟୁ ପରେ ଯେତେବେଳେ ତାଙ୍କରି ପୁଅ ଶଙ୍କରପ୍ରତାପଙ୍କର ବିବାହ ପ୍ରସ୍ତାବ ଉଠିଲା, ସେତେବେଳେ ମୋ ପିଉସୀ ଏବଂ ବାପା, ପିଉସାଙ୍କର ପିଲା ଦିନର କଥାକୁ ଭାଙ୍ଗିଦେଇ ପାରିଲେ ନାହିଁ । ପିଉସାଙ୍କ ଇଚ୍ଛାକୁ ମର୍ଯ୍ୟାଦାର ସହିତ ପୂରଣ କରିବାପାଇଁ ଏବଂ ତାଙ୍କର ଆନ୍ତରିକ ପ୍ରସ୍ତାବର ମୂଲ୍ୟବୋଧକୁ ଅକ୍ଷୁଣ୍ଣ ରଖିବା ପାଇଁ ଏହି ବିଭାଘର ହୋଇଥିଲା ମହାସମାରୋହରେ । ସାମାଜିକ ଦୃଷ୍ଟି କୋଣରୁ ଏହି ବିଭାଘରର ଔଚିତ୍ୟ ନେଇ ପ୍ରଶ୍ନ ଉଠିଥିଲେହେଁ କେବଳ ପିଉସାଙ୍କ ପରି ଏକ ମହାପୁରୁଷଙ୍କ ପ୍ରସ୍ତାବ ପ୍ରତି ସମ୍ମାନ ଦେବା ଉଦ୍ଦେଶ୍ୟରେ ଏହା ନିର୍ବିଘ୍ନରେ ସମସ୍ତଙ୍କ ଦ୍ୱାରା ଉଦାରତାର ସହିତ ସ୍ୱୀକୃତ ହୋଇଥିଲା । ଦେବଦୂତ ସଦୃଶ ମୋର ଶ୍ୱଶୁର ସୁରପ୍ରତାପଙ୍କ ଅନାବିଳ ଆଶୀର୍ବାଦ ଓ ମହିମା ଯୋଗୁଁ ଆମର ବୈବାହିକ ଜୀବନର ସମସ୍ତ ଝଡ଼ଝଞ୍ଜା ଅତିକ୍ରମ କରିଯିବାର ଅକ୍ଷୟଶକ୍ତି ଆମ୍ଭେମାନେ ସଦା ପାଉଥିଲୁ । ନିରନ୍ତର ଆମେ ପାଉଥିଲୁ ତାଙ୍କଠାରୁ ଆଶୀର୍ବାଦ ସୂଚକ ସ୍ପଷ୍ଟ ନିର୍ଦ୍ଦେଶ । ଧର୍ମବନ୍ତ ପୁରୁଷଙ୍କ ସ୍ମୃତିରୁ ଆମ୍ଭେମାନେ ପାଉଥିଲୁ ଜୀବନୀଶକ୍ତି ।

ମୋ ବାପା ଓ କକାମାନଙ୍କର ସେତେବେଳେ ଅର୍ଥାତ୍ ମୋ ବାଲ୍ୟକାଳରେ ପରିପୂର୍ଣ୍ଣ ଓ ଆନନ୍ଦ ଭରା ସଂସାର । ଷଢ଼େଇକଳା ଜନସାଧାରଣଙ୍କର ରାଜପରିବାର ପ୍ରତି ଅଫୁରନ୍ତ ସ୍ନେହ, ଶ୍ରଦ୍ଧା ଥିଲା । ରାଜପରିବାରର ସମସ୍ତେ ମଧ୍ୟ ଅନୁରୂପ ଭାବରେ ଜନସାଧାରଣଙ୍କ ପ୍ରତି ସଂବେଦନଶୀଳ ଥିଲେ । ସମସ୍ତଙ୍କର ସମସ୍ତଙ୍କ ପ୍ରତି ଗଭୀର ବିଶ୍ୱାସ ରହିଥିଲା । ଷଢ଼େଇକଳା ରାଜପରିବାରର ସାଂସ୍କୃତିକ ଅନୁଶୀଳନ ଅତ୍ୟନ୍ତ ଗଭୀର ଓ ଗମ୍ଭୀର ଥିଲା । ଏଥିଯୋଗୁଁ ଷଢ଼େଇକଳାର ସର୍ବତ୍ର ଓ ସର୍ବଦା ଶାନ୍ତ ଓ ଉଦାର ପରିବେଶ ପ୍ରକାଶ ପାଉଥିଲା । ଜ୍ଞାନୀ ଓ ଗୁଣୀ ଲୋକଙ୍କର ସମାବେଶରେ ଏକ ସୁନ୍ଦର ବୁଝାମଣା ଭାବ ସୃଷ୍ଟି ହେଉଥିଲା । ଏହିଭଳି ସୌମ୍ୟ, ଶାନ୍ତ ଅଥଚ ସାଂସ୍କୃତିକ ଚେତନାଶୀଳ ପରିସର ମଧ୍ୟରେ ଆମ୍ଭମାନଙ୍କର ଜୀବନର ପ୍ରାରମ୍ଭ ଧିରେ ଧିରେ ଗଢ଼ିଉଠୁଥିଲା । ଏହାହିଁ ଥିଲା ଆମ୍ଭମାନଙ୍କ ପାଇଁ ଆମ ପରବର୍ତ୍ତୀ ଜୀବନର ଭିତ୍ତିଭୂମି । ଆଜି ଏହି ଲମ୍ବା ଜୀବନର ଠା ମୁଣ୍ଡରେ ପହଞ୍ଚି ଚିନ୍ତାକଲାବେଳେ ସ୍ପଷ୍ଟଭାବରେ ଉପଲବ୍ଧିକରି ହୁଏ ଯେ ଜୀବନର ସଫଳତା ଗଢ଼ା ହୋଇ ପାରିଛି ସେଇ ବାଲ୍ୟ ଜୀବନର ଭିତ୍ତିଭୂମିରୁ ।

ମା'ଥିଲେ ଅତ୍ୟନ୍ତ ବିଦୂଷୀ ମହିଳା । ପ୍ରତ୍ୟେକ କାର୍ଯ୍ୟଥିଲା ତାଙ୍କର ଆଦର୍ଶମୟ । ଆମ୍ଭମାନଙ୍କର ଭଲକାର୍ଯ୍ୟ ବା ଆଚରଣକୁ ଯେପରି ସେ ଉତ୍ସାହିତ କରୁଥିଲେ ସେହିପରି ଆମ୍ଭମାନଙ୍କଠାରେ ସାମାନ୍ୟ ତ୍ରୁଟି ଦେଖୁଥିଲେ ଆମପ୍ରତି ଅତି କଠୋର ଆଚରଣ କରିବାକୁ ତିଳେ ହେଲେ ଦ୍ୱିଧାବୋଧ କରୁନଥିଲେ । ସେ ନିଜେ ଥିଲେ ଖେଳ କୁଦରେ ଅତ୍ୟନ୍ତ ନିପୁଣା । ସେଥିପାଇଁ ଶରୀର ଗଠନ ସକାଶେ ନିଃସଙ୍କୋଚରେ ଖେଳକୁଦକରି ପାରଦର୍ଶିତା ଲାଭ କରିବାକୁ ସେ ସବୁବେଳେ ଆମ୍ଭମାନଙ୍କୁ ଉତ୍ସାହିତ କରୁଥିଲେ । ସାଧାରଣ ପାଠ୍ୟକ୍ରମ ସହିତ ପୁରାଣ ଶାସ୍ତ୍ର ପଢ଼ିବାକୁ ସେ ସବୁବେଳେ ଆମ୍ଭମାନଙ୍କୁ ପ୍ରେରଣା ଦେଉଥିଲେ । ରାଜପରିବାରର ପ୍ରତ୍ୟେକ ପୁଅଝିଅ କିପରି ବାସ୍ତବତାର ସମ୍ମୁଖୀନ ହୋଇ ବିଭିନ୍ନ ପରିସ୍ଥିତିକୁ ସାହସ ଓ ଧୈର୍ଯ୍ୟର ସହିତ ମୁକାବିଲା କରିପାରିବ ସେଥିପାଇଁ ସେ ଆମ୍ଭମାନଙ୍କୁ ପ୍ରତିକ୍ଷଣରେ ଶିକ୍ଷା ଦେଉଥିଲେ । ମା'ଥିଲେ ଆମର ସର୍ବଗୁଣସମ୍ପନ୍ନା । ତାଙ୍କର ସର୍ବଗୁଣ ସମନ୍ୱିତ ପ୍ରଭାବ ଆମ ସମସ୍ତ ଭାଇଭଉଣୀଙ୍କ ଉପରେ ତୀବ୍ର ଭାବରେ ପ୍ରତି-ଫଳିତ ହୋଇଥିବାରୁ ଉତ୍ତର ଜୀବନରେ ଆମ୍ଭେ ସମସ୍ତେ ନିଜ ନିଜ କ୍ଷେତ୍ରରେ ପ୍ରତିଷ୍ଠାଲାଭ କରିଛୁ । ମାତୃ ଆଶୀର୍ବାଦ ଥିଲା ଆମ୍ଭମାନଙ୍କ ନିକଟରେ ଏକାନ୍ତ ଆଧାର । ପାରମ୍ପରିକ କୁଳୀନତା, ବଂଶମର୍ଯ୍ୟଦା ଆଚାର, ବିଚାର ଓ ବ୍ୟକ୍ତିଗତ ସମ୍ମାନ ରକ୍ଷାପାଇଁ ତାଙ୍କର ଆମ ପ୍ରତି ଥିଲା ସବୁବେଳେ ସତର୍କ ଦୃଷ୍ଟି । କିନ୍ତୁ ନିଜର ରୁଚି ଅନୁସାରେ ଆମ୍ଭେମାନେ ବ୍ୟକ୍ତିଗତ ସ୍ୱାଧିନତା ଉପଭୋଗ କରୁଥିଲୁ ମା'ଙ୍କ ନିର୍ଦ୍ଦେଶନା ଓ ଉତ୍ସାହରେ । ଏଥିପାଇଁ କୌଣସି ବାଧାବିଘ୍ନ ନଥିଲା । ଆନନ୍ଦମୁଖର ଥିଲା ଆମ୍ଭମାନଙ୍କର ବାଲ୍ୟଜୀବନ ।

ମା' ନିଜେ 'ଉତ୍ପଳା' ନାମରେ ଖଣ୍ଡିଏ ବହି ଲେଖିଥିଲେ । ତାହାଥିଲା ଆଧ୍ୟାତ୍ମିକ ଭାବନା ପୁଞ୍ଜରେ ଆଧାରିତ । ଷଢ଼େଇକଳାର ଆରାଧ୍ୟଦେବୀ ମା ପାଉଡ଼ୀଙ୍କୁ ନେଇ ଏକ ଗୁଣମୁଗ୍ଧା ଭକ୍ତଭାବରେ ମା' ଲେଖିଛନ୍ତି ଏହି ବହିରେ ତାଙ୍କର ଅପାର ମହିମା ସମ୍ପର୍କରେ ଅନେକ କଥା । ସରଳ ଭାଷା, ପ୍ରାଞ୍ଜଳ କାହାଣୀ ଓ ବିଷୟବସ୍ତୁ ଆକର୍ଷଣୀୟ ଯୋଗୁଁ ପାଠକର ମନକୁ ସ୍ପର୍ଶକରିଥିଲା । ମା' ପାଉଡ଼ୀଙ୍କ ଆଶୀର୍ବାଦରେ ଷଢ଼େଇକଳା ପ୍ରତ୍ୟେକ କ୍ଷେତ୍ରରେ ବିକାଶଲାଭ କରିଛି ; ଏହା ଷଢ଼େଇକଳାର ସମସ୍ତେ ସ୍ୱୀକାର କରନ୍ତି । ପ୍ରତ୍ୟେକ କାର୍ଯ୍ୟରେ ସଫଳତା ପାଇବା ପାଇଁ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଷଢ଼େଇକଳାବାସୀ ପବିତ୍ରମନରେ ମା

ପାଉଡ଼ୀଙ୍କର ଧ୍ୟାନ ଧାରଣା କରନ୍ତି । ପୂଜା ଅର୍ଘ୍ୟ ନେଇ ମାନସିକ କରନ୍ତି । ଫଳ ବି ପାଆନ୍ତି । ' ବିଶ୍ୱାସମୂଳେ ଏ ଜଗତ ' ଉକ୍ତିଟି ସମସ୍ତଙ୍କ ମନକୁ ଗଭୀର ଭାବରେ ଅନୁପ୍ରାଣୀତ କରେ । ସେଇଥିପାଇଁ ମା' ପାଉଡ଼ୀ ଠାକୁରାଣୀ ସବୁବେଳେ ସମସ୍ତଙ୍କର ଆରାଧ୍ୟ ।

ରାଜ ପରିବାରରେ ଚଳପ୍ରଚଳ ପାଇଁ ସାଧରଣ ସାମାଜିକ ରୀତିନୀତିଠାରୁ କେତେବେଳେ ହେଲେ କୌଣସି ବ୍ୟତିକ୍ରମ ଘଟୁନଥିଲା । ରାଜ ପରିବାର ପ୍ରଚଳିତ ସାମାଜିକ ଶୃଙ୍ଖଳାରୁ କେତେବେଳେ ହେଲେ ବହିର୍ଭୂତ ହୋଇ ଚଳୁନଥିଲେ । କିନ୍ତୁ ନିଜ ପରିସର ଓ ପରିବେଶ ମଧ୍ୟରେ ସମସ୍ତେ ସାମାଜିକ ପ୍ରକ୍ରିୟା ସହିତ ପ୍ରଶାସନର ଗୁରୁଦାୟିତ୍ୱ ଦୃଷ୍ଟିରୁ ଆଇନ୍ କାନୁନ୍‌ର ଶୃଙ୍ଖଳା ଭିତରେ କାର୍ଯ୍ୟ କରୁଥିବାରୁ ଜନସାଧାରଣ କେତେକାଂଶରେ ଆମଠାରୁ ଦୂରେଇ ରହୁଥିଲେ ହେଁ ଆମ ସମସ୍ତଙ୍କ ଭିତରେ ଏକ ଅନାବିଳ ସ୍ନେହ, ଶ୍ରଦ୍ଧାଭାବ ରହିଥିଲା । ଆମ୍ଭ ପରିବାରର ସମସ୍ତେ ଜନସାଧାରଣଙ୍କ ମଧ୍ୟରେ ଅତି ନିବିଡ଼ ଭାବରେ ମିଶି ପାରୁଥିଲେ । ମିଳିମିଶି ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ, ପର୍ବପର୍ବାଣୀ, ଓଷାବାର, ସଭାସମିତି, ବୁଲାବୁଲି ଆଦି ସବୁକିଛି ଅତି ଖୋଲା ମନରେ କରୁଥିଲୁ । ଏଥିରେ ହୃଦୟସ୍ପର୍ଶୀ ଆନନ୍ଦ ଅନୁଭବ କରିହେଉଥିଲା ।

ଷଢ଼େଇକଳା ରାଜମହଲକୁ ସ୍ପର୍ଶ କରି ଖଡ଼କେଇ ଗିରି ନଦୀ ବୋହି ଯାଇଛି ଶ୍ରଦ୍ଧାମୟୀ ଛନ୍ଦରେ । କାଚକେନ୍ଦୁଭଳି ତାର ଜଳଧାର । ତୃଷାହରଣକାରୀ ଜଳ ତା'ର ଅତ୍ୟନ୍ତ ନିର୍ମଳ, ସ୍ୱଚ୍ଛ ପାଣି ଯେମିତି ତାର ଅମୃତର ଧାରା । ବହୁ ପ୍ରାକୃତିକ ସୌନ୍ଦର୍ଯ୍ୟଭିତରେ ଏହି ଅମୃତମୟ ନଦୀ ତାର ଅମୃତର ଗତିପଥର ଉଭୟ ପାର୍ଶ୍ୱକୁ ଅନେକାଂଶରେ ବର୍ଣ୍ଣାଢ଼୍ୟ କରିଛି । ସୁନାର ସଂସାର ଗଢ଼ିବାରେ ସହାୟତା କରିଛି । ଦୁଇକୂଳରେ ଗଢ଼ିଉଠିଥିବା ଗ୍ରାମ୍ୟ ଜୀବନକୁ ଭରପୂର କରିଛି ଗ୍ରାମ୍ୟ ଜୀବନର ସୁଖ ଦୁଃଖର ଏହି ଖଡ଼କେଇ ନଦୀ । ଏହି ନଦୀରେ ଆମ୍ଭେ ସମସ୍ତ ଝିଅ, ବୋହୂ ତଥା ଅନ୍ୟମାନେ ନିଃସଂକୋଚରେ ବହୁବେଳ ଯାଏ ଖେଳାଖେଳି କରୁ ଏବଂ ଗାଧୁଆ ପାଧୁଆସାରି ଘରକୁ ଫେରୁ ବହୁବିଳମ୍ବରେ । ସତେ ଯେପରି ଏହି ଗିରି ତଟିନି ପ୍ରକୃତି କୋଳର ସ୍ନେହଶୀଳା ନନ୍ଦିନୀ ରୂପରେ ଆମ୍ଭମାନଙ୍କୁ ଖେଳାଇ କୋଳାଇ ସ୍ନେହ ବନ୍ଧନରେ ବାନ୍ଧିରଖିଛି । ଖେଳ ଭିତରେ ବାଲିଘର, ବାଲି ଦେଉଳ, ବାଲି ଠାକୁର ଆଦି ମିଛିମିଛିକା ଖେଳ । ନଦୀରେ ଆମ୍ଭେମାନେ ଗାଧୋଉଥିଲୁ, ଖେଳୁଥିଲୁ ଓ ପହଁରୁଥିଲୁ ।

ତଳ ଓ ଉପର ତୁଠମାନଙ୍କରେ ଅନ୍ୟମାନେ ମଧ ଅନୁରୂପ ଭାବରେ ଗାଧୁଆ ପାଧୁଆ କରୁଥିଲେ, ଖେଳୁଥିଲେ, ପହଁରୁଥିଲେ । ମା' ଖଡ଼କେଇଙ୍କ କୋଳଠେ ସଭିଏଁ ସମାନ । ସାନବଡ଼ର ବାଛ ବିଚାର ନାହିଁ । କାର୍ତ୍ତିକମାସରେ କାର୍ତ୍ତିକ ସ୍ନାନ, ପୂର୍ଣ୍ଣମା ଦିନରେ ପୂର୍ଣ୍ଣିମାସ୍ନାନ ଓ ଡ଼ଙ୍ଗାଭସା, ମକର ସ୍ନାନ, ଭାଦ୍ରବମାସରେ ଭାଦୁ ଜାଗରଣ ଆଦି ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଉପଚାର ସହିତ ସ୍ନାନକରୁ ଏବଂ ଉତ୍ସବ ପାଳନ କରୁ ନିଷ୍ଠାପର ଭାବରେ ଅତି ପବିତ୍ର ମନରେ । ଏତଦ୍‌ବ୍ୟତୀତ ଅଷ୍ଟପ୍ରହରୀ ନାମଯଜ୍ଞ ଆଦି ବହୁ ଆଧାତ୍ମିକ ପୂଜା ଅନୁଷ୍ଠାନରେ ଆମ୍ଭେମାନେ ଯୋଗଦାନ କରି ଏହାର ଉପାଦେୟତା ସମ୍ପର୍କରେ ମନ ଧ୍ୟାନ ଦେଇ ଶୁଣୁ ଏବଂ ବୁଝିବାକୁ ଚେଷ୍ଟାକରୁ । ପରବର୍ତ୍ତୀ କାଳରେ ଏହାର ପ୍ରଭାବ ମୋ ଜୀବନକୁ ବେଶ୍ ଅମୃତମୟ କରିଛି ଏହା ମୁଁ ଏବଂ ମୋର ଆତ୍ମୀୟ ତଥା ଅନ୍ୟମାନେ ନିଶ୍ଚୟ ସ୍ୱୀକାର କରନ୍ତି । ସମୟ ସମୟରେ ମନୋରଞ୍ଜନ ପାଇଁ କଣ୍ଢେଇ ଖେଳ, କଉଡ଼ି ଖେଳ ଆଦି ପ୍ରତିଯୋଗିତା ଆୟୋଜନ କରୁ । ସେତେବେଳେ ଏହା ଆମ୍ଭମାନଙ୍କ ପକ୍ଷରେ ବେଶ୍ ଆନନ୍ଦଦାୟକ ହେଉଥିଲା । ଷଢ଼େଇକଳା ସେତେବେଳେ ପୂର୍ଣ୍ଣତଃ ସାଂସ୍କୃତିକ ଚେତନାରେ ଅନୁପ୍ରାଣୀତ ହୋଇ ଏକ ମୁକ୍ତ ଜୀବନର ପରିବେଶ ସୃଷ୍ଟିକରି ସମସ୍ତଙ୍କୁ ଏକାକାର କରିଦେଉଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଷଢ଼େଇକଳା ଛଉ ନୃତ୍ୟପାଇଁ ପ୍ରସିଦ୍ଧ । ସେତେବେଳେ ଥିଲା । ଆଜିମଧ ରହିଛି । ଏହି ନୃତ୍ୟର ତୁଳନା ନାହିଁ । ମୋର ତିନି ଭାଇ ଶୁଭେନ୍ଦ୍ର, ବ୍ରଜେନ୍ଦ୍ର ଓ ଶୁଦ୍ଧେନ୍ଦ୍ର ଛଉନୃତ୍ୟରେ ଖୁବ୍ ସୁନାମ ଅର୍ଜନ କରିଥିଲେ । ବିଶେଷକରି ଶୁଭେନ୍ଦ୍ର ଦେଶ ବିଦେଶରେ ଯେଉଁ ପ୍ରଶଂସା ଅର୍ଜନ କରିଥିଲେ ତାହା କେବଳ ଷଢେଇକଳା ପାଇଁ ନୁହେଁ ସମଗ୍ର ଭାରତବର୍ଷର ସଂଗୀତ ନୃତ୍ୟ କଳାକୃତି ତଥା ସଂସ୍କୃତିପାଇଁ ଏକ ଗୌରବମୟ ଇତିହାସର ସର୍ବଶ୍ରେଷ୍ଠ ଅଧ୍ୟାୟ ବୋଲି କୁହାଯାଏ । ଛଉନୃତ୍ୟରେ ନିପୁଣ ମୋର ଏହି ତିନିଭାଇ ଇଉରୋପ ପ୍ରଭୃତି ପାଶ୍ଚାତ୍ୟ ଦେଶକୁ ଯାଇ ସେମାନଙ୍କ ଦଳର ନୃତ୍ୟ ପରିବେଷଣ ଦ୍ୱାରା ଉଚ୍ଛ୍ୱସିତ ପ୍ରଶଂସା ଅର୍ଜନ କରିଥିଲେ । ପାଶ୍ଚାତ୍ୟ ଗୁଣମୁଗ୍ଧ ପଣ୍ଡିତ, ଗୁଣିଜ୍ଞ, କଳାକାର, କଥାକାର, ସାହିତ୍ୟିକ, ସାମ୍ବାଦିକ, ରାଜନୀତିଜ୍ଞ, ପ୍ରଶାସକ, ସମାଜସେବୀ ପ୍ରମୁଖ ଏହି ନୃତ୍ୟର ପରିବେଷଣ ଶୈଳୀର ଏବଂ ଏହାର ଅନ୍ତର୍ନିହିତ କଳା କୁଶଳତାର ଭୂରୀଭୂରୀ ପ୍ରଶଂସା ତଥା ଯଶଗାନ କରିଛନ୍ତି । ମୋର ଭାଇ ଶୁଭେନ୍ଦ୍ରନାରାୟଣ ଏକଦା କଲିକତାଠାରେ ମହାତ୍ମାଗାନ୍ଧୀଙ୍କୁ ଛଉନୃତ୍ୟ ଦେଖାଇଥିଲେ । ସେତେବେଳେ ଗାନ୍ଧିଜୀଙ୍କ ସହିତ ଉପସ୍ଥିତ ଥିଲେ ବିଶ୍ୱକବି

ରବୀନ୍ଦ୍ରନାଥ ଠାକୁର, ଜବାହରଲାଲ ନେହେରୁ, ସରୋଜିନୀ ନାଇଡୁ ଓ ପ୍ରଖ୍ୟାତ ନାଟ୍ୟକାର ଉଦୟଶଙ୍କର ଆଦି ପ୍ରମୁଖ ରାଷ୍ଟ୍ରୀୟ ଜନନାୟକଗଣ । ସେମାନେ ଏହି ନୃତ୍ୟରେ ଅଭିଭୂତ ହୋଇ ପଡ଼ିଥିଲେ । ସେତେବେଳେ ସେମାନେ ଅନୁଭବ କରି ପ୍ରକାଶ କରିଥିଲେ ଯେ ଏ ଦେଶର କଳାକୃତି, ସଂସ୍କୃତି ଓ ସାହିତ୍ୟ ଆଦି କିପରି ପରାଧିନତାର ଅନ୍ଧକାର ମଧ୍ୟରେ ଉଜ୍ଜଳ ଦୀପ ଶିଖା ସଦୃଶ ଆତ୍ମପ୍ରକାଶ କରିପାରିଛି । ବିଦେଶୀ ଶାସନର କଠୋର ଆତ୍ମ-ବଡ଼ିମା ଭାରତର ମୌଳିକ ଉପାଦାନକୁ ହତ୍ୟାକରି ପାରିନାହିଁ, ସେମାନଙ୍କର ଅହଂକାରୀ ମନର ଉଦ୍ୟମ ସତ୍ତ୍ୱେ । ନୃତ୍ୟ ଦେଖିଲାପରେ ଥିଲା ସେମାନଙ୍କର ଏହି ସଦ୍‌ଭାବନା । ପରାଧିନତାର ଘୋର ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଏହା ମରିହଜି ଯାଇନାହିଁ ବୋଲି ସେମାନଙ୍କର ଯଥାର୍ଥ ଭାବରେ ହୃଦ୍‌ବୋଧ ହୋଇଥିଲା । ସେମାନେ ତାହା ମରଣଜୟୀ ଅକ୍ଷରରେ ଲିପିବଦ୍ଧ କରି ଯାଇଛନ୍ତି । ରାଜବଂଶର ପ୍ରୋତ୍ସାହନରେ ଏହା ବିକାଶ ଲାଭ କରିଥିଲା ତାହା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରନ୍ତି ।

ମୋର ବାବାଙ୍କର କଳାନୃତ୍ୟ, ସଂଗୀତ, ସାହିତ୍ୟ ପ୍ରତି ଗଭୀର ଆଗ୍ରହଥିଲା । ମୋର କାକା ସ୍ୱର୍ଗତଃ ବିଜୟ ପ୍ରତାପ ସିଂହଦେଓଙ୍କର ନୃତ୍ୟଗୀତ ଆଦିରେ ଖୁବ୍ ଦଖଲ ଥିଲା । ମୋ ବାବାଙ୍କ ଦ୍ୱାରା ଲିଖିତ ନାଟକ ''ଶୈବ୍ୟା'' ଅନେକଥର ଅଭିନୀତ ହୋଇଛି କାକା ବିଜୟପ୍ରତାପ ଙ୍କ ନିର୍ଦ୍ଦେଶନାରେ । ସଫଳ ନିର୍ଦ୍ଦେଶନା ଏବଂ ସଫଳ ନାଟକ । ପ୍ରତ୍ୟେକ ଥର ଭରପୂର ଦର୍ଶକମଣ୍ଡଳୀ ଉପଭୋଗ କରିଛନ୍ତି ପରିପୂର୍ଣ୍ଣ ଭାବରେ । ମାତୃଭୂମି ଭାରତବର୍ଷ ଏହା ଦ୍ୱାରା ଗୌରବାନ୍ୱିତ ହୋଇଛି । ଏଥିପାଇଁ ଆମ୍ଭ ସମସ୍ତ ଭାଇଭଉଣୀ ତଥା ଷଢ଼େଇକଳାର ଜନସାଧାରଣ ଗର୍ବିତ ।

ମୋର ବଡଭାଇ ଷଢ଼େଇକଳା ଟିକାୟତ ନୃପେନ୍ଦ୍ର ନାରାୟଣଙ୍କ ଲିଖିତ ପୁସ୍ତକ ' Seraikela and Kharsuan through the ages' ରେ ଛଉନୃତ୍ୟ ସମ୍ପର୍କରେ ବିଶଦ ବିବରଣୀ ଲିପିବଦ୍ଧ ହୋଇଛି । ଛଉନୃତ୍ୟ ବା ସାଂସ୍କୃତିକ ପ୍ରତିଛବି ସହିତ ଏହି ଅଞ୍ଚଳର ଇତିହାସର ପ୍ରାଞ୍ଜଳ ରୂପ ଏହି ପୁସ୍ତକ ଅଧ୍ୟୟନରୁ ସ୍ପଷ୍ଟଭାବରେ ଜଣାପଡ଼େ ।

ପ୍ରତିବର୍ଷ ପଣାସଂକ୍ରାନ୍ତିର ୪/୫ ଦିନ ପୂର୍ବରୁ ସ୍ଥିରୀକୃତ ବେଳା ବାର ଦେଖି ଆମ୍ଭର ପର୍ବ ବହୁ ଜାକଜମକରେ ଅନୁଷ୍ଠିତ ହୁଏ । ପଣାସଂକ୍ରାନ୍ତି ଦିନ ଶେଷ ହୁଏ । ଛୁଆଁ, ଅଛୁଆଁ, ବିଭିନ୍ନଜାତିର ୧୩ଜଣ ଭଗତ ଶିବମନ୍ଦିରକୁ ଯାଇ ନିର୍ଦ୍ଦିଷ୍ଟ ସମୟରେ

ଏକତ୍ରିତ ହୁଅନ୍ତି । ସେଠାରେ ସେମାନେ ଖିଅର ହୋଇ ଗାଧୋଇବାପରେ ପଇତା ପକାନ୍ତି ଓ ପୂଜା ଆରାଧନା ପରେ ଶିବ ଗୋତ୍ର ଅନ୍ତଃର୍ଭୁକ୍ତ ହୁଅନ୍ତି । ସେମାନେ ବିଭିନ୍ନ ଜାତିର ହେଲେ ହେଁ ଛୁଆଁ ଅଛୁଆଁ ଭେଦଭାବ ରହେନାହିଁ । ସମସ୍ତେ ନିଜ ନିଜକୁ ଏକ ପରିବାରଭୁକ୍ତ ବୋଲି ଭାବନ୍ତି । ଦିନକୁ ଥରେ ମାତ୍ର ଶିବ ମନ୍ଦିରରେ ଅରୁଆ ପ୍ରସାଦ ପାଆନ୍ତି । ଏହି ୧୩ ଜଣ ଭଗତଙ୍କ ମଧ୍ୟରେ ଜଣେ ମୁଖ୍ୟ ଭଗତ ଥାଆନ୍ତି । ତାଙ୍କୁ ପାଟଭଗତ କୁହନ୍ତି । ସେମାନେ ଏକ ନିର୍ଦ୍ଦିଷ୍ଟ ଘାଟରେ ଗାଧାନ୍ତି । ତାହାକୁ ସେମାନେ ମାଜଣା ଘାଟ ବା ରାଜାଙ୍କ ଘାଟ କୁହନ୍ତି । ଏହା ଭିତରେ ଦିନେ ଘଟ ଯାତ୍ରା ହୁଏ । ଏହା ଦେଖିବାକୁ ହଜାର ହଜାର ସଂଖ୍ୟାର ଦର୍ଶକମାନଙ୍କର ସମାବେଶ ହୁଏ । ଏହା ଯେପରି ବୀରତ୍ୱ ବ୍ୟଞ୍ଜକ ସେହିପରି ଐଶୋରିକ ଶକ୍ତି ସଂଚାରକ । ଏହି ପ୍ରାରମ୍ଭିକପର୍ବ ପ୍ରତ୍ୟେକଙ୍କୁ ଅତି ତୀବ୍ରଭାବରେ ଆକର୍ଷଣ କରେ । ଦର୍ଶକମାନେ ଭାବବିହ୍ୱଳିତ, ମୋହାଚ୍ଛନ୍ନ ହୋଇପଡ଼ନ୍ତି । ମନରେ ଓ ଦେହରେ ଅପୂର୍ବ ପୁଲକ ସୃଷ୍ଟି ହୁଏ ।

ପାଟ ଘଟୁଆ ମୁଣ୍ଡରେ ଘଟ ଧରି ବାଦ୍ୟସହ ଏକ ଶୋଭାଯାତ୍ରାରେ ମାଜଣାଘାଟରୁ ପୂଜାବିଧି ପରେ ଶିବ ମନ୍ଦିର ଦେଇ ନାଚି ନାଚି ଆସନ୍ତି । ଯାତ୍ରାଘଟ ମୁଣ୍ଡରେ ନେଇ ଆସୁଥିବା ପାଟଘଟୁଆର ପୋଷାକ ନାଲିରଂଙ୍ଗର ହୋଇଥାଏ । ସେ ମୁହଁ ହାତରେ ଗାଢ଼ ଲାଲରଂଗ ବୋଳି ହୋଇଥାଏ । ଦେହରେ ଅନେକ ରକମର ଅଳଙ୍କାର ଥାଏ । ଅନ୍ୟ ଭଗତମାନେ ପାରମ୍ପରିକ ବେଶ ପୋଷାକରେ ଆସନ୍ତି । ଏହି ମନଜିଣାନୃତ୍ୟ ର ଆଧ୍ୟାତ୍ମିକ ଶୋଭାଯାତ୍ରା ଆସି ପହଞ୍ଚେ ରାଜବାଟୀ ସାମନା ଭିତର ପଡ଼ିଆରେ । ଏଥିରେ ଯୋଗଦେଇଥାନ୍ତି ବାବୁ ସାହି, ବ୍ରାହ୍ମଣ ସାହି, ଖତରା ସାହି, କଂସାରୀ ସାହି ପ୍ରଭୃତି ଭିନ୍ନ ଭିନ୍ନ ସାହିର ଛଉ ଆଖଡ଼ାର ଦଳ । ବିଭିନ୍ନ ସାହିର ଦଳ ଯେଉଁ ଯାଗାରେ ସେମାନଙ୍କ ନାଚ ପ୍ରଦର୍ଶନ କରିବେ ସେମାନେ ସେହି ଜାଗା ମାଡ଼ିଯାନ୍ତି । ଅର୍ଥାତ୍ ସେହି ସ୍ଥାନ ହିଁ ସେମାନଙ୍କ ନୃତ୍ୟପାଇଁ ନିରୂପିତ ସ୍ଥାନ ଏବଂ ସେଠାରେ ସେହିଦଳର ଚିହ୍ନିତ ପତାକା ଉଡ଼ାଯାଇଥାଏ । ୩/୪ ରାତି ଧରି ଛଉନୃତ୍ୟ ଖୁବ୍ ଧୁମ୍‌ଧାମ୍‌ରେ ଅନୁଷ୍ଠିତ ହୁଏ । ଷଢ଼େଇକଳା ଛଉର ତୁଳନା ନାହିଁ । ଉତ୍କର୍ଷତାର ଚରମସୀମାରେ ପହଞ୍ଚିଥିବା ଏହି ଛଉନୃତ୍ୟ ଏକ ସମୟରେ ବିଶ୍ୱପ୍ରସାରୀ ହୋଇଥିଲା । ବିଶ୍ୱର ଶ୍ରେଷ୍ଠ ନରନାରୀମାନେ ଏହି ନୃତ୍ୟର ଗୁଣମୁଗ୍ଧ ହୋଇ ଭୂରିଭୂରି ପ୍ରଶଂସା କରିଛନ୍ତି । ଷଢ଼େଇକଳା ଛଉ ସମ୍ପର୍କରେ ଏକ ପ୍ରବାଦ ରହିଛି ।

ଖରସୂଆଁର ଯାତ୍ରାଘଟ । ବ୍ରାହ୍ମଣିଆ ଘାଟିଆପାଟ

କେରାର କାଳିକା ଘଟ । ଷଢ଼େଇକଳା ନାଟ

ମୁଁ ଶୁଣିଛି ଯେ ମୋର ଅଜା, ବାବା ଓ କାକାମାନେ ସେମାନଙ୍କ ପିଲାବୟସରେ ସମସ୍ତଙ୍କ ସହିତ ମିଳିମିଶି ଛଉନୃତ୍ୟ କରୁଥିଲେ । ପରିବାରର ଯେଉଁମାନେ ଛଉନୃତ୍ୟ କରୁଥିଲେ ସେମାନଙ୍କୁ ନାନା ବାଟରେ ଉତ୍ସାହନ ଓ ପ୍ରୋତ୍ସାହନ ଦେଇ ପାରୁଥିଲେ । ମୁଁ ମୋର ନିଜ ଭାଇମାନଙ୍କର ଛଉନୃତ୍ୟ ଦେଖିଛି । ଷଢ଼େଇକଳା ଛଉର ବିଶେଷତ୍ୱ ହେଲା ଯେ ଏମାନେ ମୁଖା ବ୍ୟବହାର କରନ୍ତି । ମୋ ଭାଇମାନଙ୍କର ନୃତ୍ୟର ଅଭିବ୍ୟକ୍ତି ଏତେ ସଜୀବ ହୋଇଉଠେ ଯେପରି ପ୍ରତ୍ୟେକ ଦର୍ଶକ ଅନୁଭବ କରେ ଯେ ସେ ଏକ ସ୍ୱପ୍ନପୁରୀର ଭସାବାଦଲରେ ପହଁରି ବୁଲୁଛି କିଛି ଅଲଭ୍ୟବସ୍ତୁ ପାଇବା ପାଇଁ । ମୟୂରଭଞ୍ଜ, ପୁରୁଲିଆ, ଢ଼େଙ୍କାନାଳ ଓ ନୀଳଗିରୀ ଆଦି ଛଉନୃତ୍ୟରେ ବିକାଶ ଲାଭ କରିଥିଲେ ହେଁ ସେମାନେ ମୁଖା ବ୍ୟବହାର କରୁନଥିଲେ । ଅଧୁନା ମୟୂରଭଞ୍ଜ, ପୁରୁଲିଆରେ ଛଉନୃତ୍ୟ ସରକାରୀ ପ୍ରେତ୍ସାହନରେ ସାମାନ୍ୟମାତ୍ର ବଞ୍ଚି ରହିଛି । କିନ୍ତୁ ସେତେବେଳ ପରି ପ୍ରାଣସ୍ପର୍ଶୀ କର୍ମଚଞ୍ଚଳତା ନାହିଁ । ପ୍ରାଣଶୂନ୍ୟ ଭାବରେ ନାମକୁମାତ୍ର ରହିଛି ଢ଼େଙ୍କାନାଳରେ । ରାଜର୍ଷୀ ସୁରପ୍ରତାପ ମହୀନ୍ଦ୍ର ବାହାଦୁର ଏବଂ ତାଙ୍କର ସୁଯୋଗ୍ୟ ପୁତ୍ର ରାଜା ଶଙ୍କର ପ୍ରତାପ ସିଂହଦେଓଙ୍କ ଉଦ୍ୟମରେ, ଉତ୍ସାହରେ ଓ ପ୍ରୋତ୍ସାହନରେ ବଳରାମପୁର, କାଶିଆଡ଼ିହି, ଝୁମ୍ପୁଡ଼ିଆ, ଗଞ୍ଜେଇଡ଼ିହି ( ଚନ୍ଦ୍ର ଶେଖର ପ୍ରସାଦ ) ଆଦି ଗ୍ରାମରେ ୩/୪ଟି ଛଉ ନୃତ୍ୟ ଦଳ ବେଶ୍ ସୁନାମ ଅର୍ଜନ କରିଥିଲେ । ଏଠାକାର ଛଉନୃତ୍ୟକାରୀ ମାନଙ୍କୁ ଓ ପାଇକ ଆଖଡ଼ାକୁ ଜାଗିର ଦେବାର ବ୍ୟବସ୍ଥା କରିଥିଲେ । ମୟୂରଭଞ୍ଜର ଜଣେ ନାମକରା ଓସ୍ତାଦ୍ ଏହି ଦଳଗୁଡିକୁ ଉତ୍ତମ ଭାବରେ ଶିକ୍ଷାଦେଇଥିଲେ । କଟକରେ ଅନୁଷ୍ଠିତ ଛଉନୃତ୍ୟରେ ଢ଼େଙ୍କାନାଳ ଦଳ ସର୍ବଶ୍ରେଷ୍ଠ ଦଳ ଭାବରେ ସ୍ୱୀକୃତିଲାଭ କରି ପୁରସ୍କୃତ ହୋଇଥିଲା । ସାଂସ୍କୃତିକ କାର୍ଯକ୍ରମରେ ଛଉନୃତ୍ୟ,ସ୍କାଉଟିଂ, ଗାର୍ଲସ୍‌ଗାଇଡ୍‌ର ଭିନ୍ନଭିନ୍ନ କାର୍ଯକ୍ରମ ଢ଼େଙ୍କାନାଳ ପାଇଁ ଗର୍ବ କଲାଭଳି ପ୍ରଶଂସା ଆଣିପାରିଥିଲା । କିନ୍ତୁ ଆଜି ଛଉନୃତ୍ୟ ନିଶ୍ଚିହ୍ନ ହୋଇଗଲାଣି । ରାମଗଲେ, ଅଯୋଧ୍ୟା ଗଲା ଭଳି କେବଳ କାହାଣୀଟିଏ ହୋଇରହିଲା - ଢେଙ୍କାନାଳର ଛଉଦଳ ଦିନେ ଗର୍ବ ଓ ଗୌରବର ଇତିହାସ ସୃଷ୍ଟି କରିଥିଲା । ସେତେବେଳର ସଂସ୍କାରମୂଳକ ଚିନ୍ତାଧାରା, ଉଦାର ମନୋ ଭାବ, ଐକ୍ୟ ଓ ସଂହତିର ଆଦର୍ଶରେ ସଂଘବଦ୍ଧ ଜୀବନ ; ଉଗ୍ରଜାତି -ଭେଦକୁ ଅସ୍ୱୀକାର ଆଦି

ବିଭିନ୍ନ ବିଷୟ ସମ୍ପର୍କରେ ଐତିହାସିକ, ଗବେଷକ ଓ ସମାଲୋଚକ ପ୍ରମୁଖ, ନିରପେକ୍ଷ ଦୃଷ୍ଟିକୋଣରୁ, ଗବେଷଣା କରି ସତ୍ୟ ସନ୍ଦର୍ଭ ପ୍ରକାଶ କରିପାରିଲେ । ତୁଳନାତ୍ମକଭାବରେ ଆଜିର ସମାଜ ଓ ପ୍ରଶାସନ କିପରି ଅବକ୍ଷୟର ଏକ ଆଗ୍ନେୟଗିରି ମୁଖରେ ପଡ଼ିରହିଆସନ୍ନ ଧ୍ୱଂସକୁ ଅପେକ୍ଷା କରିରହିଛି ତାହା ସ୍ପଷ୍ଟଭାବରେ ଉପଲବ୍ଧି କରି ହେବ । ଛଉନାଚପାଇଁ କଳାକାର ଆସୁଥିଲେ ଭିନ୍ନ ଭିନ୍ନ ଜାତିରୁ ବା ଗୋଷ୍ଠିରୁ ଯେଉଁମାନଙ୍କର କଳାପ୍ରତି ରୁଚିଥିଲା କଠିନ ନୃତ୍ୟପାଇଁ ଯେଉଁମାନଙ୍କର ଉତ୍ତମ ସ୍ୱାସ୍ଥ୍ୟଥିଲା, ଯେଉଁମାନଙ୍କର ଶରୀର ଗଠନ ଆକର୍ଷଣୀୟ ଥିଲା ଓ ଯେଉଁମାନେ ନିରୋଗ ଅଥବା ଅକ୍ଷତ ଥିଲେ ଏବଂ ସର୍ବୋପରି ଯେଉଁମାନେ ନିୟମାନୁବର୍ତ୍ତି, ଶୃଙ୍ଖଳିତ ଓ ଅନୁଷ୍ଠାନପ୍ରତି ଅନୁରକ୍ତି ରଖିବେ ବୋଲି ହୃଦୟବୋଧ ହେଉଥିଲା ସେମାନେ ଯେଉଁ ଜାତିର ବା ବଂଶର ହୁଅନ୍ତୁ ନା କାହିଁକି ଗରିବ ହୁଅନ୍ତୁ ବା ଧନୀ ହୁଅନ୍ତୁ ସେମାନଙ୍କୁ ଏଥିପାଇଁ ନିର୍ବିକାର ମନରେ ନିଃସନ୍ଦେହରେ ଦଳଭୁକ୍ତ କରାଯାଉଥିଲା । କେବଳ ରାଜପୁତ୍ର ବା ରାଜ ବିରାଦରମାନେ ଏହି ନୃତ୍ୟଦଳ ସଂଗଠିତ କରି ନଥିଲେ । ଏହାଥିଲା ସମସ୍ତଙ୍କର, ଦେଶର ଏବଂ ଜାତିର । ସେତେବେଳେ ରାଜଦରବାର କେବଳ ଏହି ପ୍ରକାରର ଛଉ ନୃତ୍ୟଗୀତ ପାଇଁ ସହାୟତା କରୁନଥିଲେ, ସକଳ ପ୍ରକାର ସାଂସ୍କୃତିକ କାର୍ଯପାଇଁ ପ୍ରୋତ୍ସାହନ ଦେଉଥିଲେ । ପ୍ରତ୍ୟେକ ଦିଗରୁ କଳାକାର ମାନଙ୍କୁ ଉତ୍ସାହିତ କରୁଥିଲେ ନାନା ବାଟରେ । ଯୋଗ୍ୟତାର ମାପକାଠିରେ ସେମାନଙ୍କୁ ଉଚିତ ମାର୍ଗରେ ସମ୍ମାନୀତ କରୁଥିଲେ । ପୁରସ୍କୃତ ମଧ କରୁଥିଲେ । ଆର୍ଥିକ ସହାୟତା ଦେଉଥିଲେ । ଫଳରେ କଳାକାର ମାନେ ଉତ୍ତରୋତ୍ତର ସଫଳତା ପାଇଁ ନିଜନିଜ ଭିତରେ ସ୍ନେହ ସୌହାର୍ଦ୍ଦ୍ୟ ଭିତରେ ପ୍ରତିଯୋଗିତା ମୂଳକ ଉଦ୍ୟମ କରୁଥିଲେ । ଦଳରେ ଥିବାବେଳେ ଏକାଠି ଏକାଖାଦ୍ୟ ଖାଇବା, ଏକାଠି ବସିବା, ନୃତ୍ୟ ଗୀତ ଶିଖିବା ଆଦି ବିଭିନ୍ନ କାର୍ଯ୍ୟକ୍ରମରେ ଜାତି ଭେଦର ବିଚାର ଆଦୌନଥିଲା । ସଂଗଠିତ ସଂଘବଦ୍ଧ କାର୍ଯ୍ୟକ୍ରମରେ ଥିଲାବାଲା ନଥିଲା ବାଲା ର ଭେଦ ନ ଥିଲ । କଳାକାର ଭାବରେ ରାଜା ଓ ପ୍ରଜାର ଭେଦ ନ ଥିଲ । ସମସ୍ତେ ସମାନ । ଗୋଟିଏ ସଂଗଠନର ଗୋଟିଏ ମନ ନେଇ ସେମାନେ ନିଜକୁ ଶୃଙ୍ଖଳିତ କଳାକାର ବୋଲି ମନେକରୁଥିଲେ ।-ସଂକୀର୍ଣ୍ଣତା ନଥିଲା । ଅଫୁରନ୍ତ ପ୍ରାଣର ପ୍ରବଳ ସୁଅ ସେମାନଙ୍କ କଳାକାର ଜୀବନରେ ଭରି ଦେଇଥିଲା ଆନନ୍ଦ ଓ ଉଲ୍ଲାସର ଅନନ୍ତ ପ୍ରବାହ । ସମସ୍ତେ ସମସ୍ତଙ୍କୁ ସାହାଯ୍ୟ ଓ ସହଯୋଗ କରୁଥିଲେ । ସମସ୍ତେ ସମସ୍ତଙ୍କର ପରିପୂରକ ଥିଲେ । ବିଭିନ୍ନ ଧର୍ମର, ବିଭିନ୍ନ ଶ୍ରେଣୀର,

ବିଭିନ୍ନ ଜାତିର, ବିଭିନ୍ନ କିସମର ଓ ବିଭିନ୍ନ ମନୋବୃତ୍ତିର କଳାକାର ହେଲେ ମଧ୍ୟ ସେମାନେ ସଂଘ ଆଦର୍ଶରେ ଅନୁପ୍ରାଣିତ ଗୋଟିଏ ଅନୁଷ୍ଠାନର ଅନ୍ତର୍ଭୁକ୍ତ ଥିଲେ । ସେମାନଙ୍କ ମଧ୍ୟରେ ସବୁବେଳେ ଥିଲା ସର୍ବସମନ୍ୱିତ ମନୋଭାବ । ସମସ୍ତଙ୍କର ସମସ୍ତଙ୍କ ପ୍ରତି ମର୍ଯ୍ୟାଦାବୋଧ ଓ ଦାୟିତ୍ୱବୋଧ ପରିପୂର୍ଣ୍ଣ ଭାବରେ ରହିଥିଲା । ସଂଘ ବା ଅନୁଷ୍ଠାନ ପ୍ରତି କଳାକାର ମାନଙ୍କର ପ୍ରବଳ ଅନୁରକ୍ତି ରହିଥିଲା । ପରାଧୀନତାର ଅନ୍ଧକାର ମଧ୍ୟରେ ଥାଇ ମଧ୍ୟ ମୂଲ୍ୟବୋଧ ପ୍ରତି ଯଥେଷ୍ଟ ସଚେତନ ଥିଲେ । ଏହା ମନଗଢ଼ା କାହାଣୀ ନୁହେଁ ନିଛକ ସତ୍ୟ ଘଟଣା । ମହାତ୍ମାଗାନ୍ଧୀଙ୍କର ଅସ୍ପୃଶ୍ୟତା ନିବାରଣ ଆହ୍ୱାନ ସେତେବେଳେ ବୋଧହୁଏ ଆସିନାହିଁ । ହରିଜନ ଆନ୍ଦୋଳନ ସେପର୍ଯ୍ୟନ୍ତ ଦେଶର କୌଣସି ପ୍ରାନ୍ତରେ ଉଚ୍ଚାରିତ ହୋଇନାହିଁ । ଜାତିଭେଦ ଅତି ଉଗ୍ରଭାବରେ ସବୁଆଡ଼େ ଭରପୂର ହୋଇରହିଛି । ଛୁଆଁ ଛୁଇଁରେ ଅତି ନିର୍ମମ ଅବସ୍ଥା । ଅଛୁଆଁ ଲୋକର ଛାଇ ପଡ଼ିଲେ ଉଚ୍ଚତର ଜାତିର ଲୋକମାନେ ଗାଧୋଇ ସୂଚୀ ହୁଅନ୍ତି । ଖାଉଥିଲା ବେଳେ ଅଛୁଆଁ ଶ୍ରେଣୀର ଲୋକ ଡ଼ାକ ମାରିଲେ ଖାଦ୍ୟ ମାରା ହୁଏ । ବହୁ କୁସଂସ୍କାର ଓ ଅନ୍ଧ ବିଶ୍ୱାସ ଦେଶର ଏ ପ୍ରାନ୍ତରୁ ସେ ପ୍ରାନ୍ତ ଯାଏ ଭରି ରହିଥିଲା । ଏହା ସତ୍ତ୍ୱେ ସେତେବେଳେ ଆମ୍ଭ ଷଢ଼େଇକଳା ରାଜ ପରିବାରର ଏଥିରୁ ଅନେକାଂଶରେ ଛଉ, ଅଷ୍ଟପ୍ରହରୀ ଓ ଅପେରା ଆଦି ଅନେକ ସାଂସ୍କୃତିକ କାର୍ଯ୍ୟକ୍ରମ ମଧ୍ୟରେ ଛୁଆଁ, ଅଛୁଆଁ, ବଡ଼ସାନ, ରାଜାପ୍ରଜା, ଜାତି ଜାତିର ଭେଦ ଭାବ ଆଦୌ ରଖି ନଥିଲେ । ସାମାଜିକ କାର୍ଯ୍ୟକ୍ରମରେ ଏହାକୁ ଦୂର କରିବାପାଇଁ ବରାବର ଉଦ୍ୟମ କରୁଥିଲେ । ସେ ସମୟରେ ଷଢ଼େଇକଳା ରାଜପରିବାରର ସମାଜର ପ୍ରଚଳିତ ଅନେକ କୁସଂସ୍କାର ବିରୁଦ୍ଧରେ ପ୍ରତ୍ୟକ୍ଷ ଭାବରେ ଲଢ଼େଇ କରି ଏକ ସୁଦୂର ପ୍ରସାରୀ ପରିବର୍ତ୍ତନ ଆଣିବାକୁ ସାର୍ଥକ ପଦକ୍ଷେପ ନେଇଥିଲେ । ଏହା କେହି ଆଜି ଅସ୍ୱୀକାର କରିପାରନ୍ତି ନାହିଁ ବରଂ ଏହା ବିଭିନ୍ନ କଥା ସାହିତ୍ୟରେ ଲିପିବଦ୍ଧ ହୋଇଛି । କାଳକାଳକୁ ଏହା ଅଲିଭାଦୀପ ର ଜ୍ୟୋତି ଭଳି ଉଦ୍‌ଭାସିତ ହୋଇ ରହିବ ।

ଏପରି ଏକ ଉନ୍ନତ ଓ ପ୍ରଗତିଶୀଳ ରାଜପରିବାର ମଧ୍ୟରେ ମୋର ଜନ୍ମ ଏବଂ ଜୀବନର ଆଦ୍ୟ ଭାଗରେ ବହୁ ଆଦର୍ଶ, ବ୍ୟବାହାରିକ ଜ୍ଞାନ, ଶିକ୍ଷଣୀୟ ଅନୁଭୂତି, ଶୃଙ୍ଖଳିତ ଜୀବନର ମର୍ଯ୍ୟାଦା, ରୀତି, ନୀତି, ଆଚାର ଓ ବିଚାରଧାରାରେ ମୁଁ ଅନୁପ୍ରାଣିତ ହୋଇଥିଲି । ଏକଥା ମୁଁ ଅସ୍ୱୀକାର କରିପାରେ ନାହିଁ ଏବଂ ସର୍ବୋପରି ଗୋଟିଏ ଉତ୍ତମ ମଣିଷ ଜୀବନର ପରିପୂର୍ଣ୍ଣ ଅଭିଜ୍ଞତା ନେଇ ମୋ ଜୀବନର ଅକ୍ଷୟ

କର୍ମକ୍ଷେତ୍ର ଢେଙ୍କାନାଳ ଆସିଲି ମୋର ବିବାହ ପରେ । ମୋ ବିବାହ ପୂର୍ବରୁ ଢେଙ୍କାନାଳ ଓ ଷଢ଼େଇକଳା ରାଜପରିବାର ସଂପର୍କ ଥିଲା ମାମୁଁ ଘର ଓ ପିଉସୀ ଘର ସଂପର୍କ । ଏବେ ହେଲେ ଶ୍ୱଶୂର ଓ ଜ୍ୱାଇଁଘରର ସଂପର୍କ । ନିଗୁଢ଼ ଓ ଚିରନ୍ତନ ସେ ସଂପର୍କ । ଅତୁଳ ପାରିବାରିକ ବନ୍ଧନ ଯୋଗୁଁ ଉଭୟ ପରିବାର ଉପରେ ଉଭୟର ପ୍ରଭାବ ବିଶେଷଭାବରେ ପଡ଼ିଥିଲା ।

## ମୋର ବିବାହ ସମୟର ଢେଙ୍କାନାଳ :

ରାଜା ଶଙ୍କରପ୍ରତାପଙ୍କର ଜନ୍ମ- ୧୯୦୪ ମସିହାରେ । ତାଙ୍କୁ ଯେତେବେଳେ ୧୪ ବର୍ଷ ସେତେବେଳେ ତାଙ୍କ ବାପାଙ୍କର ମୃତ୍ୟୁ ହୁଏ ୧୯୧୮ ମସିହାରେ । ବାଳକ ବୟସ, ସେ ପଢୁଥାନ୍ତି ଢେଙ୍କାନାଳରେ । ସେତେବେଳେ ସାଂସାରିକ ଜୀବନ ଯାତ୍ରାର ଦାୟିତ୍ୱ ଉପଲବ୍ଧି ନକରିପାରିବା ପରି ବୟସ ତାଙ୍କର । ରାଜ୍ୟ ପରିଚାଳନାର ଗୁରୁଦାୟିତ୍ୱ ଗ୍ରହଣ କରିବା ଭଳି ଶକ୍ତି ତାଙ୍କର ଆସିନଥିଲା । ମା' ବୈଧବ୍ୟ ଶୋକରେ ଜର୍ଜରିତା । ଛୋଟ ଛୋଟ ପାଞ୍ଚ ଭାଇଙ୍କର ଅସହାୟ ଅବସ୍ଥା । ଏହିପରି ଏକ ଅଲଘନୀୟ ଭାଗ୍ୟ ବିପର୍ଯ୍ୟୟ ବେଳେ ଚିତ୍ତ ଚଞ୍ଚଳ ଓ ଶୋକ ବିହ୍ୱଳିତ ଅଳ୍ପ ବୟସର ବାଳକ ରାଜା ଶଙ୍କରପ୍ରତାପ କିପରି ନିରନ୍ଧ୍ର ଅନ୍ଧକାର କାଟି ଉଜ୍ଜ୍ୱଳ ଭବିଷ୍ୟତ ଗଢ଼ିବେ, ସେ ବିଷୟରେ କୌଣସି ଏକ ଦୈବଦତ୍ତ ଅଜଣା ଶକ୍ତି ଓ ଐଶ୍ୱରିକ ଆଶିର୍ବାଦ ପାଇ ଅନମନୀୟ ଭାବରେ ସ୍ଥିର କରିନେଲେ ନିଜର କର୍ତ୍ତବ୍ୟ । ତାହା ଥିଲା ତାଙ୍କର ଏକ ଚରମ ନିଷ୍ପତ୍ତି ଏବଂ କଠୋର ପ୍ରତିଜ୍ଞା । ସେ ତା ପର ଠାରୁ ଆଉ ପଛକୁ ଫେରି ଚାହିଁନାହାଁନ୍ତି । ନିଜର ଭଲ ପାଇଁ ଓ ସମସ୍ତଙ୍କର ମଙ୍ଗଳ ପାଇଁ ସର୍ବଶକ୍ତିମୟୀ ଭଗବତୀଙ୍କ ଆଶିର୍ବାଦରେ ସେ ବାସ୍ତବୋଚିତ ମାର୍ଗରେ ଆଗେଇ ଯିବାକୁ ସଂକଳ୍ପ କରିନେଇଥିଲେ ।

ପୂଜ୍ୟ ଶ୍ୱଶୂର ରାଜର୍ଷୀ ସୁରପ୍ରତାପଙ୍କ ମୃତ୍ୟୁ ପରେ ରାଜା ଶଙ୍କର ପ୍ରତାପ ନାବାଳକ ଥିବା ଯୋଗୁଁ ୧୯୧୮ ମସିହାରୁ ୧୯୨୫ ମସିହା ପର୍ଯ୍ୟନ୍ତ ବ୍ରିଟିସ୍ ସରକାରଙ୍କ ପ୍ରତ୍ୟକ୍ଷ ପ୍ରତିନିଧିଙ୍କ ଦ୍ୱାର ଶାସନ ପରିଚାଳିତ ହେଲା । ( କୋର୍ଟ ଅଫ୍ ୱାର୍ଡ଼ସ୍ ) । ଏହି ସମୟରେ ତାଙ୍କର ଅଭିଭାବକ ଥିଲେ ବାରିଷ୍ଟର ଜାନକୀନାଥ ବୋଷ, ଶ୍ରୀ ପ୍ରଫୁଲ୍ଲ ସରକାର, ରାୟ ବାହାଦୁର ଶ୍ରୀ ରାଜ କିଶୋର ତ୍ରିପାଠୀ, କବିରାଜ ବାଳକୃଷ୍ଣ ନନ୍ଦ, ଶ୍ରୀ ବାସୁଦେବ ପଟ୍ଟନାୟକ ଓ ରାଜ କୁମାର କଲେଜର ପ୍ରିନ୍ସିପାଲ

ଶ୍ରୀ ଭି. ଏ.ଏସ୍. ଷ୍ଟୋ ( Stow ) ଏବଂ Mr. Smith Pears ଓ Sir Jadunath Sarkar । ଏହି ପ୍ରକାର ପରିଚାଳନାରେ ବ୍ରିଟିସ୍ ଶାସିତ ମୋଗଲବନ୍ଦୀ ଅଞ୍ଚଳରେ ଯେଉଁ ପ୍ରକାର ଆଇନ କାନୁନ୍ ଓ ନୀତି ନିୟମ ପ୍ରଚଳିତ ଥାଏ ଠିକ୍ ସେହି ପ୍ରକାରର ଆଇନ୍ କାନୁନ୍ ଓ ନୀତି ନିୟମ ଢ଼େଙ୍କାନାଳରେ ମଧ୍ୟ ପ୍ରଚଳିତ ହେଲା ।

ବ୍ରିଟିସ୍ ଶାସନର ରୀତି ନୀତିକୁ ଯଦି ପ୍ରଗତିଶୀଳ କୁହାଯାଏ ଏବଂ ତାହା ଯଦି ଉନ୍ନତି ଓ ସ୍ୱାଧୀନ ଶାସନର ପରିଚାୟକ ହୁଏ ତେବେ ମୋଗଲ ବନ୍ଦୀ ପରି ଢ଼େଙ୍କାନାଳ ୧୯୧୮ ମସିହାଠାରୁ ୧୯୨୫ ମସିହା ପର୍ଯ୍ୟନ୍ତ ଏହି ମାପକାଠିରେ ଅତିପ୍ରଗତିଶୀଳ ବା ଅତିଉନ୍ନତ ଥିଲା ।

ବ୍ରିଟିଶ ସରକାର ସେତେବେଳେ ସିଧାସଳଖ ମୋଗଲ ବନ୍ଦୀ ଅଞ୍ଚଳରେ ଶାସନ କରୁଥିଲେ ଅତି ନିର୍ମମଭାବରେ । ଶୋଷଣର ତିକ୍ତତା ଥିଲା ପ୍ରଖର । ପ୍ରତିବାଦ କରିବାର ସାହସ ନଥିଲା । ତେଣୁ ଜନ ଆନ୍ଦୋଳନ କିମ୍ବା ସ୍ୱାଧିନତା ଆନ୍ଦୋଳନ ମୋଗଲବନ୍ଦୀ ଅଞ୍ଚଳରେ ମୁଣ୍ଡଟେକିବାର ସୁଯୋଗ ନଥିଲା । ନିଷ୍ଠୁର ଭାବରେ ଦମନ କରୁଥିଲେ ବ୍ରିଟିଶ୍ ସରକାର ବା ସେମାନଙ୍କ ନିଯୁକ୍ତ ଏଜେଣ୍ଟମାନେ । ସେ ତୁଳନାରେ ଢେଙ୍କାନାଳ ଥିଲା ଅନେକାଂଶରେ ପ୍ରଗତିଶୀଳ । ସମଗ୍ର ଭାରତବର୍ଷର ଆର୍ଥିକ ପରିସ୍ଥିତି ସେତେବେଳେ ଅତ୍ୟନ୍ତ ଶୋଚନୀୟ ଥିଲା । ତାର ଏକମାତ୍ର କାରଣ ଥିଲା ଯେ ବ୍ରିଟିଶ କର୍ତ୍ତୃପକ୍ଷ ଅତି ନିର୍ଦ୍ଦୟ ଭାବରେ ରାଜା, ମହାରାଜା, ଜମିଦାର, ପ୍ରଜାଆଦି ସମସ୍ତଙ୍କଠାରୁ ପ୍ରଚୁର ଅର୍ଥ ଆଦାୟ କରୁଥିଲେ ନିଜର ବ୍ୟକ୍ତିଗତ ସ୍ୱାର୍ଥ ପାଇଁ । ସେହି ସଂଗୃହିତ ଅର୍ଥ ଲୋକମାନଙ୍କ ସୁବିଧାପାଇଁ ପ୍ରାୟତଃ ବିନିଯୋଗ ହେଉନଥିଲା । ମୋଗଲବନ୍ଦୀ ଅଞ୍ଚଳରେ କୌଣସି ସମସ୍ୟାର ବ୍ରିଟିଶ୍ ଶାସକମାନେ ସମାଧାନ କରୁନଥିଲେ ; ବରଂ ଲୋକମାନଙ୍କୁ ନିଷ୍ଠୁର ଭାବରେ ଶାସନ କରୁଥିଲେ । ମରୁଡ଼ି ବନ୍ୟା କିମ୍ବା କୌଣସି ଦୈବୀଦୁର୍ବିପାକ ଘଟିଲେ ମୋଗଲବନ୍ଦୀ ଅଞ୍ଚଳର ଲୋକମାନେ ପୋକମାଛିପରି ଅକାଳ ମୃତ୍ୟୁ ମୁଖରେ ପଡୁଥିଲେ । ପ୍ରଭୁତ କ୍ଷୟକ୍ଷତିର ସମ୍ମୁଖିନ ହେଉଥିଲେ । ଏହିଭଳି ଘଟଣା ମୋଗଲ ବନ୍ଦୀ ଅଞ୍ଚଳରେ ପ୍ରତ୍ୟେକ ମୁହୂର୍ତ୍ତରେ ଘଟୁଥିଲେ ମଧ୍ୟ କେହି ପ୍ରତିବାଦ ବା ପ୍ରକାଶ କରିବାକୁ ସାହସ କରୁନଥିଲେ । । ସାହାଯ୍ୟ ପାଇଁ ନିବେଦନ କଲେ ଫଳ ଭୟାଭୟ ହେଉଥିଲା । ମୋଗଲବନ୍ଦୀ ଅଂଚଳରେ ଲୋକମାନଙ୍କର ତତ୍କାଳିନ ଦୁଃଖ ଦୁର୍ଦ୍ଦଶା ମୋଚନ ପାଇଁ ଗଡ଼ଜାତ ଗୁଡ଼ିକର ରାଜାମହାରାଜା ଓ ଜମିଦାର ମାନେ ପ୍ରାୟ ସବୁବେଳେ ସବୁ ପ୍ରକାର

ସାହାଯ୍ୟ କରୁଥିଲେ । ଢେଙ୍କାନାଳର କୀର୍ତ୍ତିମାନ ରାଜା ଭଗୀରଥ ମହୀନ୍ଦ୍ର ବାହାଦୂର, ସୁରପ୍ରତାପ ମହୀନ୍ଦ୍ର ବାହାଦୂର ପ୍ରମୁଖ ଦୁର୍ଭିକ୍ଷ ବା ବହୁ ଦୁର୍ଦ୍ଦିନ ବେଳେ ଧାନ ଚାଉଳ ଠାରୁ ଆରମ୍ଭ କରି ଶିକ୍ଷାନୁଷ୍ଠାନ ଓ ସ୍ୱାସ୍ଥ୍ୟରକ୍ଷା ପାଇଁ ଠିକଣା ସମୟରେ ଯେଉଁସବୁ ଅକୁଣ୍ଠ ଅମାପ ସାହାଯ୍ୟ କରିଛନ୍ତି ତାହା ନିଶ୍ଚୟ ଇତିହାସରେ ବିଷୟବସ୍ତୁ ହୋଇଛି । ଓଡ଼ିଶା ବ୍ୟତୀତ ବାହାର ରାଜ୍ୟର ଦୁର୍ଦ୍ଦିନ ବେଳେ ଆମ ଢେଙ୍କାନାଳ ରାଜ ବଂଶର ସାହାଯ୍ୟ ପହଞ୍ଚିବା ଘଟଣା ଏକାନ୍ତ ଭାବରେ ଗର୍ବ ଓ ଗୌରବର ବିଷୟ । ୧୯୩୫ ମସିହାରେ ବେଲୁଚିସ୍ଥାନ ଭୂମିକମ୍ପ ଯୋଗୁଁ ସେଠାକାର ଲୋକମାନଙ୍କୁ ସାହାଯ୍ୟ ଦେବାପାଇଁ ଢେଙ୍କାନାଳର ଦରବାର ଶାସନ ଟ୧୦୦୦.୦୦ ଦାନ କରିଥିଲେ । ଏହା ଆଜିର ମୂଲ୍ୟାୟନରେ ପ୍ରାୟ ଟ୫୦,୦୦୦.୦୦ ର ପାଖାପାଖି ହୋଇପାରେ । ବେଲୁଚିସ୍ଥାନ ବର୍ତ୍ତମାନ ପାକିସ୍ଥାନ ଅନ୍ତର୍ଭୁକ୍ତ । ବିପଦବେଳେ ସାହାଯ୍ୟ କରିବାରେ ଢେଙ୍କାନାଳ ରାଜ ବଂଶ କେବେହେଲେ କାର୍ପଣ୍ୟ କରିନାହିଁ । ଢେଙ୍କାନାଳ ରାଜ ବଂଶର ଏହି ପ୍ରଶଂସନୀୟ କାର୍ଯ୍ୟକୁ ସକଳଶ୍ରେଣୀର ଲୋକ ଅତି ନିଷ୍କପଟ ଭାବରେ ସ୍ୱୀକାର କରିଛନ୍ତି । ପ୍ରଥମ ମହାଯୁଦ୍ଧ ସମୟରେ ଭାରତୀୟ ସେନାବାହିନୀଙ୍କ ପାଇଁ, କଟକର ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜକୁ, ରାଇପୁରର ରାଜକୁମାର କଲେଜ ଓ କଟକର ରେଭେନ୍ସା କଲେଜର କନିକା ଲାଇବ୍ରେରୀକୁ ମଧ୍ୟ ଅନୁଦାନ ଦିଆଯାଇଥିଲା । ବିନୋବାଭାବେଙ୍କର ଭୂଦାନ ଆନ୍ଦୋଳନ ପାଇଁ କାମାକ୍ଷାନଗର ରେ ୧୦୦୦ ଏକର ଜମି ଦିଆଯାଇଥିଲା । ତା'ଛଡ଼ା ବିଭିନ୍ନ ମନ୍ଦିର, ଅନୁଷ୍ଠାନ ଓ ସ୍ୱେଚ୍ଛାସେବୀ ସଂଗଠନକୁ ଅନୁଦାନ ଦିଆଯାଇଥିଲା । ସେହି ସାହାଯ୍ୟ ସଂପର୍କରେ ସେମାନଙ୍କର ଉତ୍ତର ଦାୟାଦ ହିସାବରେ ଆଜି ସ୍ମରଣ କଲେ ସେମାନେ କିପରି ଦାନଶୀଳ, ଦୟାଶୀଳ ଓ ପରୋପକାର ମନୋବୃତ୍ତିର ମହନୀୟ ରାଜପୁରୁଷ ଥିଲେ ତାହା ଜଣାପଡ଼େ ଓ ମନରେ ଗର୍ବ ସଂଚାର କରେ । ମୋଗଲବନ୍ଦୀ ଅଂଚଳର ବ୍ରିଟିସ୍ ଶାସନ କର୍ତ୍ତାମାନେ ଅନେକ ସମୟରେ ଗଡ଼ଜାତର ରାଜା ମହାରାଜା ଓ ଜମିଦାର ମାନଙ୍କୁ ଭୟ କରୁଥିଲେ । ଭୟକରୁଥିଲେ ଏଇଥିପାଇଁ ଯେ, କେତେବେଳେ ବ୍ରିଟିସ୍ ସରକାରଙ୍କ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ସେମାନଙ୍କ ନିଷ୍ଠୁର ଆଚରଣ ସଂପର୍କରେ ସୂଚନା ଦେଇପାରନ୍ତି ଓ ଦରକାର ପଡ଼ିଲେ ବିଚାର ମଧ୍ୟ ଲୋଡ଼ିପାରନ୍ତି । ଏହି ଭୟ ଯୋଗୁଁ କେତେବେଳେ କେମିତି ବିଟିଶ୍ ଶାସନ କର୍ତ୍ତାମାନେ ଲୋକ ମାନଙ୍କ ପାଇଁ ଅବଶ୍ୟ ଅଳ୍ପକିଛି କାମ କରୁଥିଲେ । କିନ୍ତୁ ମନ୍ଦ ଶାସନର ପ୍ରତୀକ ଭାବରେ ବ୍ରିଟିସ୍ ଶାସକ ମାନେ ପ୍ରତ୍ୟେକ କ୍ଷେତ୍ର ରେ ନିଜର ଶୋଷଣ

ମନୋବୃତ୍ତିକୁ ଜାହିର କରୁଥିଲେ । ଅନେକ ଗଡ଼ଜାତର ରାଜା, ମହାରାଜାଙ୍କ ଉଦାର ଗୁଣ ଯୋଗୁଁ, ଈଶ୍ୱର ବିଶ୍ୱାସ ଯୋଗୁଁ ଓ ସ୍ୱାଧୀନ ମନୋଭାବ ଯୋଗୁଁ ପରବର୍ତ୍ତି ସମୟରେ ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନ ପର୍ବ ଆରମ୍ଭ ହେଲା , ଗଡ଼ଜାତ ଗୁଡ଼ିକରୁ ବ୍ରିଟିସ୍ ଶାସକ ମାନଙ୍କର ଉତ୍କଟ ନିର୍ଯ୍ୟାତନା ଯୋଗୁଁ ମୋଗଲବନ୍ଦୀ ଅଞ୍ଚଳରେ ଆନ୍ଦୋଳନ ର ସୂତ୍ରପାତ ହୋଇ ପାରୁନଥିଲା । ତେଣୁ ସେ ଅଂଚଳର ପ୍ରଖ୍ୟାତ ଓ ବିଖ୍ୟାତ ବ୍ୟକ୍ତି ନିଜ ନେତୃତ୍ୱର ପରିଚୟ ଦେବାପାଇଁ କେତେକ ଆନ୍ଦୋଳନର କର୍ମଭୂଇଁ ଭାବରେ ଗଡ଼ଜାତ ଗୁଡ଼ିକୁ ବାଛିନେଲେ ।

ଢ଼େଙ୍କନାଳ କୋର୍ଟ ଅଫୱାର୍ଡ଼ସ୍ ଥିଲା ବେଳେ ୧୯୨୧ ମସିହାରେ ଜମିଜମାର ବନ୍ଦୋବସ୍ତ କରି ଖଜଣା ବଢ଼ାଇବାର ପ୍ରସ୍ତାବ ନେଲେ । ଏତିକି ବେଳେ ଅଧଲାଏ କିମ୍ବା ଏକ ପଇସା ଖଜଣା ବୃଦ୍ଧି କରାଗଲା । ଏହି ବର୍ଦ୍ଧିତ ଖଜଣା ଲୋକ ମାନଙ୍କ ମନରେ ଅସନ୍ତୋଷ ସୃଷ୍ଟି କରିଥିଲା । କେତେକ ମୁଖ୍ୟ ପ୍ରଜା ଖଜଣା ବୃଦ୍ଧି ନକରିବାକୁ ନିବେଦନ କରିଥିଲେ । କିନ୍ତୁ କୋର୍ଟ ଅଫ ୱାର୍ଡ଼ସ୍ ଶାସନରେ ବ୍ରିଟିସ୍ ସରକାରଙ୍କ କ୍ଷମତା କାଏମ୍ ରହିଥିବାରୁ ଖଜଣା ବୃଦ୍ଧି ରହିତ ହେଲା ନାହିଁ । ମୋଗଲବନ୍ଦୀ ଅଂଚଳର ନେତା ମାନଙ୍କର ବହୁ ଉସ୍କାଣ ଓ ଏହିଭଳି ଏକ ଏକ ଯୁକ୍ତି ସଂଗତ କାର୍ଯ୍ୟକ୍ରମକୁ ଅସ୍ୱୀକାର ଯୋଗୁଁ ଢ଼େଙ୍କାନାଳରେ ଗଣ୍ଡଗୋଳ ହେବାର ସୂତ୍ରପାତ ଆରମ୍ଭ ହେଲା ଏହି ସମୟ ଠାରୁ ।

ରାଜା ଶଙ୍କର ପ୍ରତାପ ଛୋଟକାଟର ଗଣ୍ଡଗୋଳ ପ୍ରତି ଆଦୌ ଗୁରୁତ୍ୱ ଦେଉନଥିଲେ । କାରଣ ସେ ନିଜେ ଥିଲେ ଅତ୍ୟନ୍ତ ସ୍ୱାଧୀନ ଚେତା ଏବଂ ପ୍ରଗତିଶୀଳ । ସେ ବ୍ରିଟିସ୍ କର୍ତ୍ତୃପକ୍ଷଙ୍କର ଅଯଥା ହସ୍ତକ୍ଷେପ, ବେଆଇନ କାର୍ଯ୍ୟକଳାପ, ମାତ୍ରାଧିକ କ୍ଷମତା ପ୍ରୟୋଗ ଆଦିକୁ ଚତୁରତାର ସହିତ ଏଡ଼େଇ ଯାଉଥିଲେ କିମ୍ବା ନିର୍ଭୟରେ ମୁକାବିଲା କରୁଥିଲେ । ନିଜର ଜ୍ଞାନ ବଳରେ ଓ ବଳିଷ୍ଠ ଯୁକ୍ତି ପ୍ରକ୍ରିୟାରେ ସେମାନଙ୍କୁ ଅପଦସ୍ତ କରିବାର ଅଦ୍ଭୁତ ଶକ୍ତି ତାଙ୍କୁ ବଳିୟାନ୍ କରିଥିଲା । ସେ ଅତ୍ୟନ୍ତ ସ୍ୱାଧୀନ ମତବାଦୀ ଥିଲେ ଏବଂ କୌଣସି ଅପଶକ୍ତିର ଅଧୀନତା କେତେବେଳେ ହେଲେ ସ୍ୱୀକାର କରୁନଥିଲେ । ଉଗ୍ର ସ୍ୱଦେଶ ଚିନ୍ତାର ସେ ଥିଲେ ଜଣେ ଶ୍ରେଷ୍ଠ ନାୟକ । ତାଙ୍କର ଏହି ସ୍ୱଭାବ ଚରିତ୍ରକୁ କେବଳ ସେ ନିଜ ଚିନ୍ତା ଓ କର୍ମରେ ସୀମାବଦ୍ଧ କରି ରଖୁଥିଲେ । ବାହାରକୁ ପ୍ରକାଶ କରୁନଥିଲେ । ଆତ୍ମପ୍ରଚାରକୁ ସେ ଘୃଣା କରୁଥିଲେ । କେବଳ ଏହି କାରଣ ଯୋଗୁଁ ସେ ଜନସାଧାରଣଙ୍କ ନିକଟରେ ଅପ୍ରକାଶ୍ୟ ହୋଇ ରହୁଥିଲେ ଏବଂ

ତାଙ୍କର ପ୍ରତିଭାପୂର୍ଣ୍ଣ ବ୍ୟକ୍ତିତ୍ୱ ଚିରଦିନ ପାଇଁ ଲୋକଲୋଚନର ଅନ୍ତରାଳରେ ରହିଗଲା । ଏହି ସଂପର୍କରେ ଏକ ଉଲ୍ଲେଖ ଯୋଗ୍ୟ ସତ୍ୟଘଟଣା ଉପସ୍ଥାପିତ କରାଯାଉଛି , ତାଙ୍କର ସ୍ୱଦେଶ ପ୍ରିତୀ, ପ୍ରଗତିଶୀଳତା ଓ ଜ୍ଞାନର ପରିଚୟ ଦେବାପାଇଁ ।

ବର୍ଷମାସ ମନେ ପଡୁନାହିଁ । କିନ୍ତୁ ବ୍ରିଟିସ୍ ଅମଳର ଚରମ ପର୍ଯ୍ୟାୟ ବେଳ । କଟକ ରେଳ ଷ୍ଟେସନରୁ କଲିକତା ଯିବାପାଇଁ ଆମ୍ଭ ମାନଙ୍କର ଜିନ୍ଷ ପତ୍ର ଆମ ପାଇଁ ନିର୍ଦ୍ଦିଷ୍ଟ ବଗିକୁ ଉଠାଯାଉଥାଏ । ସେତେବେଳ ସେହି ବଗିରେ ଜଣେ ଆଙ୍ଗେ୍ଲା ଇଣ୍ଡିଆନ୍ ବ୍ୟକ୍ତି ବେପରୁଆ ଭାବରେ ବସି ଖଣ୍ଡିଏ ବହି ପଢୁଥାନ୍ତି । ରାଜା ସାହେବ ଓ ମୁଁ ତଳେ ଠିଆ ହୋଇଥାଉ । ଏହି ସମୟରେ ଆମ ଜିନିଷ ପତ୍ର ଉଠାଉଥିବା ଲୋକଜଣକୁ ସେହି ଆଙ୍ଗ୍ଲୋ ଇଣ୍ଡିଆନ୍ ବ୍ୟକ୍ତି ହଠାତ୍ ଅଶ୍ରାବ୍ୟ ଭାଷାରେ ଗର୍ଜନ ତର୍ଜନ କରି ଅକଥନୀୟ ଗାଳିଗୁଲଜ୍ କଲେ । ଇଙ୍ଗଲିସ୍ ଗାଳି । ଗୋରା ଲୋକଟି ରାଗରେ ପଞ୍ଚମ । ଏକ୍‌ଦମ୍ ଲାଲ୍ ପଡ଼ିଯାଇଥାନ୍ତି । ଆମ୍ଭମାନେ କିଛି ବୁଝିପାରୁ ନଥାଉ । କିନ୍ତୁ ରାଜା ସାହେବ ନ ଜାଣିଲା ପରି ନଶୁଣିଲା ପରି ସବୁ ଦେଖୁଥାନ୍ତି ଓ ଶୁଣୁଥାଆନ୍ତି । କୌଣସି ପ୍ରତିକ୍ରିୟା ପ୍ରକାଶ କରୁନଥାନ୍ତି । କେବଳ ମୋତେ ଶୁଣାଇଲାପରି କହିଲେ, ‘ ଏହି ବ୍ୟକ୍ତି ଜଣକ ନିଶ୍ଚୟ ଟିକେଟ୍ ନକରି ବଗିରେ ବସିଛନ୍ତି । ଦେଖାଯାଉ’ ଆମ ଲୋକଟିର ସେତେବେଳକୁ ଜୀବନ ନାହିଁ । ଖୁବ୍ ଭୟକରି ଯାଇଛି, ଗୋରା ବ୍ୟକ୍ତିଙ୍କ ଠାରୁ ଗାଳି ମନ୍ଦ ଶୁଣି ଓ ତାର ରାଗ ଦେଖି । ଗୋରା ଲୋକ ମାନଙ୍କର ସେତେ ବେଳକୁ ଅଖଣ୍ଡ ପ୍ରତାପ । କଳାଲୋକଗୁଡିକ ସେମାନଙ୍କ ଆଖିକୁ ଦେଖାଯାଆନ୍ତି ନାହିଁ । ସେମାନେ ଯେପରି ସଂପୂର୍ଣ୍ଣ ଘୃଣ୍ୟ । ତାଙ୍କ ପାଇଁ ଆଇନ୍ କାନୁନ୍ ନାହିଁ ବୋଲି ସେମାନେ ଭାବନ୍ତି । ରାଜା ସାହେବ ନଜାଣିଲା ପରି ପଚାରିଲେ, ‘ କ’ଣ ହେଲା ? ସେ ଏପରି ଗାଳି ଗୁଲଜ କାହିଁକି କରୁଛି ? କିଛି ବୁଝୁଛ ଏହି ଗାଳିରୁ ? ’ ଆମ ଲୋକଟି ସେହିପରି ଡ଼ରି ଡ଼ରି କହିଲା, ‘‘ ବାକ୍ସଟି ଉଠାଉ ଉଠାଉ ବାକ୍ସଟିର କୋଣ ଅଂଶ ତାଙ୍କ ଗୋଡ଼ରେ ଛୁଇଁଲା ପରି ବାଜିଯାଇଛି । ’’, ‘ହେଉ, ତମେ ଏତେ ଡ଼ରୁଛ କାହିଁକି’, କହିଲେ ରାଜା ସାହେବ । ସେତେବେଳେ ରାଜା ମହାରାଜା ମାନେ କେତେକ ସୁବିଧା ସୁଯୋଗ ସାର୍ବଭୌମ ଶାସନ ଦାୟିତ୍ୱ ଯୋଗୁଁ ଉପଭୋଗ କରୁଥିଲେ । ସେହି ଅନୁସାରେ ସେ ବଗି ଉପରକୁ ନଯିବା ପର୍ଯ୍ୟନ୍ତ ଟ୍ରେନ୍ ଛାଡ଼ିପାରିବ ନାହିଁ ଓ ତାଙ୍କ ବଗିରେ ତାଙ୍କ ଅନୁମୋଦିତ ବ୍ୟକ୍ତି ଛଡ଼ା ଅନ୍ୟକେହି ଯାଇପାରିବେ ନାହିଁ ଇତ୍ୟାଦି । ରାଜାସାହେବ ସେହିପରି ତଳେ ଛିଡ଼ାହୋଇଥାନ୍ତି । ଟ୍ରେନ ଛାଡ଼ିବା ସମୟ ଅତିକ୍ରାନ୍ତ

କରିଗଲାଣି କିନ୍ତୁ ଗାର୍ଡ୍‌ସାହେବ ହୁଇସିଲ ବଜାଇ ପାରୁ ନାହାଁନ୍ତି । ପତାକା ଦେଖାଇ ପାରୁନାହାଁନ୍ତି ଗାଡ଼ି ଛାଡ଼ିବା ପାଇଁ । ଢେଙ୍କାନାଳ ରାଜାସାହେବଙ୍କୁ ନନେଇ ଟ୍ରେନ୍ ଛାଡ଼ିବ କିପରି ? ଗାର୍ଡ୍ ସାହେବଙ୍କର ମଧ୍ୟ ଶକ୍ତି ନାହିଁ, ରାଜାସାହେବଙ୍କୁ ଟ୍ରେନ୍‌ରେ ଉଠିବାପାଇଁ କହିବାକୁ , କାରଣ ଗାର୍ଡ୍ ସାହେବଙ୍କର କହିବାଟା କାଳେ ରାଜା ସାହେବଙ୍କ ପ୍ରତି ଆଦେଶ ବୋଲି ପରିଗଣିତ ହୋଇ ଉଠିବ । ସେତେବେଳେ ସମସ୍ତେ ସମସ୍ତଙ୍କର କ୍ଷମତା ପରିସର ପ୍ରତି ସଚେତନ ଥିଲେ । ସାମାନ୍ୟ ବ୍ୟତିକ୍ରମ ଭୀଷଣ ଆକାର ଧାରଣ କରିବାର ସମ୍ଭାବନା ଥିଲା । ଅନ୍ୟ ଉପାୟ ନପାଇ ଗାର୍ଡ୍ ସାହେବ ବଡ଼ ସନ୍ତର୍ପଣରେ ଅତ୍ୟନ୍ତ ବିନୟାବନତ ହୋଇ ରାଜା ସାହେବଙ୍କ ନିକଟରେ ପହଞ୍ଚିଲେ କେବଳ କହିବାପାଇଁ- ରାଜା ସାହେବ ଟ୍ରେନ୍ ଉପରକୁ ଗଲେ ଟ୍ରେନ୍ ଛାଡ଼ିବ । ଏହାହିଁ ଚାହୁଁଥିଲେ ରାଜା ସାହେବ । ' ପଚାରିଲେ, ଆମର ଏହି ନିର୍ଦ୍ଦିଷ୍ଟ ବଗିରେ ଆପଣ କେଉଁ ଆଇନ ବଳରେ ଟିକେଟ୍‌ଧାରୀ ଏହି ମହନୀୟ ଲୋକଙ୍କୁ ବସାଇଛନ୍ତି ? ଗାର୍ଡ୍ ସାହେବର ସେତେବେଳେ ବଡ଼ ଅସହାୟ ଅବସ୍ଥା । ଗୋରା ବ୍ୟକ୍ତିଙ୍କୁ ସେ'ବା କିପରି କହିବେ ଅନ୍ୟ ବଗିକୁ ଯିବାପାଇଁ ? ଏହି ଦାରୁଣ ଅବସ୍ଥାକୁ ସୁଧାରି ନେବାପାଇଁ ନିଜେ ରାଜାସାହେବ ଗୋରାବ୍ୟକ୍ତିଙ୍କୁ ନିର୍ଦ୍ଦେଶ କରି କହିଲେ, ' ଟିକେଟ୍ ଖଣ୍ଡିଏ ଗାର୍ଡ୍ ସାହେବଙ୍କୁ ଦେଖାଇଦେଲେ ନିର୍ଦ୍ଦିଷ୍ଟ ସ୍ଥାନରେ ସେ ବସେଇଦେବେ' । ଚିରାଚରିତ ସେ ଗୋରା ବ୍ୟକ୍ତି ଜଣକ ତୁମ୍ବି ତୋଫାନ ଆରମ୍ଭ କଲାବେଳକୁ ,' ଟିକେଟ ନ କରିଥିବା ତମ ପରି ଲୋକଟି ଅବାଞ୍ଛିତ ନା ଯେଉଁ ଲୋକଟି ତାର ପିତୃମାତୃ ପରିଚୟ ନେଇ ଏହି ମାଟିରେ ଜନ୍ମ ସେ ଅବାଞ୍ଛିତ ? ତମପରି ବ୍ୟକ୍ତିର ସ୍ଥିତି ନଥିବାବେଳେ ଏଇ ଜନ୍ମମାଟିରୁ ପିତୃମାତୃ ପରିଚୟର ଗର୍ବ ଓ ଗୌରବ ବହନ କରୁଥିବା ଜଣେ କୁଳଶୀଳ ଭାରତୀୟ ପ୍ରତି ତାଚ୍ଛଲ୍ୟ ପ୍ରକାଶ କରିବା ଓ ଗାଳିଗୁଲଜ କରିବା କିପରି ନ୍ୟାୟସଙ୍ଗତ ?' ସେ ବ୍ୟକ୍ତି ଜଣକ ସେତେବେଳେ ଅସହାୟ । ସେହି ଲୋକଟିକୁ ଏହି ଗୋରାବ୍ୟକ୍ତି କ୍ଷମାପ୍ରାର୍ଥନା ନକଲେ ଢେଙ୍କାନାଳ ରାଜା ଆଜି ଏ ଗାଡ଼ି ଛାଡ଼ିଦେବେ ନାହିଁ । ବାଧ୍ୟ ହେଲେ ସେହି ଗୋରାବ୍ୟକ୍ତି ଆଣ୍ଠୁମାଡ଼ି ଆମ ଲୋକଠାରୁ କ୍ଷମାମାଗିବା ପାଇଁ । ଗାଡ଼ି ଛାଡ଼ିଲା । ତାପରେ ଷ୍ଟେସନରେ ସେହି ଗୋରା ବ୍ୟକ୍ତିଙ୍କୁ ନିଜ ବଗିକୁ ଡ଼କାଇ ରାଜା ସାହେବ ସେମାନଙ୍କ ଭବିଷ୍ୟତ ସମ୍ପର୍କରେ ଅନେକ ବାସ୍ତବ ସତ୍ୟକଥା ପ୍ରକାଶ କରିଥିଲେ । ସ୍ୱାଧୀନତା ପ୍ରାପ୍ତିପରେ ସେ ଯାହା କହିଥିଲେ ତାହାହିଁ ସତ୍ୟ ହେଲା । ବ୍ରିଟିଶମାନଙ୍କ ସହିତ ଆଙ୍ଗ୍ଲୋ ଇଣ୍ଡିଆନ୍‌ମାନେ ଭାରତରୁ ଅନେକ ଅବଶ୍ୟ

ଚାଲିଗଲେ । ଯେଉଁ ଅଳ୍ପ କେତେକ ରହିଲେ ସେମାନେ ଏହି ଦେଶର ଜାତୀୟତାକୁ ଗ୍ରହଣ କରି ନାଗରିକ ହିସାବରେ ବାସ କଲେ । କିନ୍ତୁ ଯୋଗକୁ ଦୁର୍ଦ୍ଦିନ ମଧ୍ୟରେ ସେଦିନର ଅହଂଭାବ ସେମାନଙ୍କର ଅବଶ୍ୟ ଆଜି ନାହିଁ । ତେବେ ଦାରିଦ୍ର୍ୟର ସମ୍ମୁଖୀନ ନିଶ୍ଚୟ ହୋଇଛନ୍ତି । କୁଲିବୃତ୍ତି କରୁଥିବା ଲୋକଟିର ଆତ୍ମ ସମ୍ମାନ ଅଛି , ଏହି କଥା ଅନ୍ୟ କେହି ଅସ୍ୱୀକାର କରିପାରେ କିନ୍ତୁ ଢେଙ୍କାନାଳ ରାଜାସାହେବ ଶଙ୍କରପ୍ରତାପ ନିରଙ୍କୁଶ ଶାସନ କ୍ଷମତାରେ ଥାଇ ମଧ କେବେହେଲେ ଅସ୍ୱୀକାର କରିନାହାଁନ୍ତି । ନିଜ ଆଗରେ ନିଜ ଦେଶ ମାଟିର ଜଣେ ସ୍ୱାଧୀନ ଲୋକକୁ ଅଜାତୀୟ ଇତର ଶ୍ରେଣୀ ଲୋକ ଗାଳିଗୁଲଜ କରିଚାଲିଯିବ ତାହା ସହ୍ୟ କରିପାରି ନାହାଁନ୍ତି । ଗର୍ବ ଓ ଅହଂକାରରେ ଫାଟି ପଡୁଥିବା ଗୋରା ବ୍ୟକ୍ତିଟି କୁଲିବୃତ୍ତି କରୁଥିବା ଜଣେ କଳାଲୋକଠାରୁ କ୍ଷମା ମାଗିବା ଷ୍ଟେସନର ଖୋଲା ପ୍ଲାଟ ଫର୍ମରେ ଜାତୀୟତାର ସ୍ପଷ୍ଟ ନିଦର୍ଶନ । ଅନେକ ଏହାକୁ ଏକ ସାମାନ୍ୟ ଘଟଣା ବୋଲି ଏଡ଼ାଇଦେଇ ନିଜର ସୁବିଧା କରି ଟ୍ରେନ୍‌ରେ ଚାଲିଯାଇ ଥାନ୍ତେ । କିନ୍ତୁ ଦେଶର ଲୋକମାନଙ୍କ ପ୍ରତି ଓ ନିଜର ଜାତୀୟତା ପ୍ରତି ଏହା ଏକ ଅକ୍ଷମଣୀୟ ଅବିଚାର ବୋଲି ହୃଦୟଙ୍ଗମ କରି ରାଜା ଶଙ୍କର ପ୍ରତାପ ସାହାସର ସହିତ ଟ୍ରେନ୍ ଛାଡ଼ିବ ନାହିଁ ବୋଲି କହିପାରିଥିଲେ । ବ୍ରିଟିଶ୍ ମହଲରେ ତାଙ୍କର ଅଖଣ୍ଡ ପ୍ରଭାବଥିଲା ବୋଲି ସମସ୍ତେ ଜାଣନ୍ତି ।

ଅଳ୍ପ ବୟସରେ ୧୯୨୫ ମସିହାରେ ଶାସନ ଦାୟିତ୍ୱ ଗ୍ରହଣ କରିବା ପରେ ଧୀରେ ଧୀରେ ସେ ରାଜ କାର୍ଯ୍ୟରେ ପ୍ରବେଶ କଲେ । ୧୯୧୮ ଠାରୁ ୧୯୨୫ ପର୍ଯ୍ୟନ୍ତ କୋର୍ଟ ଅଫ ଓ୍ୱାର୍ଡ଼ସ୍ ଶାସନରେ କୌଣସି ବ୍ୟତିକ୍ରମ ଥିବାର ସେ ଜାଣିଥିଲେ ମଧ ତାଙ୍କର ବିଶେଷ କିଛି କରିବାର ଉପାୟ ନଥିଲା । କିନ୍ତୁ ଖଜଣା ବୃଦ୍ଧିରୁ ଜନଅସନ୍ତୋଷ ଦେଖା ଦେଇଥିଲା । ତାହାର ସମାଧାନ ପାଇଁ ସର୍ବରାକାର ଓ ବିଭିନ୍ନ ମୁଖ୍ୟଲୋକଙ୍କ ସହିତ ଆଲୋଚନା କରି ବର୍ଦ୍ଧିତ ଖଜଣାର ପ୍ରାସଙ୍ଗିକତା, ଉପାଦେୟତା ଓ ଯଥାର୍ଥତା ସମ୍ପର୍କରେ ବୁଝିଥିଲେ । ଢେଙ୍କାନାଳରେ ଖଜଣା ବ୍ରିଟିସ୍ ସରକାର କୋର୍ଟ ଅଫ ଓ୍ୱାର୍ଡ଼ସ ସମୟରେ ବର୍ଦ୍ଧିତ କରିଥିଲେ ମଧ ଅନ୍ୟାନ୍ୟ ଅଞ୍ଚଳ ତୁଳନାରେ ସବୁଠାରୁ କମ୍‌ଥିଲା ତାହା ଅବଶ୍ୟ ଗ୍ରହଣ କଲାପରେ ପ୍ରଜାମାନଙ୍କ ମନରେ ସେପରି କିଛି ତିକ୍ତ ପ୍ରତିକ୍ରିୟା ସୃଷ୍ଟି ହୋଇନଥିଲା । ସମସ୍ତେ ଉଦାର ଭାବରେ ଏହି ପ୍ରସ୍ତାବ ଗ୍ରହଣ କରିଥିଲେ । କିନ୍ତୁ କେତେଜଣ ମାତ୍ର ସ୍ୱାର୍ଥପର ପ୍ରତିକ୍ରିୟାଶୀଳ ଲୋକ ଦରବାର ଶାସନର ଜଙ୍ଗଲ ନୀତି ଆଦି କେତେକ ସାର୍ବଜନୀନ କଟକଣା ଯୋଗୁଁ ଭିତରେ ଭିତରେ ବିରୁଦ୍ଧ ମତବାଦ ସୃଷ୍ଟି

କରିବାପାଇଁ ଲୋକମାନଙ୍କୁ ଉସୁକାଉଥିଲେ । ଏହି ଉସୁକାଣ କାନରେ ପଡୁଥିଲେ ମଧ ରାଜା ଶଙ୍କର ପ୍ରତାପ ତାଙ୍କର ପ୍ରଭୂତ ଉଦାର ଗୁଣ ଯୋଗୁଁ ଏହା ପ୍ରତି କର୍ଣ୍ଣପାତ କରିନଥିଲେ । ମଙ୍ଗଳଜନକ କାର୍ଯ୍ୟ କରାଗଲେ ଏହା ସେପରି ଭୟାବହ ହେବନାହିଁ ବୋଲି ସେ ସର୍ବଦା ଭାବୁଥିଲେ । ତେଣୁ ଶାସନ ପରିଚାଳନା ଅନ୍ତର୍ଭୁକ୍ତ ପ୍ରତ୍ୟେକ ବିଷୟରେ ଦକ୍ଷତା ପ୍ରତିପାଦନ କରିବାକୁ ଓ ଏହାକୁ ଶୃଙ୍ଖଳିତ କରି ପ୍ରତ୍ୟେକ ବିଭାଗକୁ ଉପଯୁକ୍ତ ଭାବରେ ପୁନଃଗଠନ କରିବାକୁ ଲାଗିଲେ । ଉଦ୍ଦେଶ୍ୟ ରହିଲା ନିଜର କ୍ଷମତା ଭିତରେ ସେ ଏକ ନିପୁଣ ଶାସନ ପ୍ରବର୍ତ୍ତନ କରିବେ ଯାହା ଫଳରେ ଢେଙ୍କାନାଳ ପ୍ରତ୍ୟେକ କ୍ଷେତ୍ରରେ ଶ୍ରେଷ୍ଠତା ହାସଲ କରିପାରିବ । ସେ କିନ୍ତୁ ସବୁବେଳେ ନୀରବ କର୍ମୀ ଥିବାରୁ ତାଙ୍କର ଚିନ୍ତାଧାରା ମଧ୍ୟକୁ କେହି ପ୍ରବେଶ କରିପାରି ନଥିଲେ । କେବଳ ମାତ୍ର ଏହି କାରଣ ଯୋଗୁଁ ମୁଷ୍ଟିମେୟ ସ୍ୱାର୍ଥାନ୍ଧ ଲୋକ ରାଜା ଶଙ୍କରପ୍ରତାପଙ୍କ ଭିତରେ ଥିବା ଉତ୍ତମ ବୁଝାମଣାକୁ ସମୟ ସୁଯୋଗ ନେଇ ବିଷାକ୍ତ କରୁଥିଲେ ।

ଜଙ୍ଗଲ କିପରି ସୁରକ୍ଷିତ ହେବ, ବାଧ୍ୟତାମୂଳକ ଭାବେ କିପରି ପ୍ରାଥମିକ ପାଠ ଶେଷ କରାଯିବ, ଉଚ୍ଚଶିକ୍ଷାପାଇଁ କିପରି ପିଲା ଓ ଅଭିଭାବକମାନେ ଉଦ୍ୟମ କରିବେ, ପ୍ରୌଢ଼ଶିକ୍ଷା କିପରି କାର୍ଯ୍ୟକାରୀ କରାଯିବ, କଳା, ସଂସ୍କୃତି ଓ ପରିବେଶ କିପରି ସୁରକ୍ଷିତ ହେବ, ଖେଳ ଓ ସ୍କାଉଟିଂ ଆଦିରେ କିପରି କୃତିତ୍ୱ ଅର୍ଜନ କରାଯିବ, ଚାଷଆଦି ବିଭିନ୍ନ ବୃତ୍ତିରେ କିପରି ସଫଳତା ମିଳିବ, ଲୋକମାନେ କିପରି ଆତ୍ମନିର୍ଭରଶୀଳ ହୋଇ ସୁଖ ଶାନ୍ତିରେ ଜୀବନଯାପନ କରିବେ ଏହିପରି ଅନେକ ଉଚ୍ଚକୋଟୀର କାର୍ଯ୍ୟ ପର୍ଯ୍ୟାୟ କ୍ରମରେ କରିବା ନିମନ୍ତେ ସେ ଧୀରେ ଧୀରେ ଉଦ୍ୟମ କରିଥିଲେ । ଏହିସବୁ କାର୍ଯ୍ୟ କରିବା ନିମନ୍ତେ ପ୍ରଚୁର ଅର୍ଥ ନିଶ୍ଚିନ୍ତ ଆବଶ୍ୟକ । କିନ୍ତୁ ସେତେବେଳେ ଅନୁମୋଦିତ ହାରରେ ଖଜଣା ଓ ପ୍ରଚଳିତ କର ବ୍ୟତୀତ ରାଜ୍ୟର ଅନ୍ୟ କୌଣସି ସୂତ୍ରରୁ ଆୟର ପନ୍ଥା ନଥିଲା । ଏହି ଖଜଣା ବା ପ୍ରଚଳିତ କର ମଧ୍ୟ ଖୁବ୍ କମ୍ ଥିଲା । ଆଦାୟ ଅର୍ଥରୁ କିଛି ଅଂଶ ବ୍ରିଟିଶ୍ ସରକାର ତାଙ୍କର ପେଶକସ୍ ବାବଦକୁ ପ୍ରତିବର୍ଷ ନେଇଯାଉଥିଲେ । ଉନ୍ନୟନ ମୂଳକ କାର୍ଯ୍ୟକରିବା ପାଇଁ କୌଣସି ଅନୁଦାନ ସେମାନେ ଦେଉ ନଥିଲେ ; ବରଂ ଅନେକ ସମୟରେ ପେଶକସ୍ ବ୍ୟତୀତ ଅନେକ ଅନୁଚ୍ଚାରିତ କାରଣ ଦର୍ଶାଇ ଅଥବା ବହୁ ମୂଲ୍ୟର ଜିନିଷ ଆଦାୟ ପାଇଁ କଠୋର ଚାପ ପକାଉଥିଲେ । ଏଥି ସହିତ ପ୍ରଶାସନିକ ଖର୍ଚ୍ଚ ଥିଲା । ତା ସତ୍ତ୍ୱେ ଢେଙ୍କାନାଳରେ ଅନେକ ଲୋକହିତକର କାର୍ଯ୍ୟ କରାଯାଇଥିଲା । ପ୍ରାୟତଃ ଦୁଇ ତିନୋଟି ନିକଟବର୍ତ୍ତୀ ଗ୍ରାମର

ମଧ୍ୟସ୍ଥଳରେ ପ୍ରାଥମିକ ବିଦ୍ୟାଳୟ ଓ ଉଚ୍ଚପ୍ରାଥମିକ ବିଦ୍ୟାଳୟ ମାନ ପ୍ରତିଷ୍ଠା କରାଯାଉଥିଲା । ଏହିଭଳି କାର୍ଯ୍ୟକ୍ରମ ଗୁଡ଼ିକରେ ଜନସାଧାରଣଙ୍କ ଜାତୀୟ କାର୍ଯ୍ୟ ବୋଲି ସଂପୃକ୍ତ କରାଯାଉଥିଲା । ଶିକ୍ଷକମାନେ ଜାତୀୟ କାର୍ଯ୍ୟ କରୁଛନ୍ତି ବୋଲି ବିବେଚିତ ହେଉଥିଲା । ଉପଯୁକ୍ତ ବିଚାରାଧୀନତା ଯୋଗୁଁ ସେମାନେ ଜନସାଧାରଣଙ୍କ ମଧ୍ୟରେ ଉତ୍ତମ ସଂପର୍କ ରକ୍ଷା କରିପାରୁଥିଲେ । ଗ୍ରାମବାସୀ ଓ ଶିକ୍ଷକ ଉଭୟେ ଉଭୟଙ୍କ ପରିପୂରକ ଭାବରେ ସର୍ବଦା କାର୍ଯ୍ୟକରୁଥିଲେ । ଗ୍ରାମ୍ୟ କର୍ମଚାରୀ ଭାବରେ ସ୍ୱୀକୃତ ଏବଂ ସମ୍ମାନୀତ ସର୍ବରାକାର ଗ୍ରାମ୍ୟ ଶିକ୍ଷକ, ଚୌକିଦାର ପ୍ରମୁଖ ଛାତ୍ର ଛାତ୍ରୀ ମାନଙ୍କର ନିୟମିତ ଉପସ୍ଥାନ, ବିଦ୍ୟାଳୟର ଚାରି ଦିଗରେ ବାଡ଼ପକା, ବଗିଚା କାର୍ଯ୍ୟ ଆଦି ତଦାରଖ କରୁଥିଲେ । ବିଦ୍ୟାଳୟ କମିଟି ଓ ଗ୍ରାମ୍ୟ କମିଟି ( ପଞ୍ଚାୟତ ) ବିଭିନ୍ନ କାର୍ଯ୍ୟ ସଂପାଦନ କରୁଥିଲେ ଓ ତଦାରଖ ମଧ୍ୟ କରୁଥିଲେ । ଆବଶ୍ୟକ ସମୟରେ ସଂପୃକ୍ତ ଗ୍ରାମବାସୀମାନେ ସାହାଯ୍ୟ ସହଯୋଗ କରି ଶିକ୍ଷକ ଓ ଛାତ୍ର ଛାତ୍ରୀ ମାନଙ୍କ ଦ୍ୱାରା ନହୋଇପାରୁଥିବା କାର୍ଯ୍ୟମାନ ଆପଣାର ଭାବି କରିଦେଉଥିଲେ । । ଏଥିରେ ଅର୍ଥର ଆବଶ୍ୟକତା ଉପଲବ୍ଧି କରାଯାଉନଥିଲା । ଅର୍ଥ ଦରକାର କରୁଥିବା କାର୍ଯ୍ୟମାନ ଗ୍ରାମବାସୀଙ୍କର ସମବେତ ଚେଷ୍ଟାଫଳରେ ସମାହିତ ହେଉଥିଲା ।

ସେହିପରି ପ୍ରାକୃତିକ ପରିବେଶ ମଧ୍ୟରେ ଜଙ୍ଗଲ ସଂପଦ ରକ୍ଷା କରିବାପାଇଁ ଏବଂ ଏହାର ଉତ୍ତରୋତ୍ତର ଅଭିବୃଦ୍ଧି ସକାଶେ ସେ ସର୍ବଦା ଉଦ୍ୟମ କରୁଥିଲେ । ସାମାନ୍ୟ ଜଙ୍ଗଲ କରକୁ ଛାଡ଼ି ଦେଲେ ନାମକୁ ମାତ୍ର ଶେସ୍ କିମ୍ବା ଜଙ୍ଗଲ କର ଦେଇ ଘର ପାଇଁ କାଠ ବାଉଁଶ, ଚାଷୋପକରଣ ଓ ଅନ୍ୟାନ୍ୟ ଚଳଣୀୟ ଜଙ୍ଗଲଜାତ ଦ୍ରବ୍ୟ ପ୍ରଜାମାନେ ନେଉଥିଲେ । ଏହାବ୍ୟତୀତ ପ୍ରଜା ଯଦି କେତେବେଳେ ନିଜର ପ୍ରୟୋଜନ ପାଇଁ ବଡ଼ ବଡ଼ ଗଛ କାଟିବା ପାଇଁ ଆବେଦନ କରୁଥିଲେ , ତେବେ ସେଥିପାଇଁ ନିୟମ ଥିଲାଯେ ଜଙ୍ଗଲରେ ଗୋଟିଏ ଗଛ କାଟିଲେ ଅନ୍ୟୁନ ତିନିଟି ଗଛ ଲଗାଇ ବର୍ଷକ ପର୍ଯ୍ୟନ୍ତ ଯତ୍ନ କରି ବଞ୍ଚାଇବାକୁ ହେବ । ଏହାର ଉପାଦେୟତା ଲୋକମାନେ ଉପଲବ୍ଧିକରି ଏହାକୁ ଗ୍ରହଣ କରିନେଇଥିଲେ । ଏହାଦ୍ୱାରା ଜଙ୍ଗଲ ନଷ୍ଟ ହେଉନଥିଲା ; ବରଂ ତା'ର ଅଭିବୃଦ୍ଧି ଘଟୁଥିଲା । ଜଙ୍ଗଲ ସଂପଦ ଏପରି ଯତ୍ନ ର ସହିତ ରଖାଯାଇଥିଲା, ଯାହା ଫଳରେ ଯେକେହି ଲୋକ ଅନାୟାସରେ ଜଙ୍ଗଲଜାତ ଦ୍ରବ୍ୟରୁ ଅନ୍ୟୁନ ୪/୫ ମାସ ସୁରୁଖୁରୁରେ ଚଳିଯାଇ ପାରୁଥିଲେ । କାଠ ବ୍ୟତୀତ କେନ୍ଦୁ, କୋଳି, ବେଲ ଆଦି ବିଭିନ୍ନ ଫଳ, ମହୁଲ କରଞ୍ଜ ଆଦି ଫୁଲ କନ୍ଦ ଜାତୀୟ ବିଭିନ୍ନ

ମୂଳ, ମହୁ, ଝୁଣା, କାଙ୍କଡ଼, ମଟକା କଲରା ଜାତୀୟ ପରିବା , ଝୁମୁଡି , ନୋଟଣୀ ଆଦି ଶାକ ଜାତୀୟ ଫସଲ ପ୍ରଚୁର ସଂଗ୍ରହ କରାଯାଉଥିଲା । ରାଜାଙ୍କର ପ୍ରଶାସନିକ ଦକ୍ଷତା ଏବଂ ଅନ୍ୟର ଭବିଷ୍ୟତ ପାଇଁ ଯେପରି ଦୂରଦୃଷ୍ଟି ଥିଲା ଜଙ୍ଗଲ ସୁରକ୍ଷା କାର୍ଯ୍ୟକ୍ରମରେ ସେହିପରି ନିପୁଣତା ପ୍ରକାଶ ପାଉଥିଲା । ଜଙ୍ଗଲ ନିକଟବର୍ତ୍ତୀ ଗ୍ରାମବାସୀ ମାନଙ୍କର ସାହାଯ୍ୟ ସହଯୋଗ ଏବଂ ତାଙ୍କର କର୍ତ୍ତବ୍ୟ କର୍ମ ଦରବାର ଶାସନରେ ସ୍ୱୀକୃତ ହୋଇଥିଲା । ଗ୍ରାମବାସୀମାନେ ଜଙ୍ଗଲ ସଂପଦକୁ ଆପଣାର ଭାବି ରକ୍ଷଣାବେକ୍ଷଣ କରୁଥିଲେ । ଦରବାର ଶାସନ ଏଥିପାଇଁ ସର୍ବରାକାରମାନଙ୍କ ମାଧ୍ୟମରେ ଗ୍ରାମବାସୀମାନଙ୍କୁ ଉତ୍ସାହନ ଓ ପ୍ରୋତ୍ସାହନ ଦେଇଥିଲେ । ବିଜ୍ଞାନର ଉତ୍କର୍ଷତା ସେତେବେଳେ ଆଜିପରି ସ୍ଥାନରେ ପହଞ୍ଚି ନଥିଲା । ତେବେମଧ ରାଜା ଶଙ୍କର ପ୍ରତାପ ଭବିଷ୍ୟତରେ କ'ଣ ଘଟିବ ତାହା ନିଜର ଉପଲବ୍ଧିରୁ ବା ତାଙ୍କର ଅନୁସନ୍ଧିତ୍ସୁ ମନର ଅନୁଶୀଳନରୁ ବେଶ୍ ଜାଣିପାରିଥିଲେ । ତେଣୁ ପ୍ରାକୃତିକ ପରିବେଶକୁ ଅକ୍ଷୁର୍ଣ୍ଣ ରଖି ତାହାରି ଭିତରେ ଜନସମାଜ ଓ ପ୍ରାଣୀ ଜଗତ କୌଣସି କ୍ଷୟକ୍ଷତି ସହ୍ୟ ନକରି କାଳକାଳକୁ ବଞ୍ଚିରହନ୍ତୁ ଏହି ଉଦ୍ଦେଶ୍ୟ ରଖି ସେ କାର୍ଯ୍ୟକରୁଥିଲେ । ଏଥିପାଇଁ ଅନ୍ୟମାନଙ୍କର ସମାଲୋଚନା ସହ୍ୟକରି ମଧ ସେ ସାର୍ଥକ ଚିନ୍ତା କରୁଥିଲେ ଓ କାର୍ଯ୍ୟକରୁଥିଲେ । ୧୯୩୭ ବା ୧୯୩୮ ମସିହାର ଢେଙ୍କାନାଳ ଜଙ୍ଗଲ ଆଇନ୍‌କୁ ଜଙ୍ଗଲ ଶୂନ୍ୟ ଭାରତବର୍ଷରେ ପୁନଃ ପ୍ରଚଳନ ପାଇଁ ସ୍ମରଣ କରାଯାଉଛି । ଦରବାର ଶାସନର ଶେଷ ଏବଂ ସ୍ୱାଧୀନ ସରକାରଙ୍କର ଆରମ୍ଭ ବେଳକୁ ଢେଙ୍କାନାଳର ଲୋଭନୀୟ ଜଙ୍ଗଲ ସଂପଦ ଭରପୂର ଭାବରେ ଅକ୍ଷୁର୍ଣ୍ଣ ଥିଲା । ଆମ୍ଭେମାନେ ଚାହିଁଥିଲେ ଜଙ୍ଗଲର ମୂଲ୍ୟବାନ୍ କାଠ ବିକ୍ରିକରି ଦେଇପାରିଥାନ୍ତୁ । ଅନିୟମ ମଧ ହୋଇନଥାନ୍ତା । କିନ୍ତୁ ଏହା ଆମ୍ଭ ମାନଙ୍କର ପରିକଳ୍ପନାର ବାହାରେ ଥିଲା । ଏହି ଅମୂଲ୍ୟ ସଂପଦ ଦରବାର ଶାସନର ସଂମ୍ପୂର୍ଣ୍ଣ କର୍ତ୍ତୃତ୍ୱାଧୀନ ଥିଲେ ମଧ ରାଜା ଶଙ୍କର ପ୍ରତାପଙ୍କ ଭଳି ଦକ୍ଷ ଶାସକ ଚିନ୍ତାକରୁଥିଲେ ଯେ ଏହା ତାଙ୍କର ନୁହେଁ, ସମସ୍ତ ଷ୍ଟେଟ୍‌ର ଓ ଜନସାଧାରଣଙ୍କର । ଢେଙ୍କାନାଳ ପରିସୀମାରେ ଜଙ୍ଗଲ ସଂପଦ ହେଲେ ହେଁ ଏହା ଜାତୀୟ ସଂପତ୍ତି । ତେଣୁ ଏହା ସେ ଉଜାଡ଼ି ଦେବାକୁ ଦେଇନଥିଲେ । ଢେଙ୍କାନାଳର ଏହି ଜଙ୍ଗଲ ସଂପଦ ସେତେବେଳକୁ ପରିପୂର୍ଣ୍ଣ ଭାବରେ ଥିଲ । ତାହା ଦେଖିଥିବା ଲୋକ ଏ ପର୍ଯ୍ୟନ୍ତ ମଧ ବହୁ ସଂଖ୍ୟାରେ ବଞ୍ଚିଛନ୍ତି । ସେମାନେ ଆଜି ଦେଇପାରିବେ ସତ୍ୟ ବୃତ୍ତାନ୍ତର ବିବୃତି । କ'ଣ ହେଲା ସେ ଜଙ୍ଗଲ ? କିଏ ଓ କେଉଁଥିପାଇଁ ଏହାକୁ ଉଜାଡ଼ିକଲେ ? କେଉଁ

ଜାତୀୟ କାର୍ଯ୍ୟରେ ଏହାର ସାର୍ଥକ ବିନିଯୋଗ କରାଯାଇପାରିଲା ? ଏହି ପ୍ରଶ୍ନର ଉତ୍ତର ଖୋଜିଲେ କ'ଣ 'ଦରବାର ଶାସନ ଦାୟୀ' ବୋଲି ଉତ୍ତର ଆସିବ ? ଲକ୍ଷ ନଥାଇ, କର୍ମ ନକରି, ସମସ୍ୟା ନ ବୁଝି ପ୍ରୟୋଗାତ୍ମକ ଶିକ୍ଷାରୁ ଦୂରରେ ରହି ଆପଣା ସ୍ୱାର୍ଥ ପାଇଁ ଯେଉଁମାନେ ସୌଖିନ ନେତୃତ୍ୱ ଦେଇ ବିଭ୍ରାନ୍ତିକର ପରିସ୍ଥିତି ସୃଷ୍ଟି କରୁଥିଲେ ସେମାନେ ଚିରାଚରିତ ଭାବରେ ଏହି ଜଙ୍ଗଲ ସଂପଦକୁ ଉଜାଡ଼ କରିଦେବାରେ ସହାୟତା କଲେ । ଏଥିରେ ତିଳେ ହେଲେ ସନ୍ଦେହ ନାହିଁ । ସେହି ପ୍ରକାର ରାଜନୈତିକ ନେତା, କର୍ମଚାରୀ ଗୋଷ୍ଠୀ ନିଜର ସ୍ୱାର୍ଥପାଇଁ ଜାତୀୟ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ବିନା ମୂଲ୍ୟରେ ପ୍ରତିଯୋଗିତା ରୀତିରେ କାଠ କାଟି ବିରାଟ ଏହି ଜଙ୍ଗଲ ସଂପଦ କୁ ନିଶ୍ଚିହ୍ନ କରିଦେଲେ । ତଥାକଥିତ ଏହି ପ୍ରତିଷ୍ଠିତ ଗୋଷ୍ଠୀ ସମଗ୍ର ଦେଶ ବାସୀଙ୍କ ନିକଟରେ ଧନ ଜନ ଓ ପ୍ରାଣ ବିନିମୟରେ ପାଇଥିବା ସ୍ୱାଧୀନତାକୁ ଅର୍ଥକଲେ ସ୍ୱେଚ୍ଛାଚାର, ସ୍ୱୈରାଚାର ଭାବରେ ଅନିତୀ, ଦୁର୍ନୀତି, ଅନିୟମିୟତା ତଥା ବିଶୃଙ୍ଖଳା ସୃଷ୍ଟି କରିବା ଏବଂ ଏହି ନୂତନ ଅର୍ଥରେ ଦେଶ ଗଠନ ପରିବର୍ତ୍ତରେ ଲୁଟତରାଜ କରିବା ହେଲା ସେମାନଙ୍କର ପରମ ଲକ୍ଷ । ଏହା କ'ଣ ନେତୃତ୍ୱ ? ଏହା କ'ଣ ଜାତୀୟତା ? ଏହା କ'ଣ ଜନସେବା ନା ଦେଶ ସେବା ? ଆଜି ଢେଙ୍କାନାଳର ସମସ୍ତ ପାହାଡ଼ ପର୍ବତ ସଂପୂର୍ଣ୍ଣ ଲଣ୍ଡା । ଜଙ୍ଗଲ ଶୂନ୍ୟ ଜମିକୁ ବେନାମୀ ରୀତିରେ ନିଜ ନିଜ ନାମରେ କଳେ ବଳେ ଓ କୌଶଳେ ନେଇ ନିଜର ସ୍ୱାର୍ଥକୁ ସଂପ୍ରସାରିତ କରିଛନ୍ତି । କିନ୍ତୁ ଚିହ୍ନା ପଡ଼ିଲେ ନାହିଁ । ଦେଶ ସେବାର ମୁଖା ତଳେ ସେମାନଙ୍କର ସମସ୍ତ ଆତ୍ମ ସ୍ୱାର୍ଥ ଓ ପାପ ପଙ୍କିଳ କୁକର୍ମ ମାନ ଛପି ରହିଲା । ସେମାନଙ୍କର ଏତାଦୃଶ ମନ୍ଦ କାର୍ଯ୍ୟମାନ ଲୋକ ଚକ୍ଷୁରେ ନିର୍ମାଲ୍ୟ ରୂପରେ ଆତ୍ମ ପ୍ରକାଶ କଲା । ବହୁ ପୁରାକାଳର ବନ୍ୟ ସଂପଦ ଲୁଟିବା ପରେ ବର୍ତ୍ତମାନ ନୂତନ ଜଙ୍ଗଲ ସୃଷ୍ଟି ନାମରେ କୋଟି କୋଟି ଟଙ୍କା ଏହି ପ୍ରତିଷ୍ଠିତ ଗୋଷ୍ଠୀର ଶ୍ରୀମାନ ମାନେ ବରବାଦ କରି ଚାଲିଛନ୍ତି ଅଥଚ ପାହାଡ଼ ପର୍ବତ ଓ ପଦାଜମି ସେହିଭଳି ଟାଙ୍ଗରା ଅବସ୍ଥାରେ ପଡ଼ିରହିଛି । ଏ ଦେଶର ଜନସାଧାରଣ ସିନା ଅସହାୟ, ତେବେ ବିଶ୍ୱର ଜନସାଧାରଣ ଏହି ଛଳନାର ରୂପ କଥା କ'ଣ ବୁଝିନାହାଁନ୍ତି ? ବୁଝିଛନ୍ତି ଏହି ଗୋଷ୍ଠୀର କ୍ଷୟକାରୀ ଚକ୍ରାନ୍ତ ସମୂହକୁ କେତେକ ଆଇନଜୀବି, ପ୍ରଶାସକ ଓ ବିଭିନ୍ନ ରାଜନୈତିକ ମତବାଦର ବ୍ୟକ୍ତି । ଆଜି ଢେଙ୍କାନାଳରେ ଜଙ୍ଗଲ ରକ୍ଷା କରିବାର ପ୍ରଣାଳୀ ଓ ଆଇନ୍‌କୁ ମାନ୍ୟତା ଦେଇ ନିର୍ବିକାର ଚିତ୍ତରେ ଗ୍ରହଣ କଲାବେଳେ ରାଜା ଶଙ୍କର ପ୍ରତାପଙ୍କ ଶାସନର ପ୍ରକ୍ରିୟା ଓ ଚିନ୍ତା ଧାରା ପ୍ରତି ଅନୁରକ୍ତି ପ୍ରକାଶ କରନ୍ତି । ବର୍ତ୍ତମାନ ଜଙ୍ଗଲ ଶୂନ୍ୟ

ଭାରତବର୍ଷ ମରୁ ପ୍ରାନ୍ତର ହେବାକୁ ଯାଉଥିଲା ବେଳେ ରାଜା ଶଙ୍କର ପ୍ରତାପଙ୍କ ସୁଦୂର ପ୍ରସାରୀ ମାନବ ସେବା ସଂପୃକ୍ତ କାର୍ଯ୍ୟକ୍ରମ କୁ ସମସ୍ତେ ସ୍ୱୀକାର କରନ୍ତି । କିନ୍ତୁ ସେତେବେଳେ ଏହି କାଯ୍ୟକ୍ରମ କାହିଁକି କରାଯାଉଛି ବୋଲି କେତେକ ମୁଷ୍ଟିମେୟ ସ୍ୱାର୍ଥପର ବ୍ୟକ୍ତି ଜନସାଧାରଣଙ୍କୁ ବିଭ୍ରାନ୍ତ କରି ବିପୁଳ ଜଙ୍ଗଲ ସଂପଦକୁ ନଷ୍ଟ କରିବା ଉଦ୍ଦେଶ୍ୟରେ ଅଯଥା ଗଣ୍ଡଗୋଳ କରୁଥିଲେ । ଓଡ଼ିଶାର ତଥାକଥିତ ନେତୃସ୍ଥାନୀୟ ବ୍ୟକ୍ତି ବିଶେଷଙ୍କୁ ଏଥିରେ ସଂପୃକ୍ତ କରି ଅଧିକ ତିକ୍ତତା ସୃଷ୍ଟି ପାଇଁ ଉଦ୍ୟମ ହୋଇଥିଲା । କିନ୍ତୁ ସେହି ନେତୃସ୍ଥାନୀୟ ବ୍ୟକ୍ତି ମାନେ ଏଥିରେ କୌଣସି ମନ୍ଦ ଉଦ୍ଦେଶ୍ୟ ନଥିବା କଥା ଉପଲବ୍ଧି କରି ନୀରବ ରହିଥିଲେ । ଗୋଠମାତିଲେ ଖଣ୍ଡିଆ ମାତିଲା ପରି କେତେକ ସ୍ଥଳରେ ବାହାରର ନେତାମାନେ ନିଜ ସ୍ଥାନରେ ପ୍ରତିଷ୍ଠିତ ହେବାର ସୁଯୋଗ ନପାଇ ଗଡ଼ଜାତରେ ନିରୀହ ଲୋକଙ୍କୁ ଉସ୍‌କାଉଥିଲେ ନିଜର ନେତୃତ୍ୱକୁ ଜାହିର କରିବାପାଇଁ । ଏହିଭଳି ଘଟଣାରେ ରାଜାସାହେବ କେତେବେଳେ ହେଲେ ଦୁର୍ବଳତା ଅନୁଭବ କରୁନଥିଲେ । ରାଜ୍ୟର ବା ଜାତୀୟ ସଂପଦ ରକ୍ଷା କରିବାରେ ନିଜକୁ ନିୟୋଜିତ କରିଛନ୍ତି ବୋଲି ।

ସେହିପରି ବନ୍ୟ ପ୍ରାଣୀ ରକ୍ଷା କରିବାଥିଲା ତାଙ୍କର ଅନ୍ୟତମ ସଦ୍‌ଗୁଣ୍ । ପ୍ରାକୃତିକ ପରିବେଶରେ ସେମାନେ ବଢ଼ିଲେ ସମସ୍ତଙ୍କର ଲାଭ ଛଡା କ୍ଷତି ନାହିଁ ବୋଲି ସେ ଉପଲବ୍ଧି କରିଥିଲେ । ହିଂସ୍ର ଜନ୍ତୁଙ୍କ ସଂଖ୍ୟା ବଢ଼ିଲେ ଭୟ ହେତୁ ଜଙ୍ଗଲ ନଷ୍ଟ ହେବାର ଆଶଙ୍କା ନଥାଏ । ମଣିଷ ଓ ଗାଈଗୋରୁ ଖାଉଥିବା ବାଘ କୁ ମାରିବା ପାଇଁ ସେ ବ୍ୟବସ୍ଥା ଖଞ୍ଜିଥିଲେ । ହାତୀ ସଂଖ୍ୟା ବଢ଼ିଲେ ଫସଲ ଉଜାଡ଼ ଯୋଗୁଁ ଅନେକ ସମୟରେ ହାତୀ ମାନଙ୍କୁ ନମାରି ଧରିନେଇ ରାଜ କାର୍ଯ୍ୟରେ ବିନିଯୋଗ କରୁଥିଲେ । ହାତୀ ଖେଦା ତିଆରିକରି ହାତୀ ଧରାଯାଉଥିଲା । ଏଥିନିମନ୍ତେ ଲୋକମାନଙ୍କର ପୂର୍ଣ୍ଣ ସହଯୋଗ ନିଆଯାଉଥିଲା । ରାଜ୍ୟ ତହବିଲରୁ ଏଥିପାଇଁ ଖର୍ଚ୍ଚ କରାଯାଉଥିଲା । କିନ୍ତୁ ଏହା ପର୍ଯ୍ୟାପ୍ତ ନଥିଲେ ହେଁ କେତେକାଂଶରେ ବାଟାମାରଣା ହେଉଥିଲା ବୋଲି ଅନେକ ପରେ ଆମ୍ଭ ମାନଙ୍କର କାନକୁ ଆସିଲା । ସଂପତ୍ତି ରକ୍ଷା ପାଇଁ ସହଯୋଗ ସ୍ୱତଃପ୍ରବୃତ୍ତ ଭାବରେ ମଧ ମିଳୁଥିଲା । ତେବେ ଏହା ପୂର୍ଣ୍ଣ ବେଠି ନଥିଲା । ଏବଂ ଏଥି ପାଇଁ ନିଷ୍ଠୁର ଆଦେଶ ଦିଆଯାଉନଥିଲା । ହାତୀମାନଙ୍କ ସଂଖ୍ୟା ଅନେକ ବେଶୀ ବଢ଼ିଗଲେ ଫସଲ ନଷ୍ଟ କରିବା ଓ ବେଳେବେଳେ ମଣିଷ ମାନଙ୍କୁ ଆକ୍ରମଣ କରିବା ଯୋଗୁଁ ହାତୀ ଧରିବା କାର୍ଯ୍ୟକ୍ରମରେ ଲୋକମାନେ ପ୍ରକୃତରେ ସହାୟତା କରୁଥିଲେ । କିନ୍ତୁ ହାତୀ ଧରାନେଇ

ଯେଉଁ ବେଠି ବେଗାରୀ କଥା କୁହାଯାଉଛି ତାହା କେତେକ ସ୍ୱାର୍ଥପର ଲୋକ ନିଜର ଅବାଞ୍ଛିତ ପ୍ରକୃତିଗତ ଗୁଣରେ ଛଳନା ଓ ଚାତୁର୍ଯ୍ୟପୂର୍ଣ୍ଣ ନେତୃତ୍ୱ କୁ ଜାହିର କରିବା ପାଇଁ କ୍ରମାଗତ ଭାବରେ ରାଜ ଶାସନ ବିରୁଦ୍ଧରେ କାର୍ଯ୍ୟକରୁଥିଲେ । ଏହା ଛଡ଼ା ଶିକାର ମଧ୍ୟ କରାଯାଉଥିଲା । ସାଧାରଣ ପ୍ରଜା ମାନେ ଶିକାର ପାଇଁ ଲାଇସେନ୍ସ ବା ଅନୁମତି ନେଇ ଶୀକାର କରିବାର ସୁଯୋଗ ପାଉଥିଲେ । ସେତେବେଳେ ଶୀକାର କରିବା ରାଜ ଶକ୍ତିର ଏକ ପ୍ରଚଳିତ ନିଜସ୍ୱ ଧର୍ମ ଥିଲା ଏବଂ ରାଜଧର୍ମ ପରିସର ଭୁକ୍ତଥିଲା । ତେବେ କେତେକ ଆଚରଣ ମାନିବାକୁ ପଡୁଥିଲା । ପଶୁ ଜନ୍ମ କରିବା ଋତୁରେ ଶୀକାର କରିବା ମନାଥିଲା । ସଂରକ୍ଷିତ ଜଙ୍ଗଲରେ ଶିକାର କରିବା ମନାଥିଲା । ଏହିପରି କେତେକ ନିୟମ ଭିତରେ ଶିକାର କରାଯାଉଥିଲା , କେବଳ ପଶୁପକ୍ଷୀଙ୍କ ପ୍ରତି ଚରମ ନିଷ୍ଠୁର ଆଚରଣ ପ୍ରଦର୍ଶନ  ନକରିବା ପାଇଁ । ବ୍ରିଟିସ୍ ସରକାର ତାଙ୍କର ନିର୍ଦ୍ଧାରତ ପେସକସ୍ ନେବାପରେ କୌଣସି ଅନୁଦାନ ଦେଉନଥିବାରୁ ଏବଂ ଅନ୍ୟାନ୍ୟ କୌଣସି ସୂତ୍ରରେ ଯଥେଷ୍ଟ ରାଜସ୍ୱ ଆସୁନଥିବାରୁ ଦରବାର ଶାସକଙ୍କ ସାମାନ୍ୟ ଅର୍ଥରେ ରାସ୍ତା, ଜଳସେଚନ ପାଇଁ ବ୍ୟବହୃତ ଜଳାଶୟ, ପିଇବା ପାଇଁ କୂଅ ଆଦି କରାଯିବା ବ୍ୟବସ୍ଥାରେ କାର୍ଯ୍ୟଗୁଡ଼ିକ ସଂପୂର୍ଣ୍ଣ ହେଉନଥିବାରୁ ଜନସାଧାରଣଙ୍କର ସାହାଯ୍ୟ ଓ ସହଯୋଗ କାମନା କରାଯାଉଥିଲା । ଉପଯୋଗିତା ଓ ଆବଶ୍ୟକତା ଦୃଷ୍ଟିରୁ ଲୋକମାନେ କୌଣସି ସଂଶୟ ନରଖି ସହଯୋଗ ମଧ୍ୟ କରୁଥିଲେ । ମନରେ, ହୃଦୟରେ ଏବଂ କର୍ମଧାରାରେ ବିକାରଗ୍ରସ୍ତ, ବ୍ୟାଧିଗ୍ରସ୍ତ, ଅଥର୍ବ ଅଥବା ପଙ୍ଗୁ ଓ ଜୀରାରୁ ଶିରା କାଢ଼ିଲା ପରି ଯେଉଁମାନେ ନିଜର ନିଛତା ପ୍ରତିପାଦନ କରି ନେତା ଭାବରେ ଉପୁକାଣ କରୁଥିଲେ , ସେମାନେ ଏହାକୁ ବେଠି ବୋଲି କହୁଥିଲେ । ଆଜି ଏହାକୁ କୁହାଯାଉଛି ସମ୍ମାନଜନକ ଶବ୍ଦରେ People's Participation ବା ଲୋକମାନଙ୍କ ପାଇଁ ଲୋକମାନଙ୍କ ଦ୍ୱାରା ଶ୍ରମଦାନ । ଏହା ସେତେବେଳର ବେଠି ଅପେକ୍ଷା ଅତ୍ୟନ୍ତ ନ୍ୟୁନତର । ଆଜି ଏହି ଧାରା, ଏହି ନୀତି, ଗତ ପ୍ରାୟ ୪୬ ବର୍ଷ ଧରି ଦେଶ ସ୍ୱାଧୀନତା ପାଇଲା ପରେ ଗୋଟିଏ ଗୋଟିଏ କାର୍ଯ୍ୟପାଇଁ  ପ୍ରଚୁର ଅର୍ଥର ବ୍ୟୟବରାଦ ହେଉଥିଲେ ମଧ୍ୟ ସେତେବେଳର ବେଠି ପ୍ରଥା ବା ଶ୍ରମଦାନ ବ୍ୟବସ୍ଥାକୁ ଚାଲୁ ରଖାଯାଇଛି । ଯେଉଁକାର୍ଯ୍ୟ ପାଇଁ ଏବେ ଆଖି ନ ପାଇଲା ଭଳି ଟଙ୍କା ଖର୍ଚ୍ଚ କରାଯାଉଛି ତାହା ପୂର୍ଣ୍ଣାଙ୍ଗ ହେବାର ଇଛା ଥିଲାପରି ମନେ ହୁଏ ନାହିଁ । ସେ କାର୍ଯ୍ୟ ପୁଣି ଅତି ନିମ୍ନ ମାନର । ନିର୍ମାଣ ପରେ ପରେ ବା ଅଳ୍ପକିଛି ସମୟ ବ୍ୟବଧାନରେ

ଭୁଷୁଡ଼ି ପଡୁଛି । କାମ ଆରମ୍ଭବେଳେ ମୂଳ ନକ୍‌ସା ଇଛାନୁସାରେ ବଦଳିଯାଉଛି । କୂଅରେ ପାଣି ନ ହେଉଣୁ ପାଣିଭର୍ତ୍ତି କରି କୂଅ ହେଲା ଏବଂ ପ୍ରଚୁର ପାଣି ଅଛି ବୋଲି କୁହାଯାଇ ପୂର୍ଣ୍ଣାଙ୍ଗ ରିପୋର୍ଟ ପରେ ବିଲ ହେଉଛି । କୂଅ, ରାସ୍ତା, ପୋଲ ଆଦି ଅନେକ ସମୟରେ ହଜିଯାଉଛି ବା ଚୋରୀ ହୋଇଯାଉଛି । କାଗଜ ପତ୍ରରେ କାମହୋଇ ଜନସେବାରେ ବିନିଯୋଗ ହେଉଛି ବୋଲି ଉଲ୍ଲେଖ ଥିଲା ବେଳେ କାର୍ଯ୍ୟ କ୍ଷେତ୍ରରେ ତାହା ମୂଳରୁ ନାହିଁ ବୋଲି ଲୋକମାନେ ପ୍ରମାଣ ଦିଅନ୍ତି । ତେବେ ମଧ୍ୟ ପ୍ରତିକ୍ରିୟା ପ୍ରକାଶ ପାଉନାହିଁ । ସବୁକାର୍ଯ୍ୟ ପାଇଁ ଆକାଶ ଛୁଆଁ ପରିମାଣର ଅର୍ଥ ବ୍ୟବସ୍ଥା ରଖାଯାଇ ନାମକୁ ମାତ୍ର ଅର୍ଥର ସାମାନ୍ୟ କିଛି କାର୍ଯ୍ୟକରି ବାକି ସମସ୍ତ ଟଙ୍କା ମାତ୍ର କେତେଜଣଙ୍କ ମଧ୍ୟରେ ବଣ୍ଟା ହୋଇଯାଉଛି । କ୍ରମାଗତ ଭାବରେ କେବଳ ଏହି ପ୍ରକ୍ରିୟା ଯୋଗୁଁ କୌଣସି କାର୍ଯ୍ୟ କରାଯାଉନଥିବାରୁ ଲୋକମାନଙ୍କର ସମସ୍ୟା ଦିନକୁ ଦିନ ବଢିଚାଲିଛି । ପାନୀୟଜଳ ବା ଜଳସେଚନ ପାଇଁ ଜଳ ନାହିଁ , କେନାଲ ନାହିଁ, ଥିଲେ ବି ଦରଖଣ୍ଡିଆ ଅବସ୍ଥାରେ ପଡିରହିଛି । ବିଦ୍ୟାଳୟ ଗୃହ ନାହିଁ , ଥିଲେ ଅବା ଅର୍ଦ୍ଧନିର୍ମିତ କିମ୍ବା ଭଗ୍ନଅବସ୍ଥାରେ ପଡିରହିଛି । ଶିକ୍ଷକ ନାହାଁନ୍ତି । ଥିଲେ ଅବା ପାଠ ସରଞ୍ଜାମ ନାହିଁ । ପାଠର ମାନ ନାହିଁ । କପି ମାଧ୍ୟମରେ ପରୀକ୍ଷା ଚାଲିଛି । ଶିଳ୍ପବୃଦ୍ଧି ନାମରେ ଅଜସ୍ର ଅର୍ଥର ବାଟ ମାରଣା ଚାଲିଥିବା ବେଳେ କୃଷି କୁ ସଂମ୍ପୂର୍ଣ୍ଣ ଉପେକ୍ଷା କରାଯାଉଛି । କୃଷିଜୀବିମାନଙ୍କୁ ନିରୁତ୍ସାହିତ କରାଯାଉଛି । ଦରିଦ୍ରରୁ ଦରିଦ୍ରତର କରାଯାଉଛି । ସେମାନଙ୍କ ପାଇଁ ପ୍ରୋତ୍ସାହନ ନାହିଁ କିମ୍ବା ସୁବିଧା ସୁଯୋଗ ଦିଆଯାଉନାହିଁ । ଜୀବନ ଜଞ୍ଜାଳ ଭିତରେ କଙ୍କାଳସାର ପରିବାର ଚଳାଇ ନେବାପାଇଁ ସ୍ୱାଧିନ ଦେଶରେ ସେମାନଙ୍କୁ ଅଭିଶପ୍ତ କରି ରଖାଯାଉଛି । ଦେଶର ପ୍ରାୟ ଶତକଡା ୮୦ଭାଗ କୃଷିଜିବୀ ମାନଙ୍କର ଆର୍ତ୍ତନାଦ କାହାରିକୁ ବ୍ୟଥିତ କରୁନାହିଁ । କିନ୍ତୁ ସେତେବେଳେ ସୀମିତ ଅର୍ଥମଧ୍ୟରେ କୌଣସି ଆବିଳତା ରଖି କାର୍ଯ୍ୟ କରାଯାଉନଥିଲା । ନିଜନିଜର ପରିସର ମଧ୍ୟରେ ସମସ୍ତେ ପରିଶ୍ରମ କରୁଥିଲେ । ଠକାଠକିର ପ୍ରଶ୍ନ ନଥିଲା । ଗ୍ରାମ୍ୟ ପରିବେଶ ମଧ୍ୟରେ ସମସ୍ତେ ସମସ୍ତଙ୍କର ଆପଣାର ହୋଇ ମିଳିତ ଶକ୍ତିର ଯଥାର୍ଥ ବିନିଯୋଗ କରାଯାଉଥିଲା ।

ପ୍ରତ୍ୟେକ ବିଭାଗର ପ୍ରତ୍ୟେକଶ୍ରେଣୀର ରାଜକର୍ମଚାରୀମାନେ ଶାସନ କାର୍ଯ୍ୟରେ ସଂପୃକ୍ତ ରହୁଥିଲେ । ଗ୍ରାମାଞ୍ଚଳକୁ କାର୍ଯ୍ୟ ଉପଲକ୍ଷେ ରାଜ କର୍ମଚାରୀମାନେ ଗସ୍ତ କଲାବେଳେ ଗ୍ରାମ୍ୟ ଅନୁଷ୍ଠାନ ଯଥା କୋଠଘର, ସଂକୀର୍ତ୍ତନ, ବିଦ୍ୟାଳୟରେ ଛାତ୍ର

ଉପସ୍ଥାନ, ଶିକ୍ଷକମାନଙ୍କର କାର୍ଯ୍ୟକ୍ରମ, ବିଦ୍ୟାଳୟ, ବଗିଚା, ଖେଳ, ସ୍କାଉଟିଂ, କୃଷି, ସ୍ୱାସ୍ଥ୍ୟ, ଜଙ୍ଗଲସମ୍ପଦ ଆଦି ସମସ୍ତ ବିଷୟରେ ବୁଝାବୁଝି କରୁଥିଲେ । ଉଚ୍ଚ ରାଜକର୍ମଚାରୀମାନଙ୍କୁ ଯଥାସମ୍ଭବ ତାଲିମ ଦିଆଯାଉଥିଲା ଏବଂ ସେମାନେ କିପରି ଉପଯୁକ୍ତ ଯୋଗ୍ୟତା ଲାଭ କରିବେ ଏବଂ ଅନ୍ୟ ଯେକୌଣସି ବିଭାଗରେ କାର୍ଯ୍ୟକଲେ ନିଜର ଯୋଗ୍ୟତା ପ୍ରତିପାଦନ କରିପାରିବେ ସେଥିପାଇଁ ରାଜା ଶଙ୍କର ପ୍ରତାପ ନିଜେ ପ୍ରଭୂତ ଉତ୍ସାହ ପ୍ରଦାନ କରୁଥିଲେ । ଠିକ୍ ଭାବରେ ପରାମର୍ଶ ଦେଇ ସେମାନଙ୍କୁ ଅଧିକ ଯୋଗ୍ୟକରିବାକୁ ଉଦ୍ୟମ କରୁଥିଲେ । ଗଡ଼ଜାତ ମିଶିଲା ପରେ ଢ଼େଙ୍କାନାଳର ପୂର୍ବତନ ବହୁ ରାଜ କର୍ମଚାରୀ ନିଜର ଯୋଗ୍ୟତା ଓ କର୍ମନିପୁଣତା ଯୋଗୁଁ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ଉଚ୍ଚ ପଦପଦବୀରେ ଅବସ୍ଥାପିତ ହୋଇଥିଲେ । ସେମାନେ ସେମାନଙ୍କର ପ୍ରଶାସନିକ ଦକ୍ଷତା, ଉଚ୍ଚମାନର ପ୍ରଶାସନିକ ଚିନ୍ତାଧାରା, କର୍ମପ୍ରତିଭା ଓ ନିର୍ମଳ ଚରିତ୍ରବତ୍ତା ଢ଼େଙ୍କାନାଳ ରାଜ ଶାସନର ତାଲିମ ଯୋଗୁଁ କର୍ମକ୍ଷେତ୍ରରେ ପ୍ରଦର୍ଶନ କରିଛନ୍ତି । ଏହା ସର୍ବବାଦୀ ସର୍ବ-ସମ୍ମତ ଭାବରେ ସ୍ୱୀକୃତ ।

ଉଚ୍ଚକୋଟୀ ଜ୍ଞାନ ସଂପନ୍ନ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ ଥିବା ପ୍ରମୁଖ ବ୍ୟକ୍ତିଙ୍କୁ ସେ ଉଚ୍ଚବିଦ୍ୟାଳୟର ପ୍ରଧାନ ଶିକ୍ଷକ ଓ ଅନ୍ୟାନ୍ୟ ସହକାରୀ ଶିକ୍ଷକ ପଦରେ ନିଯୁକ୍ତ କରୁଥିଲେ , ଶିକ୍ଷା କ୍ଷେତ୍ରରେ ଅଦ୍ୱିତୀୟ ପ୍ରତିଷ୍ଠା ଅର୍ଜନ ପାଇଁ ଓ ଶିକ୍ଷାର ମାନ ବୃଦ୍ଧି ସହ ଉଜ୍ଜଳ ଚରିତ୍ରର ମଣିଷ ଗଠନ ପାଇଁ । ସେହିପରି ପ୍ରତ୍ୟେକ ବିଭାଗକୁ ଯଥାର୍ଥ ଅର୍ଥରେ ପ୍ରଗତିଶୀଳ କରିବାପାଇଁ ଏବଂ ସଂଗଠିତ ଭାବରେ ଢ଼େଙ୍କାନାଳର ଜନସାଧାରଣଙ୍କୁ ପ୍ରଶାସନିକ ମୂଲ୍ୟବୋଧରେ ଉପଯୁକ୍ତ ସେବା ଦେବାପାଇଁ ଅଧିକ ଯୋଗ୍ୟତା ସଂପନ୍ନ ଗୁଣୀ ବ୍ୟକ୍ତି ମାନଙ୍କୁ ନିଯୁକ୍ତି ଦେଉଥିଲେ । ସେମାନଙ୍କ ମଧ୍ୟରେ ଥିଲେ ବ୍ରିଟିସ୍ ସରକାରଙ୍କର ଉଚ୍ଚପଦବୀରୁ ଅବସରପ୍ରାପ୍ତ କତିପୟ କର୍ମଚାରୀ ଯଥା - ଦେଓ୍ୱାନ ବାହାଦୂର ଦୟାନିଧି ଦାସ, ଦେଓ୍ୱାନ୍ ରାୟବାହାଦୂର ବ୍ରଜବିହାରୀ ବର୍ମନ, କମିଶନର ଅଫ୍ ପୋଲିସ୍ , ରାୟ ବାହାଦୂର କେବି ରାୟ, Dist. Addl. Sessions Judge ରାୟ ବାହାଦୂର ଭବଦେବ ସରକାର, Chief Minister ମାନନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ, ପ୍ରଧାନମନ୍ତ୍ରୀ । ବରହମ୍ପୁରର ସେ ଜଣେ ନାମଜାଦା ଓକିଲ ମାନ୍ଦ୍ରାଜ ଆଇନ ପରିଷଦର ଜଣେ ସଭ୍ୟ ଥିଲେ । ଆଉ ମଧ୍ୟ ସେ ବ୍ରିଟିସ୍ ଶାସନ କାଳରେ ଓଡ଼ିଶାର ପାରଳାଖେମୁଣ୍ଡି ମହାରାଜଙ୍କ ଦ୍ୱାରା ଗଠିତ ମିଳିତ ମନ୍ତ୍ରୀମଣ୍ଡଳର ଜଣେ ମନ୍ତ୍ରୀ ଥିଲେ । ଆଉ ଏପରି କେତେ । ଉପଯୁକ୍ତ ଦକ୍ଷ ଓ ଶିକ୍ଷିତ ରାଜ କର୍ମଚାରୀ ମାନଙ୍କୁ

ନେଇ ପ୍ରଶାସନିକ ସଂଗଠନ ମାଧ୍ୟମରେ ଉନ୍ନତିକର କାର୍ଯ୍ୟକ୍ରମମାନ ଆରମ୍ଭ କଲାବେଳକୁ ପ୍ରାୟ ୬/୭ ବର୍ଷ ବିତି ଗଲାଣି । ସମଗ୍ର ଭାରତ ବର୍ଷରେ ଏକ ରାଜନୈତିକ ଚେତନା ଦେଶବାସୀଙ୍କୁ ସେତେବେଳକୁ ଅନୁପ୍ରାଣିତକଲାଣି । ବ୍ରିଟିଶ ସରକାରଙ୍କ ଆତ୍ମଘାତୀ ଶାସନରୁ ମୁକ୍ତି ପାଇବାପାଇଁ ଜନସାଧାରଣଙ୍କ ସହିତ ରାଜା ମହାରାଜା ମାନେ ମଧ୍ୟ ନିଜ ନିଜ ବାଟରେ କାର୍ଯ୍ୟାରମ୍ଭ କଲେଣି ।

ଭାରତୀୟ ସଂସ୍କୃତିରେ ବୈବାହିକ ଜୀବନ ମଧ୍ୟରେ ସନ୍ତାନ କାମନା କରିବା ଅନ୍ୟଏକ ଚିନ୍ତାଧାରା । ଆମ୍ଭର କୌଣସି ସନ୍ତାନ ସନ୍ତତି ସେତେବେଳେ ପର୍ଯ୍ୟନ୍ତ ହୋଇ ନଥିବାରୁ ଶାଶୁ ଓ ଜେଜେ ଶାଶୁ ଚିନ୍ତିତ ଅବସ୍ଥାରେ ଅତ୍ୟନ୍ତ ଦୁଃଖ ପ୍ରକାଶ କରୁଥାନ୍ତି । ସେମାନେ ଅତ୍ୟନ୍ତ ଧର୍ମପରାୟଣ ଥିଲେ ଏବଂ ସାଧାରଣ ପାରମ୍ପରିକ ରୀତିରେ ନାନା ବିଧି ପୂଜାପାର୍ବଣ କରୁଥାନ୍ତି ଆମ୍ଭର ସନ୍ତାନ ଲାଭ ପାଇଁ । ପ୍ରବୀଣ ରାଜ କର୍ମଚାରୀ ମାନଙ୍କ ଉପରେ ଆସ୍ଥା ଓ ବିଶ୍ୱାସ ରଖି ମଝିରେ ମଝିରେ ବିଭିନ୍ନ ତୀର୍ଥ ଓ ଦର୍ଶନୀୟ ସ୍ଥାନ ପରିଭ୍ରମଣରେ ଆମ୍ଭେମାନେ ବାହାରକୁ ଯାଇଥିଲୁ । ତୀର୍ଥସ୍ଥାନ ଗୁଡ଼ିକରେ ପୂଜାପାର୍ବଣ ସହିତ ଦେବସ୍ଥାନର ମହିମା ଉପଲବ୍ଧି କରିବାକୁ ଦର୍ଶନୀୟ ସ୍ଥାନର ମହତ୍ତ୍ୱ ସଂପର୍କରେ ଅବହିତ ହେବାକୁ ଏବଂ ଅନ୍ୟ ରାଜ୍ୟ ବା ଇଲାକାରେ ପ୍ରଶାସନିକ କାର୍ଯ୍ୟ କିପରି ଚାଲିଛି ଓ ଅନ୍ୟ ଅଂଚଳର ଜନସାଧାରଣଙ୍କ ଚଳଣି କିପରି ତାହା ଜାଣିବାକୁ ମଧ୍ୟ ଥିଲା ଏହି ପରିଭ୍ରମଣର ଉଦ୍ଦେଶ୍ୟ ।

ପରିଭ୍ରମଣରେ ଗଲାବେଳେ ପ୍ରତ୍ୟେକ ତୀର୍ଥସ୍ଥଳରେ ଭକ୍ତି ପୂର୍ଣ୍ଣ ହୃଦୟରେ ରାଜ୍ୟର ଓ ନିଜର ମଂଗଳ ପାଇଁ ନିଷ୍ଠାପର ଭାବରେ ବିଧିବିଧାନ ମାନି ପୂଜା ଆରାଧନା କରୁଥିଲୁ । ଆଶାନୁରୂପ ଦାନ ଦକ୍ଷିଣା ଦେଉଥିଲୁ ଆଶୀର୍ବାଦ ପାଇବାପାଇଁ ଓ ପୂଜା ଆରାଧନା କୁ ଫଳପ୍ରଦ କରିବା ପାଇଁ । ଏହାଥିଲା ସେ ଯୁଗର ଏକ ଧାର୍ମିକ କାର୍ଯ୍ୟର ଉପଚାର । ଏହାକୁ ଯୁକ୍ତିର ଉର୍ଦ୍ଧ୍ୱରେ ରଖି ଗଭୀର ଆତ୍ମ ବିଶ୍ୱାସ ସହିତ ପରସ୍ପର ମଧ୍ୟରେ ମାନି ନେବାକୁ ହେଉଥିଲା । ଏହି ଧାରା ଆଜିମଧ ପରିପୂର୍ଣ୍ଣ ଭାବରେ ରହିଛି । କିଛି ବଦଳି ନାହିଁ । ସେହି କାରଣରୁ ସବୁ ଦେବ ସ୍ଥାନରେ ପୂଜା କଲାବେଳେ ଆମ୍ଭେ ପରମଶାନ୍ତି ଲାଭ କରୁଥିଲୁ । ସନ୍ତାନ ସନ୍ତତି ନହେବା ଯୋଗୁଁ ପ୍ରତ୍ୟେକ ପରିବାର ମଧ୍ୟରେ ଯେଉଁ ଦୁଃଖ କଷ୍ଟ ଅନୁଭବ କରାଯାଏ ତାହା ଅନୁଭବ କରୁଥିଲେ ମଧ୍ୟ ହତାଶ ଭାବ ଆସୁଥିଲେ ବି ଆମ୍ଭେ କେବଳ ପୂଜା କର୍ମ ଯୋଗୁଁ ଅଧୀର ହେଉନଥିଲୁ । ମନରେ ଅବସାଦ ଆସୁଥିଲେ ବି ଅନୁଶୋଚନାରେ ଭାଙ୍ଗି ପଡୁନଥିଲୁ । ଆମ ଉଭୟଙ୍କ

ମଧ୍ୟରେ ଭଗବତ୍ ବା ଈଶ୍ୱର ବିଶ୍ୱାସ ଏପରି ଗଭୀର ଥିଲା ଯେ ଆମ୍ଭେ ପ୍ରତ୍ୟେକ ମୁହୂର୍ତ୍ତରେ ଏକ ଅଜଣା ଚିନ୍ତା ଓ ଶକ୍ତି ରେ ଆସ୍ଥାବାନ ହୋଇଥିଲୁ ଏବଂ ଭାବୁଥିଲୁ ନିଶ୍ଚୟ ଭଗବାନଙ୍କର ଅସୀମ କରୁଣା ଆମ୍ଭଙ୍କୁ ପ୍ରାପ୍ତ ହେବ । ପରୋକ୍ଷ ଭାବରେ ନୁହେଁ ପ୍ରତ୍ୟକ୍ଷ ଭାବରେ ଆମ୍ଭେ ଆମ୍ଭର ଜୀବନ କ୍ଷେତ୍ରରେ ସର୍ବଦା ଭଗବାନଙ୍କର କରୁଣା ପାଇଛୁ ।

ତୀର୍ଥ ବା ଦର୍ଶନୀୟସ୍ଥାନ ପରିଭ୍ରମଣରେ ଗଲାବେଳେ ଯେଉଁ ସ୍ଥାନରେ ଆମ୍ଭେ ରହୁଥିଲୁ ପୂଜା ଆରାଧନା ପାଇଁ ବା ପ୍ରାକୃତିକ ପରିବେଶ ସଂପର୍କରେ ଅନୁଧ୍ୟାନ ପାଇଁ ରାଜା ଶଙ୍କର ପ୍ରତାପ ସ୍ଥାନୀୟ ଲୋକମାନଙ୍କ ସହିତ ମନରେ ଚିନ୍ତାରେ ଓ କର୍ମରେ କୌଣସି ସୀମା ସରହଦ ନରଖି ସଂପୂର୍ଣ୍ଣ ମିଶି ଯାଉଥିଲେ । ଗୋଟିଏ ରାଜ୍ୟର ରାଜା ବୋଲି ସେତେବେଳେ ତିଳେହେଲେ ସେ ଗର୍ବ କରୁନଥିଲେ । ସେମାନଙ୍କ ନିକଟରେ ତାଙ୍କର ପରିଚୟର ଆବଶ୍ୟକତା ସେ ଉପଲବ୍ଧି କରୁନଥିଲେ । ସେମାନଙ୍କ ପାଇଁ ସେ ଜଣେ ସାଧାରଣ ବ୍ୟକ୍ତି ଶଙ୍କର ହିସାବରେ ପରିଚିତ ହେଉଥିଲେ ହେଁ ତାଙ୍କର ରୁଚିମାର୍ଜିତ କଥା ବ୍ୟବହାର ଓ ଦେବତୁଲ୍ୟ ବ୍ୟକ୍ତିତ୍ୱ ସେମାନଙ୍କୁ ବିଶେଷଭାବରେ ଆକର୍ଷଣ କରୁଥିଲା । ଅନେକ ସ୍ଥାନରେ ବହୁଜ୍ଞାନବାନ ଲୋକମାନଙ୍କ ଗହଣରେ ଶାସ୍ତ୍ର ପୁରାଣ ସଂପର୍କରେ ଆଲୋଚନା କରି ସେ ତାଙ୍କର ଗଭୀରଜ୍ଞାନର ପରିଚୟ ଦେଉଥିଲେ । ସକଳଶ୍ରେଣୀର ଲୋକମାନଙ୍କୁ ତାଙ୍କର ଅକଳନ୍ତି ଜ୍ଞାନର ମହିମା ବଳରେ ସେ ଅଭିଭୂତ କରିରଖୁଥିଲେ । ତେଣୁ ସେ ସମସ୍ତ ଅଜଣା ଅଶୁଣା ସ୍ଥାନରେ ଚିହ୍ନା ଅଚିହ୍ନା, ଧନୀ, ଗରିବ, ଶିକ୍ଷିତ ଅଶିକ୍ଷିତ ଆଦି ସକଳ ଶ୍ରେଣୀର ଲୋକଙ୍କ ନିକଟରେ ଜଣେ ପ୍ରିୟ ବ୍ୟକ୍ତିତ୍ୱ ହିସାବରେ ପରିଚିତ ହେଉଥିଲେ ଏବଂ ଏଥିପାଇଁ ସ୍ଥାନୀୟ ଲୋକମାନେ ଅତ୍ୟନ୍ତ ଆନନ୍ଦ ପାଉଥିଲେ ।

ଏହି ଆତ୍ମପରିଚୟ ପାଇଁ ଦେଶର ସର୍ବଶ୍ରେଷ୍ଠ ଜ୍ଞାନପୀଠ, ଧର୍ମସ୍ଥାନ ଓ ବିଦ୍ୟା ନଗରୀ କାଶୀରେ ଅବସ୍ଥାନ ସମୟରେ ଜନସ୍ୱୀକୃତ ସର୍ବୋଚ୍ଚ ଅନୁଷ୍ଠାନ ତାହାଙ୍କୁ ବିଦ୍ୟାସାଗର ଉପାଧିରେ ଭୂଷିତ କରିଥିଲେ । ଏହା ସେତେବେଳେ ଅତ୍ୟନ୍ତ ସମ୍ମାନ-ଜନକ ଥିଲା ଏବଂ ଜନ ଓ ମାନର ଉପଯୁକ୍ତ ମୂଲ୍ୟାୟନ କରି ଦିଆଯାଉଥିଲା କାଶୀର ବିଦ୍ୱାନ ପଣ୍ଡିତମଣ୍ଡଳୀଙ୍କ ନିଷ୍ପତ୍ତି ଅନୁସାରେ । ଏଥିରେ ଅଳ୍ପ କିଛି ଈର୍ଷାଳୁ ବ୍ୟକ୍ତି ଅସହଣୀୟ ହୋଇ କୁତ୍ସାରଟନା କରିବା ପାଇଁ ପ୍ରୟାସ କରିଥିଲେ ମଧ୍ୟ ଗୁଣଗ୍ରାହୀ ପଣ୍ଡିତମଣ୍ଡଳୀଙ୍କ ସର୍ବସମ୍ମତ ନିଷ୍ପତ୍ତି ବିପକ୍ଷରେ ସ୍ୱର ଉତ୍ତୋଳନ କରିବାକୁ ସାହସ କରିନଥିଲେ । ତାଙ୍କର ବ୍ୟକ୍ତିଗତ ଜୀବନ ପ୍ରତ୍ୟେକ ଦୃଷ୍ଟିରୁ ସ୍ୱଭାବ ସିଦ୍ଧଭାବରେ

ଆଦର୍ଶମୟ ଥିବାରୁ ଏବଂ ତାଙ୍କର ଅପରିସୀମ ଲୋକପ୍ରିୟତା କାରଣରୁ, ବିଭିନ୍ନ ସମୟରେ ବିଭିନ୍ନ ଧରଣର ଈର୍ଷାଳୁ ବ୍ୟକ୍ତି ସବୁବେଳେ କ୍ଷତି କରିବାକୁ ଉଦ୍ୟମ କରୁଥିଲେ । କିନ୍ତୁ ଈଶ୍ୱରାଶ୍ରିତ ରାଜା ଶଙ୍କର ପ୍ରତାପ ସୌଭାଗ୍ୟଶାଳୀ ଥିବାରୁ ଏବଂ ଗୁଣାତ୍ମକ ଭାବରେ ଦୁର୍ବଳ ନଥିବାରୁ ଅନେକ କୁତ୍ସିତ ପରିପ୍ରଚାର ଦ୍ୱାରା ତାଙ୍କର ପ୍ରତିଭାନ୍ୱିତ ବ୍ୟକ୍ତିତ୍ୱରେ ମଳିନତା ସୃଷ୍ଟି ହୋଇନଥିଲା । ଏଥିରେ ସେ ଭାଙ୍ଗିପଡିନଥିଲେ ବା କିମ୍ୱା ମୁଣ୍ଡ ନୁଆଁଇ ପ୍ରତିକ୍ରିୟାଶୀଳ, ଈର୍ଷାତୁର, ଅନଭିଜ୍ଞ ଓ ସ୍ୱାର୍ଥବାଦୀ ଲୋକଙ୍କର ଶିକାର ହୋଇନଥିଲେ । ସେଥିଲେ ସର୍ବୋତ୍ତମ ଭାବରେ ଅଜେୟ ଏବଂ ମାନବିକ ଶକ୍ତିର ଅଖଣ୍ଡ ଆଧାର ସ୍ୱରୂପ ନିର୍ବିକାର ଓ ନିର୍ବିକଳ୍ପ ।

ସ୍ୱଭାବତଃ ସେ ଥିଲେ ଅତ୍ୟନ୍ତ ସ୍ୱାଧିନଚେତା । ବ୍ରିଟିଶ ଶାସନ ଓ ଶାସକମାନଙ୍କୁ ସେ ଘୃଣା କରୁଥିଲେ ଏବଂ ସେମାନଙ୍କୁ ସଂପୂର୍ଣ୍ଣ ଅବିଶ୍ୱାସ କରୁଥିଲେ । ତା'ର କାରଣ ଥିଲା ଭାରତୀୟ ସଂସ୍କୃତି ଓ ଧର୍ମକୁ ବ୍ରିଟିଶ ଶାସକମାନେ ଅତ୍ୟନ୍ତ ଇତର ଦୃଷ୍ଟିରେ ଦେଖି ଭାରତୀୟ ଲୋକମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରି ସେମାନଙ୍କ ପ୍ରତି ପଶୁବତ ଆଚରଣ କରୁଥିଲେ । ସେ ଜଣେ ଶାସକ ଥିବାରୁ ପ୍ରକାଶ୍ୟ ପ୍ରତିବାଦ କରିପାରୁନଥିଲେ । କିନ୍ତୁ ଅନେକ ସ୍ଥଳରେ ନୀରବ ପ୍ରତିବାଦ ପୂର୍ବକ ଅସହଯୋଗ କରୁଥିଲେ । ବେଳେବେଳେ ସେମାନଙ୍କର ଅନ୍ୟାୟ, ଅନୀତିପୂର୍ଣ୍ଣ ଓ ଅଳିଖିତ ଆଦେଶକୁ ଏଡାଇ ଯାଉଥିଲେ କିମ୍ୱା କଠୋର ଭାଷାରେ ଉପର କର୍ତ୍ତୁପକ୍ଷଙ୍କ ଦୃଷ୍ଟିଗୋଚରକୁ ଆଣୁଥିଲେ ଅଭିଯୋଗ ଭାବରେ । ତାଙ୍କର ଶାସନକାଳ ମଧ୍ୟରେ ଇଂରେଜ କର୍ତ୍ତୁପକ୍ଷଙ୍କୁ ତାଙ୍କର ଜ୍ଞାନ ଓ ବୁଦ୍ଧିବଳରେ ସେ ଜଣାଶୁଣା ଭାବରେ ଘୋର ଅବଜ୍ଞା କରୁଥିଲେ । ସେଥିଲାଗି ବ୍ରିଟିଶ୍ କର୍ମଚାରୀମାନେ ପ୍ରତିମୁହୂର୍ତ୍ତରେ ତାଙ୍କୁ ଭୟ କରୁଥିଲେ ମଧ୍ୟ ତାଙ୍କର ସାମାନ୍ୟତମ ଦୋଷ ତ୍ରୁଟି ଖୋଜି ବାହାର କରିବା ପାଇଁ ସର୍ବଦା ତତ୍ପରତା ପ୍ରକାଶ କରୁଥିଲେ । କିନ୍ତୁ ପାରୁନଥିଲେ । ସେତେବେଳର ଶାସନ ବେଳେ ଇଂରେଜ ସରକାର ଭଳି ଏକ ବିରାଟ ଶକ୍ତି କୁ ଅବମାନନା କରିବା ଓ ସମୟ କ୍ରମରେ ମୁକାବିଲା କରିବା କିଛି ସହଜ କଥା ନଥିଲା । ଏହି କାରଣରୁ ରାଜାଶଙ୍କରପ୍ରତାପ ଅଜେୟ ହୋଇ ବ୍ରିଟିଶ୍ କର୍ତ୍ତୁପକ୍ଷଙ୍କ ସନ୍ଦେହର ବଳୟ ଭିତରେ ରହିଥିଲେ । ସମୟ ଆସିଲେ ଠିକଣା ବେଳରେ ତାଙ୍କୁ ଅଭିଯୁକ୍ତ କରିବେ । ଛକାପଞ୍ଝା ଭିତରେ ରାଜା ଶଙ୍କର ପ୍ରତାପ ନିଜର ସ୍ଥିର ଚିତ୍ତ ଧୈର୍ଯ୍ୟଶକ୍ତି ଓ ସାହସ ବଳରେ ବର୍ତ୍ତି ଯାଇଥିଲେ ।

ଜାଣିବା ପାଇଁ , ପରିଚିତ ହେବାପାଇଁ ଓ ନିଜର ମୂଲ୍ୟବୋଧକୁ ପ୍ରତିପାଦିତ କରିବା ପାଇଁ ସେତେବେଳେର ଦେଶର ପ୍ରଖ୍ୟାତନାମା ଲେଖକ, ସାମ୍ବାଦିକ, ଆଇନଜ୍ଞ, ଦେଶସେବକ ଓ ସ୍ଥାନୀୟ ବହୁ ପ୍ରତିଷ୍ଠିତ ଜ୍ଞାନୀ ଓ ଗୁଣୀ ଲୋକଙ୍କୁ ଖୋଲା ହୃଦୟରେ ସେ ସାକ୍ଷାତ ଓ ଆଲୋଚନା କରୁଥିଲେ, ନିଜର ଅଭିରୁଚିପୂର୍ଣ୍ଣ ମନର କଥା ପ୍ରକାଶ କରୁଥିଲେ ସେମାନଙ୍କ ନିକଟରେ । ମହାତ୍ମା ଗାନ୍ଧୀ, ଜବାହାରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଚକ୍ରବର୍ତ୍ତୀ ରାଜଗୋପାଳଚାରୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ଆସଫ ଅଲ୍ଲି, ଅରୁଣା ଆସଫ ଅଲ୍ଲି, ମହମ୍ମଦ ଅଲ୍ଲିଜିନ୍ନା, ପ୍ରଫୁଲ୍ଲ ସରକାର, ବିଜୁ ପଟ୍ଟନାୟକ, ସାର ତେଜ ବାହାଦୁର ସାପ୍ରୁ , ଡକ୍ଟର ବିଧାନ ଚନ୍ଦ୍ର ରାୟ, ଡକ୍ଟର ଏଚ.ସି ମୁଖାର୍ଜି, ସାର ଏମ. ସି. ସିତଲବାଦ, ଗୋଦାବରୀଶ ମିଶ୍ର, ନିଳକଣ୍ଠ ଦାଶ, ନଳିନ ରଞ୍ଜନ ସରକାର, ସରୋଜିନୀ ନାଇଡୁ, ପ୍ରଫୁଲ ଚନ୍ଦ୍ର ସେନ, ଶ୍ରୀ ରବିନ ସନ, ଭି.ପି ମେନନ, ଶ୍ରୀ ପି.ସି. ସରକାର, ଭୂପେଷ ଗୁପ୍ତା, ଧୀରେନ୍ ଦେ, ବିଶ୍ୱନାଥ ଦାଶ, ଡକ୍ଟର ଏସ. ରାଧାକ୍ରୀଷ୍ଣନ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ଲାଲବାହାଦୁର ଶାସ୍ତ୍ରୀ, ଏମ.ସି. ଚଗଲା,ଏସ.କେ. ଦେ, ଜଷ୍ଟିସ ରଙ୍ଗନାଥ ମିଶ୍ର, ଶ୍ରୀ ଲୋକନାଥ ମିଶ୍ର, କ୍ରିଷ୍ଣ ମେନନ, ସର୍ଦ୍ଦାର ପାନିକର, ଡକ୍ଟର ହରେକୃଷ୍ଣ ମହତାବ, ଡ଼କ୍ଟର ରାଧାନାଥ ରଥ, ଶ୍ରୀ ନିଳମଣି ରାଉତରାୟ, ଶ୍ରୀ ନିରେନ୍ ଘୋଷ, ଶ୍ରୀ ହରିହର ଦାଶ, ଶ୍ରୀ ଲୋକନାଥ ଚୌଧୁରୀ, His Excellency Sir H.C. Mukharjee, ଡ଼କ୍ଟର ଜାକିର ହୁସେନ୍, ଶ୍ରୀ ଲୋକନାଥ ମିଶ୍ର , ଡକ୍ଟର କାଳିଦାସ ନାଗ, ଶ୍ରୀମତୀ ପଦ୍ମଜା ନାଇଡୁ, ଶ୍ରୀ ସାଦିକ୍ ଅଲ୍ଲୀ, ଶ୍ରୀମତୀ ଭାଓଲେଟ୍ ଆଲଭା, ରାୟବାହାଦୂର ରାଘବେନ୍ଦ୍ର ବାନାର୍ଜୀ, ଆଇ.ପି. ବାରିଷ୍ଟର, ସାର୍ ଜେ. ସି. ମୁଖାର୍ଜୀ, ସାର୍ ଭି.ପି. ସିଂହରାୟ, ସାର ବିରେନ୍ ମୁଖାର୍ଜୀ, ଜେନେରାଲ ସିକନ୍ଦର ମିର୍ଜା, ଗୋପାଲ ସ୍ୱରୂପ ପାଠକ, ସାର୍ ବୀରକିଶୋର ରାୟ, ଚିଫ୍ ଜଷ୍ଟିସ୍ ପ୍ରମୁଖ ନେତାମାନଙ୍କ ସହିତ ସମୟ ସୁଯୋଗ ନେଇ ଦେଖା ସାକ୍ଷାତ ଓ ସେମାନଙ୍କ ସହିତ ବିଚାର ଆଲୋଚନା କରୁଥିଲେ । ତାହା ଥିଲା ଅତ୍ୟନ୍ତ ପ୍ରଣିଧାନ ଯୋଗ୍ୟ । ବହୁ ପ୍ରତିକୂଳ ଓ ବିପଦ ସଙ୍କୁଳ ପରିସ୍ଥିତି ମଧ୍ୟରେ ବ୍ରିଟିଶ୍ ଶାସକଗୋଷ୍ଠୀର କର୍ତ୍ତୃପକ୍ଷଙ୍କ ଜ୍ଞାତସାରରେ ଭିନ୍ନ ଭିନ୍ନ କୌଶଳ ର ପନ୍ଥା ଗ୍ରହଣକରି ସେ ଏହିଭଳି ସାକ୍ଷାତ କରୁଥିଲେ । ଏହା ଥିଲା ତାଙ୍କ ପରି ଜଣେ ସାହସିକ ମଣିଷର ଏକ କ୍ରାନ୍ତିକାରୀ ପଦକ୍ଷେପ । କେବଳ ନିଜର ଆତ୍ମପ୍ରଚାରରେ ଛଳନା ରଖିନଥିବାରୁ ସେ ନିଜକୁ ନିଜ ଭିତରେ ସୀମାବଦ୍ଧ କରି ରଖିଦେଲେ । ନିଜକୁ ପ୍ରଚାର କରିବାକୁ

ଦେଲେନାହିଁ । ଫଳରେ ମୁଷ୍ଟିମେୟ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ତାଙ୍କୁ ବିବାଦୀୟ ବ୍ୟକ୍ତିଭାବେ ପ୍ରତିପାଦିତ କରିବା ପାଇଁ ସର୍ବଦା ଉଦ୍ୟମ କଲେ । କିନ୍ତୁ ଅଟଳ ଓ ଅଟଳ ବ୍ୟକ୍ତିତ୍ୱର ମଣିଷ ରାଜା ଶଙ୍କର ପ୍ରତାପ ନିଜର ନୈତିକ ସତ୍ ସାହସ ଯୋଗୁଁ ଏହାକୁ ସଂପୂର୍ଣ୍ଣ ଉପେକ୍ଷା କରୁଥିଲେ । ଏହା କାହାଣ ର ପେଡ଼ିରୁ ଡ଼ାକୁଣୀ ଖୋଲି ମଜାଗପ କହିବାର ଚାତୁରୀ ନୁହେଁ । ଏହା ଏକାନ୍ତ ସତ୍ୟ ଓ ବାସ୍ତବ କାହାଣୀ । କଳ୍ପନାରେ ରଂଗବୋଳା କଥା ନୁହେଁ ।

ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କର ରାଜା ଶଙ୍କରପ୍ରତାପଙ୍କ ପ୍ରତି ଯେପରି ସର୍ବୋଚ୍ଚ ସମ୍ମାନ ଥିଲା ସେହିପରି ପ୍ରିତପୂର୍ଣ୍ଣ ବନ୍ଧୁତ୍ୱ ଥିଲା । ତାଙ୍କୁ ସେ ଗଭୀର ବିଶ୍ୱାସ କରୁଥିଲେ । ଜବାହାରଲାଲଙ୍କର ବନ୍ଧୁତ୍ୱପୂର୍ଣ୍ଣ ସଦ୍‌ଭାବ ଯୋଗୁଁ ଉଭୟଙ୍କର ମଧରେ ଏକ ଅନ୍ତରଂଗ ସଂପର୍କ ଗଢ଼ିଉଠିଥିଲା । ମହାତ୍ମାଗାନ୍ଧୀଙ୍କ ସହିତ ସେ ଅନେକ ଥର ସାକ୍ଷାତ କରି ସ୍ୱରାଜ୍ୟ ଆନ୍ଦୋଳନ ସଂପର୍କରେ ଆଲୋଚନା କରିଥିଲେ । ଆନ୍ଦୋଳନର ରୂପରେଖ ଏବଂ ଘଟଣା ବହୁଳ ଆନ୍ଦୋଳନର ଫଳାଫଳ କିପରି ସୁଦୂର ପ୍ରସାରୀ ହେବ ତାହା ସେ ପ୍ରକାଶ କରିଥିଲେ । ଏହି ପ୍ରକାର ଆଲୋଚନା ପ୍ରସଙ୍ଗରୁ ସେ ରାଜା ଶଙ୍କରପ୍ରତାପଙ୍କ ଉପରେ କେବଳ ପ୍ରୀତ ହୋଇ ନଥିଲେ ବରଂ ଗଭୀର ଆସ୍ଥା ସ୍ଥାପନ କରିଥିଲେ । ଆତ୍ମପ୍ରଚାର ନଥିବାରୁ ଏହା ଅଜଣା ହୋଇ ଚୀରକାଳ ରହିଗଲା ।

ଗୋଟିଏ ଗଡ଼ଜାତ ରାଜ୍ୟର ରାଜା ହିସାବରେ ତାଙ୍କର ସ୍ୱାଧୀନ ମତବାଦ ଯୋଗୁଁ ସେ ଶଙ୍କରପ୍ରତାପଙ୍କୁ ଦେଶର ପ୍ରମୁଖ ବ୍ୟକ୍ତି ଭାବରେ ଗ୍ରହଣ କରିଥିଲେ । ଏହାର ସତ୍ୟତା ପ୍ରତିପାଦନ ପାଇଁ ଏକ ଘଟଣା କହୁଛି । ଅନେକ ଲୋକ ଏବେ ମଧ ବଂଚିଛନ୍ତି ଯେଉଁମାନେ ଏହି ଘଟଣା ଉଲ୍ଲେଖ ସହିତ ଓତଃପ୍ରୋତଃ ଭାବରେ ଜଡ଼ିତ ଥିଲେ । ସେମାନେ ଆଜିବି ଏହା ପ୍ରକାଶ କରିପାରିବେ । ମଣିଷ ସବୁବେଳେ ନିଜର ସ୍ୱାର୍ଥପାଇଁ ସତ୍ୟ ଘଟଣାକୁ ଲୁଚାନ୍ତି କିମ୍ବା ନିଜ ଉପରେ ମଳିଧୂଳି ନ ଲାଗିବା ପାଇଁ ମନଗଢ଼ା ଭାବରେ କାହାଣୀମାନ ମଜେଇ କରି କହିପାରନ୍ତି । ଛଳନା ଓ ଅତିରଞ୍ଜିତ କଥାକହି ନିଜର ଅସଳଢ଼ା ବ୍ୟକ୍ତିତ୍ୱକୁ ଅନ୍ୟମାନଙ୍କ ଉପରେ ଜାହିର କରନ୍ତି । ବୋଧହୁଏ ୧୯୪୨ ମସିହା କଥା । ଢେଙ୍କାନାଳରୁ ଗୋଟିଏ ଟେଲିଗ୍ରାମ ପହଞ୍ଚିଲା ମହାତ୍ମା ଗାନ୍ଧୀଙ୍କ ନିକଟରେ । ପଠାଇଥିଲେ ଜଣେ ଶିକ୍ଷିତ ଉଚ୍ଚ ବୈଶୟିକ ଜ୍ଞାନ ସଂପନ୍ନ ବ୍ୟକ୍ତି । ସେଥିରେ ଉଲ୍ଲେଖଥିଲା '' ଢେଙ୍କାନାଳର ରାଜା ଶହଶହ ପ୍ରଜାଙ୍କ ଉପରେ ଭୟଙ୍କର ଅତ୍ୟାଚାର କରି ମାରି ପକାଉଛନ୍ତି ଏବଂ ହତ୍ୟାପରେ ଶବ ଗୁଡ଼ିକୁ ବ୍ରାହ୍ମଣୀ ନଦୀକୁ ଫୋପାଡ଼ି ଭସାଇ ଦେଉଛନ୍ତି । ଲୋକ ମାନେ ପ୍ରାଣ ବିକଳରେ ଢେଙ୍କାନାଳ ଛାଡ଼ି ପଳାଉଛନ୍ତି

ବାହାରକୁ ନିଜର ଆତ୍ମରକ୍ଷା ପାଇଁ । ଆପଣ ପରାମର୍ଶ ଦେଇ ଧନ ଜୀବନ ରକ୍ଷା କରନ୍ତୁ '' । ଆଗରୁ ଢ଼େଙ୍କାନାଳର ରାଜା ଶଙ୍କରପ୍ରତାପଙ୍କ ସହିତ ମହାତ୍ମାଗାନ୍ଧୀଙ୍କର ଉଚ୍ଚକୋଟୀର ଅନ୍ତରଙ୍ଗ ଆଲୋଚନା ବେଳେ ସେ ଏକ ମହତ୍ୱ ପୂର୍ଣ୍ଣ ବ୍ୟକ୍ତିତ୍ୱର ଆତ୍ମିକ ପରିଚୟ ପାଇଥିଲେ । ତେଣୁ ଟେଲିଗ୍ରାମର ଉକ୍ତିକୁ ଏତେ ଶିଘ୍ର ବିଶ୍ୱାସ କଲେ ନାହିଁ । ମହାତ୍ମାଗାନ୍ଧୀ ସତ୍ୟର ପୂଜାରୀ । ସେ ଛଳନା କାରୀଙ୍କୁ ସହଜରେ ବାରି ନେଉଥିଲେ । ତେଣୁ ସେ ଜଣେ ସମାଜ ସେବାକାରୀ ନିର୍ଭିକ ବ୍ୟକ୍ତିତ୍ୱର ନେତାଙ୍କୁ ପଠାଇଲେ ଢ଼େଙ୍କାନାଳ ଘଟଣାର ସତ୍ୟା ସତ୍ୟ ବୁଝିବାକୁ । ସେ ଲୋକମାନଙ୍କ ସହିତ ମିଶିଲେ । ଆଲୋଚନା କଲେ । ତଥାକଥିତ ନେତା ମାନଙ୍କୁ ସାକ୍ଷାତ କଲେ । ସେମାନଙ୍କ ସହିତ ବିଚାର ଆଲୋଚନା କଲେ । ଦରବାର ଶାସନର କର୍ମକର୍ତ୍ତା ଓ ରାଜା ସାହେବଙ୍କ ସହିତ ଖୋଲାଖୋଲି ଆଲୋଚନା କରି ସତ୍ୟାସତ୍ୟ ଉପଲବ୍ଧି କରିବାପରେ ମହାତ୍ମାଗାନ୍ଧୀଙ୍କ ନିକଟକୁ ତାର କରି ଜଣାଇଲେ ଯେ ଏହା ସଂପୂର୍ଣ୍ଣ ମିଥ୍ୟା, ଉଦ୍ଦେଶ୍ୟ ମୂଳକ, କପୋଳକଳ୍ପିତ, ଭିତ୍ତିହୀନ ଏବଂ ଶେଷରେ ଟେଲିଗ୍ରାମ ପ୍ରେରକର ଆତ୍ମରକ୍ଷା ପାଇଁ ଏକ ପରିକଳ୍ପିତ କାହାଣୀ ।

ଭାରତ ବର୍ଷର ଅନ୍ୟାନ୍ୟ ଅଞ୍ଚଳରେ ବ୍ରିଟିଶ୍ ଶାସକର କବଳରୁ ସଂପୂର୍ଣ୍ଣ ମୁକ୍ତି ପାଇବାପାଇଁ ଯେଉଁ ଜନଜାଗୃତି ଦେଖାଦେଇଥିଲା ଢ଼େଙ୍କାନାଳରେ ମଧ ତାହା ଦେଖାଦେଇଥିଲା । ଏହି ଆନ୍ଦୋଳନ ରାଜାଶଙ୍କର ପ୍ରତାପଙ୍କ ବିରୁଦ୍ଧରେ ନ ହୋଇ ବରଂ ତାଙ୍କୁ ସାକ୍ଷୀ ଭାବରେ ରଖି ବ୍ରିଟିଶ୍ ବିରୁଦ୍ଧରେ କରାଯାଇଥିଲା ବୋଲି କୁହାଯାଇପାରେ । ଶ୍ରୀ ସାରଙ୍ଗଧର ଦାଶ ଜାପାନରେ Sugar Technology ପଢ଼ିବା ପାଇଁ ରାଜର୍ଷୀ ସୁରପ୍ରତାପଙ୍କ ଦରବାରରୁ ଛାତ୍ର ବୃତ୍ତି ପାଇଥିଲେ । ମାତ୍ର ପରବର୍ତ୍ତୀ କାଳରେ ସେ ବିନା ଅନୁମତିରେ ଜାପାନ ଛାଡ଼ି ଆମେରିକାକୁ ଚାଲିଯାଉଥିବାରୁ ସେତେ ବେଳର ଦରବାର ଶାସନ ତାଙ୍କର ଛାତ୍ର ବୃତ୍ତି ବନ୍ଦ କରି ଦେଇଥିଲେ । ପରେ ଆମେରିକାରୁ ଫେରି ଢ଼େଙ୍କାନାଳରେ ଗୋଟିଏ ଚିନି କାରଖାନା ଖୋଲିବା ପାଇଁ ପ୍ରସ୍ତାବ ଦେଇ ସେ ସାହାଯ୍ୟ ଚାହିଁଥିଲେ । ଏହି ପ୍ରସ୍ତାବରେ ରାଜା ଶଙ୍କର ପ୍ରତାପ ଅତ୍ୟନ୍ତ ଉତ୍ସାହିତ ହୋଇ ସମସ୍ତ ସୁବିଧା କରାଇଦେଇଥଲେ ଏବଂ ତାଙ୍କ ମା' ଓ ଜେଜେଙ୍କ ଠାରୁ ଟଙ୍କା ଧାର ବନ୍ଦୋବସ୍ତ କରାଇଦେଇଥିଲେ । କାମାକ୍ଷାନଗର ସବଡ଼ିଭିଜନର ଓଡ଼ିଶ ଗାଁ , ଆଜିର ଡ଼ମଶାଳ ନିକଟରେ ଚିନି କାରଖାନା ପ୍ରତିଷ୍ଠା ହୋଇଥିଲା । ପ୍ରଚୁର ଉର୍ବର ଜମିରେ ଆଖୁ ଚାଷ ହେଲା ଏବଂ ସେହି ଜମିରେ ଥିବା ବହୁ ମୂଲ୍ୟବାନ

କାଠ ଓ ଅନ୍ୟାନ୍ୟ ଜଙ୍ଗଲଜାତ ଦ୍ରବ୍ୟ ବିକ୍ରି କରିବାକୁ ତାଙ୍କୁ ଅନୁମତି ଦିଆଯାଇଥିଲା । ଏହି ଲବ୍ଧ ଧନ ଚିନି କଳରେ ବିନିଯୋଗ କରିବାପାଇଁ ମଧ୍ୟ ସମ୍ମତି ଦିଆଯାଇଥିଲା । ଚିନି କାରଖାନା ହେଲେ ଢେଙ୍କାନାଳର ପ୍ରସ୍ତୁତ ଚିନି ଦେଶର ଲୋକ ମାନେ ବ୍ୟବହାର କରିବେ । ଲୋକମାନେ ନିଯୁକ୍ତି ପାଇବେ । ଆଖୁଚାଷ ଦ୍ଵାରା କୃଷକ ମାନେ ଆଧୁନିକ ପ୍ରଣାଳୀ ଚାଷ ଶିକ୍ଷା କରିବେ , ଅର୍ଥ ଉପାର୍ଜନ କରିବେ ଏବଂ ଢେଙ୍କାନାଳର ସୁଖ୍ୟାତି ବଢ଼ିବ । ଏହି ଆଶା ରଖି ରାଜାଶଙ୍କର ପ୍ରତାପ ଏହାକୁ କାଳ ବିଳମ୍ବ ନକରି କାର୍ଯ୍ୟକାରୀ କରାଇବା ଦିଗରେ ସବୁ ପଦକ୍ଷେପ ନେଇଥିଲେ । କିନ୍ତୁ ବିଧିର ବିଡ଼ମ୍ବନା , ତାହା ଆରମ୍ଭରୁ ସଫଳ ହେଲାନାହିଁ ! ସମସ୍ତଙ୍କ ଉଦ୍ୟମ, ଆଗ୍ରହ, ଆଶା ଓ ଆକାଂକ୍ଷା ଚୀର ଦିନ ପାଇଁ ମଉଳି ଗଲା । ଆଖୁଗଛ - କଉଡ଼ି ବି ଗଲା ।

ସତ୍ୟଘଟଣାକୁ ତତ୍ପରତାର ସହ ଲୁଚାଇ ରଖି ନିଜର ଆତ୍ମପରିଚୟ କୁ ଛଳନାତ୍ମକ ଭାବରେ ସମୁଜ୍ଜ୍ୱଳ କରିବାପାଇଁ କିଛି ଲୋକ ମନଗଢ଼ା ଇତିହାସ ସୃଷ୍ଟି କରନ୍ତି । ଏହି ସୃଷ୍ଟି ଛଡ଼ା ଐତିହାସକାରଙ୍କୁ ସମାଜ ଅନ୍ଧ ବିଶ୍ୱାସରେ ଗ୍ରହଣ କରି ବିକୃତ ଇତିହାସକୁ ଚଳାଇନିଅନ୍ତି । ଫଳରେ ଇତିହାସ ବିକୃତ ରୂପରେ ଆତ୍ମପ୍ରକାଶ କରେ ଏବଂ ଭବିଷ୍ୟତ ଏହାର ଦୁର୍ଭାଗ୍ୟକୁ ସ୍ୱୀକାର କରିବାକୁ ସମାଜ ବାଧ । ଦେଶକୁ ସ୍ୱାଧୀନ କରିବା ପାଇଁ ଏକ ଚରମ ନିଷ୍ପତ୍ତି ଗ୍ରହଣ କରି ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କ ଐତିହାସିକ ପଳାୟନ ଏହିପରି ଏକ ଚମକପ୍ରଦ ଘଟଣା ।

ଏହିଭଳି ଘଟଣା ହେଉଛି ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କ ଅନ୍ତର୍ଦ୍ଧାନ ଏବଂ ବାଜି ରାଉତର ମୃତ୍ୟୁ । ୧୯୪୧ ମସିହା ଜାନୁଆରୀ ମାସରେ ଆମେ କଲିକତା ଯାଇଥିଲୁ । ମୁଁ ଅନ୍ତଃସତ୍ତ୍ୱା ଥିବାରୁ ମେଡ଼ିକାଲ ଚେକ୍ଅପ୍ କରାଇବା ପାଇଁ ଆମେ ରାଜା ସାହେବ , ମୋର ଦିଅଡ ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେଓ ଓ ଷ୍ଟେଟ୍ କାର ସହିତ ଢେଙ୍କାନାଳ ଷ୍ଟାଫ୍ କଲିକତାର ୬, ଏଲଗିନ୍‌ରୋଡ଼ସ୍ଥିତ ଭଡ଼ାଘରେ ରହୁଥିଲୁ । ସେତେବେଳେ ନେତାଜୀ ସୁବାଷ ଚନ୍ଦ୍ର ବୋଷ ମଧ ଏଲଗିନ୍‌ରୋଡ଼ସ୍ଥିତ ତାଙ୍କ ପାରିବାରିକ ବାସଭବନରେ ହାଉସ୍ ଆରେଷ୍ଟ ହୋଇ ଗୋଇନ୍ଦା ପୋଲିସ୍ ବିଭାଗର କଡ଼ା ପହରା ମଧ୍ୟରେ ରହୁଥିଲେ । ରାଜା ଶଙ୍କର ପ୍ରତାପ ସମୟ ସମୟରେ ନେତାଜୀଙ୍କ ସହିତ ସାକ୍ଷାତ ଆଲୋଚନା କରିବା ପାଇଁ ତାଙ୍କ ବାସଭବନକୁ ଯାଉଥିଲେ । ସେ ଜଣେ A Class ରାଜ୍ୟର ଶାସକ ହୋଇଥିବାରୁ କେତେକ ସ୍ୱତନ୍ତ୍ର ସ୍ୱାଧିକାର ପାଉଥିଲେ ଓ ଢେଙ୍କାନାଳ ଷ୍ଟେଟ୍‌ର ଲାଲ୍ ନମ୍ବର ପ୍ଲେଟ୍ ଓ ପତାକା ଥିବା ଗାଡ଼ିରେ

ଯାତାୟାତ କଲାବେଳେ ଗୋଇନ୍ଦା ପୋଲିସ୍ କୌଣସି ବାଧା ସୃଷ୍ଟି କରୁନଥିଲେ । ନେତାଜୀଙ୍କ ଅନ୍ତର୍ଦ୍ଧାନ ର ୨/୩ ଦିନ ପୂର୍ବରୁ ରାଜା ଶଙ୍କର ପ୍ରତାପ ତାଙ୍କ ସହିତ ସାକ୍ଷାତ ଆଲୋଚନା ପାଇଁ ଯାଇଥିବାର ମୁଁ ଜାଣେ । ଢ଼େଙ୍କାନାଳର ଷ୍ଟେଟ୍ କାର ନମ୍ବର ୫ ର ଚାଳକ ଢ଼େଙ୍କାନାଳ ଟାଉନ୍ ନିବାସୀ ୰ ଶ୍ରୀ କାହ୍ନୁ ଚରଣ ସିଂହ ଓ ଷ୍ଟାଫ୍ ଶ୍ରୀ ବଳଭଦ୍ର ପରିଡ଼ାଙ୍କ ହାତରେ ରାଜା ଶଙ୍କର ପ୍ରତାପ ଖଣ୍ଡିଏ ଚିଠି ନେତାଜୀଙ୍କ ପାଖକୁ ପଠାଇଥିବାର ମୁଁ ଶୁଣିଛି । ଢ଼େଙ୍କାନାଳ ଷ୍ଟେଟ୍ର ଲାଲ୍ ନମ୍ବର ପ୍ଲେଟ୍ ଓ ପତାକାଥାଇ ଗାଡ଼ି ନେତାଜୀଙ୍କ ଅନ୍ତର୍ଦ୍ଧାନରେ ସାହାଯ୍ୟ କରିଥିବାର ମଧ୍ୟ ମୁଁ ଶୁଣିଛି ; କିନ୍ତୁ ଜଣେ ବାର ବର୍ଷର ବାଳକ କୁହନ୍ତି ଯେ, ସେ କଡ଼ା ପୋଲିସ ପହରା ମଧରେ ବିନା ଲାଇସେନ୍ସରେ ନିଜେ ଗାଡ଼ି ଚଳାଇ ନେତାଜୀଙ୍କୁ ଅନ୍ତର୍ଦ୍ଧାନ କରିବାରେ ସାହାଯ୍ୟ କରିଥିଲେ ବୋଲି ।

ଘଟଣାର ବହୁଦିନ ପରେ ଅନେକ ଲୋକ ବିଗତ ଇତିହାସକୁ ଅବତାରଣା କରି ପ୍ରକାଶ କରନ୍ତି ଯେ କେବଳ ସେହି ଲୋକଙ୍କର ସାହସିକ ପଦକ୍ଷେପ ଯୋଗୁଁ ନେତାଜୀ ସୁବାଷ ଚନ୍ଦ୍ର ବୋଷ ନିର୍ବିଘ୍ନରେ ଭାରତରୁ ବ୍ରିଟିଶ୍ ଆଖିରେ ଧୂଳି ପକାଇ ଚାଲିଗଲେ । ରାଜା ଶଙ୍କର ପ୍ରତାପ ଏ ବିଷୟରେ କିଛି ମାତ୍ର ଆଭାସ ପାଇଥିଲେ । କାରଣ ଭାରତରୁ ତାଙ୍କର ପଳାୟନର ଅନ୍ତିମ ପର୍ଯ୍ୟାୟରେ ସେ ଶଙ୍କରପ୍ରତାପଙ୍କ ସହ ଆଲୋଚନା କରିଥିଲେ , ତାଙ୍କୁ ଢ଼େଙ୍କାନାଳ ଷ୍ଟେଟ୍ର ନମ୍ବର ଥାଇ ତାଙ୍କ ପତାକା ଥିବା ନିର୍ଦ୍ଦିଷ୍ଟ ଦିନ ନିର୍ଦ୍ଦିଷ୍ଟ ସମୟ ବେଳକୁ ଗାଡ଼ି ଦେବାକୁ । ଅନୁରୋଧ ଥିଲା ତାଙ୍କ ଗାଡ଼ି କେବଳ ବର୍ଦ୍ଧମାନ ରେଲ ଷ୍ଟେସନ ପର୍ଯ୍ୟନ୍ତ ଯିବ ଏବଂ ଫେରିଆସିବ । କିନ୍ତୁ କାହିଁକି ଗାଡ଼ି ଯିବ ଏବଂ କିଏ ଗାଡ଼ିରେ ଯିବ ତାହା ଗାଡ଼ିର ମାଲିକ ପଚାରିବେ ନାହିଁ । ପ୍ରସ୍ତୁତି ପର୍ବ ଚାଲିଲା ଏବଂ ଶେଷ ପର୍ଯାୟରେ କ'ଣ ହେବ ତାହା ବିଶଦ୍ ଭାବ୍‌ରେ ଜାଣି ନଥିଲେ ମଧ ଏ ସଂପର୍କରେ ଅନେକ ତଥ୍ୟ ଅନେକ କଥା ରାଜା ଶଙ୍କର ପ୍ରତାପ ଜାଣିଥିଲେ । କିନ୍ତୁ କାହାରି ଆଗରେ ପ୍ରକାଶ କରିନଥିଲେ । ସବୁଥିଲା ଉଭୟଙ୍କ ମଧ୍ୟରେ ଇଙ୍ଗିତ ଧର୍ମୀ । ପ୍ରସ୍ତୁତି ପର୍ବ ବେଳେ ରାଜାଶଙ୍କରପ୍ରତାପଙ୍କ ସହିତ ସାଧାରଣ ବିଷୟରେ ଦେଶର ଆନ୍ଦୋଳନ ସଂପର୍କରେ ନେତାଜୀ ସୁବାଷ ଚନ୍ଦ୍ର ବୋଷ ଆଲୋଚନା କରୁଥିଲେ । କେତେକ ବିଶ୍ୱସ୍ତ ଲୋକଙ୍କ ସହିତ ଆଲୋଚନା କରି ସେତେବେଳେ ନିଜକୁ ସେ ସନ୍ଦେହ ମୁକ୍ତ ରଖୁଥିଲେ । କାରଣ ବ୍ରିଟିଶ୍ ସରକାରଙ୍କ ଗୋଇନ୍ଦା ପୋଲିସ ବିସ୍ତାରିତ ଭାବରେ ଜାଲ ବିଛେଇ ଥିଲେ ସୁଭାଷ ବୋଷଙ୍କ ବିଷୟରେ ଏବଂ ତାଙ୍କର ଭବିଷ୍ୟତ କାର୍ଯ୍ୟକ୍ରମ

ସଂପର୍କରେ ଜାଣିବା ପାଇଁ । ଗୋଇନ୍ଦା ମାନେ ଏ ବିଷୟରେ କୌଣସି କଥା ଜାଣିପାରି ନଥିଲେ । କେବଳ ଏହି କାରଣ ଯୋଗୁଁ ରାଜା ଶଙ୍କର ପ୍ରତାପ ବ୍ରିଟଶ୍ ଗୋଇନ୍ଦା ପୋଲିସ୍ ଓ ଉଚ୍ଚତମ କର୍ମକର୍ତ୍ତାଙ୍କ ସନ୍ଦେହ ଜାଲରେ ପଡିଥିଲେ ଓ ତାଙ୍କ ଗତିବିଧି ଉପରେ ସତର୍କ ଦୃଷ୍ଟି ରଖାଯାଇଥିଲା । ଗୋଟିଏ'କ' ଶ୍ରେଣୀଭୁକ୍ତ ରାଜ୍ୟର ରାଜା ହିସାବରେ ତାଙ୍କର ଯେଉଁ ସ୍ୱାଧୀକାର ଥିଲା ସେଥିଯୋଗୁଁ ତୁରନ୍ତ କୌଣସି କାର୍ଯ୍ୟାନୁଷ୍ଠାନ ସେମାନେ ଗ୍ରହଣ କରିପାରୁ ନଥିଲେ । କିନ୍ତୁ ସବୁବେଳେ ଲକ୍ଷ୍ୟ ରଖୁଥିଲେ ତାଙ୍କୁ ବ୍ରିଟଶ୍ ଦ୍ରୋହୀ ରାଜା ହିସାବରେ ପ୍ରମାଣିତ କରି କଠିନ ଦଣ୍ଡ ଦେବାକୁ ଏବଂ ଗିରଫ କରିବାକୁ । ରାଜା ଶଙ୍କର ପ୍ରତାପଙ୍କ ସହିତ ନେତାଜୀ ସୁବାଷ ଚନ୍ଦ୍ର ବୋଷ ଙ୍କର ପାରିବାରିକ ସଂପର୍କ ତାଙ୍କ ବାପା ଜାନକୀ ବୋଷ ଏବଂ ରାଜର୍ଷୀ ସୁରପ୍ରତାପଙ୍କ ଅମଳରୁ ଅତି ଘନିଷ୍ଟ ଭାବରେ ଗଢିଉଠିଥିଲା । ସେତେବେଳକୁ ଜାନକୀ ବୋଷ ସୁନାମଧନ୍ୟ ବାରିଷ୍ଟର ଏବଂ ରାଜର୍ଷୀ ସୁରପ୍ରତାପଙ୍କର ବିୟୋଗ ପରେ ରାଜା ଶଙ୍କର ପ୍ରତାପଙ୍କର ଅଭିଭାବକ ମଧ ଥିଲେ । ସେମାନଙ୍କର ଅବାଧ ମିଳାମିଶା, କଥାବାର୍ତ୍ତା ଓ ଆଲୋଚନା ଅତି ଅନ୍ତରଂଗଭାବରେ ହୁଏ । ଦୁଇ ପରିବାର ମଧ୍ୟରେ ପ୍ରିୟ ପରିଜନଙ୍କର ସଂପର୍କ । ପରବର୍ତ୍ତୀ ସମୟରେ ରାଜା ଶଙ୍କର ପ୍ରତାପ କଲିକତାରେ ତାଙ୍କର ଆବଶ୍ୟକ ପଡିବାରୁ ଜାନକୀ ବୋଷଙ୍କ ପାରିବାରିକ ସତ୍ତ୍ୱରେ ଥିବା ୧୪ନମ୍ବର କାମାକ୍ ଷ୍ଟ୍ରିଟ୍ ରେ ଥିବା ଘର ସହିତ ଜମି କିଣିଥିଲେ । ଆଜି ମଧ ସେ ଘର ଓ ଜମି ଅଛି । ବାଲ୍ୟକାଳରୁ ନେତାଜୀ ସୁବାଷ ଚନ୍ଦ୍ର ବୋଷ ଓ ରାଜା ଶଙ୍କର ପ୍ରତାପଙ୍କର ଅଭିନ୍ନ ବନ୍ଧୁତ୍ୱ ଆବେଗ ପୂର୍ଣ୍ଣ ପାରିବାରିକ ସଂପର୍କ ଓ ଉଭୟଙ୍କ ଧର୍ମ ଓ କର୍ମର ସମନ୍ୱୟ ସେମାନଙ୍କୁ ନିବିଡତମ ଭାବରେ ନିକଟତର କରିଥିଲା । ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କ ନିମନ୍ତ୍ରଣରେ ସେ କଲିକତା କଂଗ୍ରେସ ଅଧିବେଶନ ବେଳେ ସୁଦୃଶ୍ୟ ଦର୍ଶକ ମଞ୍ଚରେ ଭାଇ ବନ୍ଧୁ ମାନଙ୍କ ସହିତ କଂଗ୍ରେସର ପ୍ରତ୍ୟେକ କାର୍ଯ୍ୟକ୍ରମ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଦେଖିଥିଲେ । କଂଗ୍ରେସ ଯେତେବେଳେ ବ୍ରିଟିଶ୍ ସରକାର ବିରୁଦ୍ଧରେ ସ୍ୱାଧୀନତା ପାଇଁ ଜନ ଆନ୍ଦୋଳନ ତୀବ୍ରତର ଭାବରେ ସଂଗଠିତ କରୁଛନ୍ତି ସେତେବେଳେ ଜଣେ ଦେଶୀୟରାଜା କଂଗ୍ରେସ ଅଧିବେଶନରେ ଯୋଗଦାନ କରିବା କିଛି କମ୍ କଥା ନଥିଲା । ରାଜା ଶଙ୍କର ପ୍ରତାପ ଦେଶର ସ୍ୱାଧୀନତା ସପକ୍ଷରେ ଯେଉଁ ଚିନ୍ତାଧାରା ପ୍ରକାଶ କରିଛନ୍ତି ତାହା ପଟାନ୍ତର ନାହିଁ । ନିଜକୁ ସାମାନ୍ୟ ଭାବରେ ପ୍ରକାଶିତ କରି ପାରି ଥିଲେ, ନିଜର ଚିନ୍ତାଧାରା ଅଥବା କର୍ମଯୋଜନାକୁ ନ୍ୟୁନତମ ଭାବରେ

ଅଭି ବ୍ୟକ୍ତ କରିପାରିଥିଲେ । ରାଜା ଶଙ୍କର ପ୍ରତାପ ଜଣେ ସ୍ୱଭାବସିଦ୍ଧ, ଯଶସ୍ୱୀ ଜନସ୍ୱୀକୃତ ଓ ଅଦ୍ୱୀତିୟ ବ୍ୟକ୍ତି ହିସାବରେ ସର୍ବପୂଜ୍ୟ ପ୍ରତିଷ୍ଠା ପାଇଥାନ୍ତି; କିନ୍ତୁ ନିଜକୁ ଅପ୍ରକାଶିତ ରଖିବା ଯୋଗୁଁ ଅଯଥା ପରାଭାବ ବରଣ କରିନେଇଥିଲେ ମଧ ନିଜର ଜ୍ଞାନଦୀପ୍ତ ବ୍ୟକ୍ତିତ୍ୱକୁ ବିଲିନ କରିଦେଇ ନାହାଁନ୍ତି । ଅନ୍ୟର ପରାଭାବକୁ ସେ ସ୍ୱୀକାର କରି ନାହାଁନ୍ତି । ପରାଜୟ ସ୍ୱୀକାର କରିବା ତାଙ୍କ ଜାତକରେ ନଥିଲା ।

ନିର୍ଦ୍ଦିଷ୍ଟ ଦିନରେ ନିର୍ଦ୍ଦିଷ୍ଟ ସମୟରେ ଆମ ଷ୍ଟେଟ୍‌ର ନାଲି ପ୍ଲେଟ ନମ୍ବର ଓ ପତାକା ଥିବା ଗାଡି ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ନିର୍ଦ୍ଦେଶିତ ସ୍ଥାନରେ ପହଞ୍ଚିଲା । ଡ୍ରାଇଭର ଥିଲେ ସ୍ୱର୍ଗତଃ କାହ୍ନୁ ଚରଣ ସିଂହ । ମଝି ଗଡରେ ତାଙ୍କ ଘର । ମୃତ୍ୟୁର ଅବ୍ୟବହିତ ପର୍ଯ୍ୟନ୍ତ ସେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କୁ ଆମ ଗାଡିରେ ନେଇ ବିପଦ ଶୂନ୍ୟ ଭାବରେ ପହଞ୍ଚାଇଥିବା କଥା କହିଲା ବେଳେ ଗର୍ବ  ଅନୁଭବ କରନ୍ତି । ତାଙ୍କ ମୁହଁରୁ ଅନେକ ଏ କଥାଶୁଣି ଆନନ୍ଦିତ ହୁଅନ୍ତି ଓ ଆଶ୍ଚର୍ଯ୍ୟ ବି ହୁଅନ୍ତି । ଢେଙ୍କାନାଳ ରାଜାଙ୍କ ଗାଡି ବୋଲି ଗୋଇନ୍ଦା ପୋଲିସ୍ କର୍ମକର୍ତ୍ତା ଓ ରେଳ କର୍ମଚାରୀ ବିଭିନ୍ନ ସ୍ଥାନରେ ସଜାଗ ଥାଇ ସନ୍ଦେହ କରୁଥିଲେ ମଧ ଗାଡି ତଦାରଖ କରିବାକୁ ସାହସ କରିନଥିଲେ । ଫଳରେ ନିର୍ବିଘ୍ନରେ ନେତାଜୀ ସୁବାଷ ଚନ୍ଦ୍ର ବୋଷ ତାଙ୍କର ପରିକଳ୍ପନା ଅନୁସାରେ ବ୍ରିଟିଶ୍ ସରକାରଙ୍କ ଜଲ୍ଲାଦ୍ରା ଆଖିରେ କଳା ପଟି ଚଢ଼ାଇ ଅନ୍ତର୍ଦ୍ଧାନ ହୋଇଗଲେ । ଭାରତ ବାହାରେ ପହଞ୍ଚି ଯେତେବେଳେ ଭାରତକୁ ସ୍ୱାଧୀନତା ଦେଇ ତୁରନ୍ତ ଭାରତ ଛାଡି ଯିବାକୁ ନେତାଜୀ ସୁବାଷ ଚନ୍ଦ୍ର ବୋଷ ବଜ୍ର ନିର୍ଘୋଷରେ ଆହ୍ୱାନ ଦେଲେ ସେତେବେଳେ ବ୍ରିଟେଶ ସରକାର ମରଣ ଚିତ୍କାର କଲେ । ଲାଗିପଡିଲେ ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କୁ ଧରିବା ପାଇଁ ଏବଂ ତାଙ୍କୁ ଯେଉଁମାନେ ସାମାନ୍ୟ ମାତ୍ର ସାହାଯ୍ୟ ସହଯୋଗ କରିଛନ୍ତି ସେମାନଙ୍କୁ ଘେରରେ ପକାଇ ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ । ଆତ୍ମାନୁଭୂତି, ଆତ୍ମତୃପ୍ତି ଏବଂ ଏକ ଅନାବିଳ ଆନନ୍ଦ ଅତି ତ୍ରୀବ ଭାବରେ ଅନୁଭବ କରିଥିଲେ । ରାଜା ଶଙ୍କର ପ୍ରତାପ ନେତାଜୀ ସୁବାଷ ଚନ୍ଦ୍ର ବୋଷ ଜଣେ ମହାନ ଦେଶ ଭକ୍ତଙ୍କର ପରିକଳ୍ପନାକୁ ସାମାନ୍ୟ ଭାବରେ ସାକାର ରୂପ ଦେଇଥିବାରୁ । କିନ୍ତୁ ଏହା ମଧ ପ୍ରକାଶ କଲେ ନାହିଁ କିମ୍ବା ଅନ୍ୟକୁ ସୁଯୋଗ ଦେଲେ ନାହିଁ ପ୍ରକାଶ କରିବା ପାଇଁ । ଦେଶ ଭକ୍ତ, କର୍ମବୀର, ପ୍ରତିବେଶୀ ନେତାଜୀ ସୁବାଷ ଚନ୍ଦ୍ର ବୋଷଙ୍କୁ ବନ୍ଧୁପ୍ରିତୀ ତଥା ଦେଶ ପ୍ରିତୀର ଚରମ ନିଦର୍ଶନରେ ସେ ଯେପରି ପ୍ରତିକୂଳ ପରିବେଶରେ ସାହାଯ୍ୟ ସହଯୋଗ ଦେଇ ଥିଲେ ତାହା ଯେ

ତାଙ୍କର ସ୍ୱାଧୀନ ଚେତା ବ୍ୟକ୍ତିତ୍ୱର ଅନ୍ୟ ଏକ ରୂପ ତାହା ଅସ୍ୱୀକାର କରାଯାଇ ପାରେନା ।

ଏହିପରି ଅନେକ କାରଣରୁ ବ୍ରିଟିଶ୍ ସରକାର ପ୍ରଚଣ୍ଡ ଉଦ୍ୟମ ଆରମ୍ଭ କଲେ , କଳେ ବଳେ କୌଶଳେ ରାଜା ଶଙ୍କର ପ୍ରତାପଙ୍କୁ ଅଭିଯୁକ୍ତ କରିବା ପାଇଁ । ନିଜ ଧର୍ମ, କର୍ମ, ଐତିହ୍ୟ, ସଂସ୍କୃତି ଉପରେ ତାଙ୍କର ଯେଉଁ ପ୍ରବଳ ଆତ୍ମବିଶ୍ୱାସ, ପ୍ରଜାମାନଙ୍କ ପ୍ରତି ଯେଉଁ ସ୍ନେହଶୀଳ ମନୋଭାବ, ଶାସନ ପ୍ରତି ଯେଉଁ ଉଦାର ମନୋବୃତ୍ତି, ବ୍ରିଟିଶ କର୍ମଚାରୀ ମାନଙ୍କ ପ୍ରତି ଯେଉଁ ଘୃଣା ଓ ଅବିଶ୍ୱାସ, ନିଜର ଜନ୍ମଭୂମି ଓ ଜାତୀୟତା ପ୍ରତି ତାଙ୍କର ଯେଉଁ ଗଭୀର ମମତା ଏବଂ ସର୍ବୋପରି ଜାତୀୟନେତାଙ୍କ ସହିତ ହୃଦୟଖୋଲା ସଂପର୍କ ସେଥିରେ ବ୍ରିଟିଶ ସରକାରଙ୍କ ସନ୍ଦେହର ଘେରରେ ସେଯେ ନ ରହିବେ ଏଥିରେ ସନ୍ଦେହ କେଉଁଠି ? ବ୍ରିଟିଶ ସରକାର ପ୍ରବଳ ବେଗରେ ଦୋଷ ତ୍ରୁଟି ଖୋଜି ତାହାଙ୍କୁ ଦୋଷୀ ସାବ୍ୟସ୍ତ କରିବାପାଇଁ ଶଙ୍କାକୂଳ ଚିତ୍ତରେ ପ୍ରସ୍ତୁତ ପର୍ବ ଆରମ୍ଭକଲେ । କାରଣ ଢେଙ୍କାନାଳ ଏକ 'କ' ଶ୍ରେଣୀ କରଦ ରାଜ୍ୟ । ବିଧିବଦ୍ଧ ସନନ୍ଦ ରାଜ୍ୟ । ବିଧିବଦ୍ଧ ସନନ୍ଦ ଅଛି ଯେଉଁଥିରେ କି ରାଜାଙ୍କର ସ୍ୱାଧିକାର ଉପରେ ସେମାନେ ହସ୍ତକ୍ଷେପ୍ କରିପାରିବେ ନାହିଁ ।

ତୀର୍ଥସ୍ଥାନ ଭ୍ରମଣ, ଦିଅଁଦେବତା ପୂଜନ ଏବଂ ଯାଗଯଜ୍ଞର ଆଶୁ ପରିଣତିରେ ଆମ୍ଭେ ନିଃସନ୍ଦେହରେ ଭଗବାନଙ୍କ କରୁଣା ପ୍ରାପ୍ତ ହେଲୁ ବିବାହର ଦୀର୍ଘ ୧୬ ବର୍ଷ ପରେ । ଈଶ୍ୱରଭକ୍ତ, ନିଷ୍ଠାପର ଭାବରେ ଈଶ୍ୱରଚିନ୍ତନ, ଦାନଧର୍ମ ଆଦି ଆମର ବ୍ୟର୍ଥ ଯାଇନାହିଁ । ଆମ ଧର୍ମ ଆମକୁ ରକ୍ଷା କରିଛି । କିନ୍ତୁ ଏଥିପାଇଁ ଆମକୁ ବହୁ ମାନସିକ ଏବଂ ଶାରିରୀକ କଷ୍ଟ ଓ ନିର୍ଯାତନା ଭୋଗ କରିବାକୁ ପଡିଥିଲା । ବିବାହର ୧୬ବର୍ଷପରେ ୬.୮.୧୯୪୧ ମସିହା ଗହ୍ମାପୂର୍ଣ୍ଣୀମା ଦିନ ମା' କାମରୂପ କାମାକ୍ଷୀ ଓ ରାମଚଣ୍ଡିଙ୍କୁ ବିଧି ବିଧାନ ପୂର୍ବକ ପୂଜା ଅନୁଷ୍ଠାନ ଦେବାପରେ ତାଙ୍କ ଆଜ୍ଞାମାଳ ପାଇ ପ୍ରଥମ ସୁଯୋଗ୍ୟ ସନ୍ତାନ ଶ୍ରୀମାନ କାମାକ୍ଷା ପ୍ରସାଦ ଆମର କୋଳ ମଣ୍ଡନ କଲେ ।

ରାଜା ଶଙ୍କରପ୍ରତାପ ବିବାହର ଆରମ୍ଭରୁ ୩/୪ ବର୍ଷ ଧରି ପ୍ରଶାସନ ଦିଗରେ ମନ ଦେଇଥିଲେ । ଉପଯୁକ୍ତ ଶିକ୍ଷାଦୀକ୍ଷା ଥାଇ ଦକ୍ଷତା ଥିବା ଗୁଣଗ୍ରାହୀ ପ୍ରଶାସକଙ୍କୁ ନିଯୁକ୍ତି ଦେଇ ଶାସନ ପରିଚାଳନା କରୁଥିଲେ । ସେମାନଙ୍କୁ କଠୋର ଭାବରେ ତାଲିମ ଓ ସଂପୂର୍ଣ୍ଣ ମାନସ ସଂସାଧନ ବିକାଶ ଦିଗରେ ଶିକ୍ଷା ଦେଇ ସେମାନଙ୍କ ମନରେ ଆତ୍ମବିଶ୍ୱାସ ସୃଷ୍ଟି କରିଥିଲେ ଯେ ସେମାନେ ପ୍ରତ୍ୟେକ ସମୟରେ,

ପ୍ରତ୍ୟେକ କ୍ଷେତ୍ରରେ ଓ ପ୍ରତ୍ୟେକ ସ୍ତରରେ ଉଚିତ ଓ ନ୍ୟାୟ ଶାସନ ଦେବେ । ସେମାନଙ୍କ ଉପରେ ବିଶ୍ୱାସ କରି ଆମେ ଯେତେବେଳେ ତୀର୍ଥ ପର୍ଯ୍ୟଟନରେ ଯାଉ ସେତେବେଳେ ଏମାନଙ୍କ ମଧ୍ୟରୁ କେତେକ ପ୍ରତିକ୍ରିୟାଶୀଳ ବ୍ୟକ୍ତିଙ୍କ ସହିତ ମିଶି ନଜାଣିଲା ପରି କିଛି ମାତ୍ରାଧିକ ଶକ୍ତି କାର୍ଯ୍ୟ କରିବସିଲେ । ନିଜର ସ୍ୱାର୍ଥ ପାଇଁ ଓ ସୁବିଧା ପାଇଁ ବେଠୀ, ମାଗଣ, ରସଦ ସଂଗ୍ରହ କରି ନିଜର ଦୌଲତ ବଢ଼ାଇବାକୁ ଲାଗିଲେ । ଏହାର କୁପ୍ରଭାବ ଅନ୍ୟ କାହାଠାରେ ପଡ଼ିଲାନାହିଁ । ପଡ଼ିଲା ରାଜା ବା ମୁଖ୍ୟ ଶାସକଙ୍କ ଉପରେ । ସାଧାରଣତଃ କୌଣସି ଯୋଗୀ, ଭିକାରୀ ବା ଅତିଥି ଓ ରାଜ କର୍ମଚାରୀ ଗାଁ ମାନଙ୍କରେ ପହଞ୍ଚିଲେ ଗ୍ରାମବାସୀମାନେ ଚିରାଚରିତ ପ୍ରଥା ବା ପରମ୍ପରା ଅନୁସାରେ ଯଥାସମ୍ଭବ ଅତିଥିସତ୍କାର କରନ୍ତି । ଢେଙ୍କାନାଳର ଏହାଥିଲା ଏକ ସାଧାରଣ ଧର୍ମ । କିନ୍ତୁ ଏହିଭଳି ଏକ ମାନବିକ ଧର୍ମ ଓ ମହାନ୍ କାର୍ଯ୍ୟ ଏକଦା ସ୍ୱାର୍ଥପର କର୍ମଚାରୀ ମାନଙ୍କ ଦ୍ୱାରା ଜୁଲମରେ ପରିଣତ ହେଲା । ଏହାର ବିଷକ୍ରିୟା କରୁଥିବା ଲୋକଙ୍କ ଉପରେ ନପଡ଼ି ପଡ଼ିଲା ଆମ ଉପରେ । ଏହା ଥିଲା ସ୍ୱାଭାବିକ ପରିଣତି । ଏହି ପ୍ରକାର ଦୋଷ ଦୁର୍ବଳତା ଯାହା ଘଟିଯାଉଥିଲା ତାହା ଆମଙ୍କୁ ସଂପୂର୍ଣ୍ଣ ଅଗୋଚର ରହୁଥିଲା । ସ୍ୱାର୍ଥପର ଗୋଷ୍ଠୀର ରିପୋର୍ଟ ପହଞ୍ଚୁଥିଲା ଏବଂ ସମସ୍ତ କିଛି କାର୍ଯ୍ୟକ୍ରମ ସୁସ୍ଥ ଭାବରେ ସଂପନ୍ନ ହେଉଛି ବୋଲି ସମସ୍ତେ ଏକ ସ୍ୱରରେ କହୁଥିଲେ ।

ସରଳ ବିଶ୍ୱାସୀ, ଉଦାରମନା ରାଜାଶଙ୍କର ପ୍ରତାପ ସମସ୍ତଙ୍କ ସବୁକଥାକୁ ସହଜରେ ବିଶ୍ୱାସ କରିଯାନ୍ତି । ତେଣୁ ଦୋଷ ତ୍ରୁଟି କିଛି ଧରିପାରିଲେ ନାହିଁ । କୌଣସି ଦମ୍ପତି ରାଜା ହୁଅନ୍ତୁ କିମ୍ବା ପ୍ରଜା ହୁଅନ୍ତି ସନ୍ତାନ କୋଳକୁ ନଆସିଲେ ସେମାନଙ୍କ ମନରେ ଅଶେଷ ଦୁଃଖ ଆସେ । ସଂସାର ପ୍ରତି ବିତୃଷ୍ଣା ଆସେ । ଜୀବନ ଅସାର ଲାଗେ । ଆମ ଜୀବନର ଏକ ସମୟରେ ଏହି ଅବସ୍ଥା ଅତି ତୀବ୍ର ଭାବରେ ଆସିଥିଲା । ସେ ଦିନର ବିଶାଦ ଆମ ଜୀବନରେ କିପରି ଶୂନ୍ୟତା ସୃଷ୍ଟି କରିଥିଲା ତାହା ଆଜି ଭାବିଲେ ଏକ ବିସ୍ମୟ ବିସ୍ମୃତ ଭାବ ମନକୁ ଆଛନ୍ନ କରେ ।

ସେ ସମୟରେ ଏଭଳି ଏକ ଚରମ ବିତୃଷ୍ଣା ଆସିଥିଲା ଯେଉଁଥିରେ କି ଆମେ ଏକ ପ୍ରକାର ଠିକ କରି ନେଇଥିଲୁ ହିମାଳୟର ପାଦଦେଶରେ ଏକ ନିର୍ଜନ ସ୍ଥାନରେ ଐଶ୍ୱରିକ ଚିନ୍ତାର ଏକ ଛୋଟ ଆଶ୍ରମ ମଧ୍ୟରେ ଶାନ୍ତିର ଜୀବନଯାପନ କରିବାକୁ । କିପରି ଓ କାହିଁକି ଏହାର ଆବଶ୍ୟକତା ଅନୁଭବ କରାଗଲା ଏକ ନିର୍ଜନ ବେଳାରେ ତାହାର ରୂପରେଖ ରାଜା ଶଙ୍କରପ୍ରତାପ ନିଜ ହାତରେ ଏକ ଟିପ୍ପଣୀ ପ୍ରସ୍ତୁତ କରିଥିଲେ ।

ତାଙ୍କର ଏହି ଟିପ୍ପଣୀଟି Annexure ରେ ପ୍ରଦତ୍ତ ହେଲା । ତାଙ୍କ ଅନ୍ତରାତ୍ମାର ଦିବ୍ୟମୂର୍ତ୍ତି ଏଇଥିରୁ ଉପଲବ୍ଧ କରିହୁଏ । ମୋଟାମୋଟି ଭାବରେ ଆଭ୍ୟନ୍ତରୀଣ ପରିସ୍ଥିତି ତାଙ୍କ ମନରେ ସଂସାରିକ ଉପଲବ୍ଧି ଜୀବନରୁ ଏବଂ ପ୍ରଶାସନ କାର୍ଯ୍ୟରୁ ଏକ ନିବୃତ୍ତିର ମନୋଭାବ ସୃଷ୍ଟି କରିଥିଲା । ରାଜ ସଂପଦର ପ୍ରାଚୁର୍ଯ୍ୟ ତାଙ୍କୁ ଉଦ୍‌ବେଳିତ କରିନଥିଲା କିମ୍ବା ଦୀନ ହୀନ ମନୋବୃତ୍ତି ତାଙ୍କୁ ସ୍ପର୍ଶ କରିନଥିଲା । ନିଜସ୍ୱ ଗର୍ବ ଗୌରବର ଏକ ମଣିଷ ସତ୍ତା ତାଙ୍କର ସଦ୍‌ଭାବନାର ବଳୟ ଭିତରେ ତାଙ୍କୁ ଏପରି ଅବସ୍ଥାପିତ କରିଥିଲା ଯେଉଁଥିରେ କି ସେଦିନର ଏକ ଅମୃତମୟ ସଂସାରର ପରିକଳ୍ପନା କରୁଥିଲେ । ଆଭ୍ୟନ୍ତରୀଣ ପରିସ୍ଥିତି ବିଷାଦମୟ ଥିଲା ଏବଂ ଶାସନ ଗତ ଅସନ୍ତୋଷ ମଧ୍ୟ ତାର ସ୍ୱରୂପ ପ୍ରକାଶ କରୁଥିଲା । ଏତିକିବେଳେ ୧୯୪୧ ମସିହା ବେଳକୁ କାମାକ୍ଷା ପ୍ରସାଦର ଜନ୍ମ । ରାଜା ଶଙ୍କରପ୍ରତାପଙ୍କ ମନରେ ବିପୁଳ ଆନନ୍ଦ ସୃଷ୍ଟି କଲା ଏବଂ ସମସ୍ତ କ୍ଷେତ୍ରରେ ଶାନ୍ତିର ଜୀବନ ପାଇଁ ଏକ ମୁକାବିଲା ମୂଳକ ପଦକ୍ଷେପ ନେବା ସକାଶେ ସେ ନିଷ୍ପତ୍ତି ନେଲେ ।

ତାଙ୍କ ଅନୁପସ୍ଥିତି ବେଳେ ପ୍ରଜାମାନଙ୍କ ମଧ୍ୟରେ ଅନାବଶ୍ୟକ ବେଠୀ, ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ରସଦ ସଂଗ୍ରହ ଓ ମାଗଣ ଆଦି ଯେଉଁ କେତେକ ଅନ୍ୟାୟ ପଦକ୍ଷେପ କେତେକ ସ୍ୱାର୍ଥପର ବ୍ୟକ୍ତି ବିଶେଷ ବା କର୍ମଚାରୀ ରାଜାଙ୍କ ନାମରେ ଚତୁରତାର ସହିତ ପ୍ରଚଳନ କରି ଅରାଜକତା ସୃଷ୍ଟି କରୁଥିଲେ ସେମାନଙ୍କ ବିରୁଦ୍ଧରେ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ । ଏପରିକି ସେମାନଙ୍କ ମଧ୍ୟରୁ କେତେକଙ୍କୁ କାର୍ଯ୍ୟରୁ ଅନ୍ତର ମଧ୍ୟ କରାଗଲା । ବିଶ୍ୱାସରେ ବିଷ ଦେଇ ଯେଉଁମାନେ ଢେଙ୍କାନାଳକୁ ସର୍ବାଙ୍ଗ ସୁନ୍ଦର କରିବା ଦିଗରେ ଅନ୍ତରାୟ ହୋଇଥିଲେ ସେମାନଙ୍କୁ କାର୍ଯ୍ୟ ପରିସର ମଧ୍ୟରୁ ଦୂରେଇଦେଲେ । ନିଜେ ନିଷ୍ପତ୍ତି ନେଲେ ଆଉ କୌଣସି କ୍ଷେତ୍ରରେ ଅନ୍ୟ ଉପରେ ନିର୍ଭର ନକରି ନିଜେ ପ୍ରାଣପ୍ରିୟ ଢେଙ୍କାନାଳ ମାଟିର ଗୌରବଶ୍ରୀ ଫେରାଇ ଆଣିବେ ଜୀବନର ଅଫୁରନ୍ତ ସେବାଦେଇ ।

ସେତେବେଳକୁ ଭାରତର ମୁକ୍ତି ସଂଗ୍ରାମ ପ୍ରବଳରୁ ପ୍ରବଳତର ରୂପଧାରଣ କରିଥାଏ । ୭୦ କୋଟି ଦେଶବାସୀ କେବଳ ସତ୍ୟ ଓ ଅହିଂସାକୁ ପାଥେୟ କରି ବହୁ ଆଗ୍ନେୟାସ୍ତ୍ର ଓ ଶାରିରୀକ ତଥା ଆର୍ଥିକ ବଳରେ ବଳୀୟାନ ବ୍ରିଟିଶ୍ ସରକାରଙ୍କ ସହିତ ଚରମ ମୁକାବିଲା କରୁଥାନ୍ତି ଧୈର୍ଯ୍ୟ ର ସହିତ ଶୃଙ୍ଖଳିତ ଭାବରେ । ବ୍ରିଟିଶ୍ ସରକାର

ଲକ୍ଷ୍ୟରଖିଥାନ୍ତି ଦେଶୀୟ ରାଜା ମହାରାଜା ଙ୍କ ମଧ୍ୟରେ ଓ ଜାତି ଜାତି ବା ଧର୍ମ ଧର୍ମ ମଧ୍ୟରେ ବିଭେଦ ସୃଷ୍ଟିକରି ନିଜର ଶାସନ କ୍ଷମତାକୁ ଚିରଦିନ ପାଇଁ ବଜାୟ ରଖିବାକୁ । ସେହିପରି ଜନ ଆନ୍ଦୋଳନ ମାଧ୍ୟମରେ ଦେଶବାସୀ ନିରସ୍ତ୍ର ହେଲେ ହେଁ ଲକ୍ଷ୍ୟ ରଖଥାନ୍ତି ଯେମିତି ହେଲେ ଚିରଦିନ ପାଇଁ ବ୍ରିଟିଶ ଶକ୍ତିକୁ ଏ ଦେଶରୁ ତଡ଼ିବା ପାଇଁ ।

ରାଜା ଶଙ୍କର ପ୍ରତାପ ମୂଳରୁ ଥିଲେ ବ୍ରିଟିଶ ବିଦ୍ୱେଷୀ । ଏ ଦେଶର ଜଣେ ସାଧୁ, ଗୁଣୀ ଲୋକ ଯଦି ସ୍ୱାଧୀନତାର ମୂଲ୍ୟ ବୁଝେ, ବିଦେଶୀ ଶାସନର ଯନ୍ତ୍ରଣା ଯଦି ଉପଲବ୍ଧି କରେ ଏବଂ ମା' ମାଟିର ମୁକ୍ତିପାଇଁ ଯଦି ଆତ୍ମବିଭୋର ଚିତ୍ତରେ ବାସ୍ତବ ସ୍ୱପ୍ନଦେଖେ ତେବେ ସ୍ୱଭାବସିଦ୍ଧ, ସାହସୀ, ସ୍ୱାଧୀନତାପ୍ରିୟ, ପାରମ୍ପରିକ, ଯୁଦ୍ଧଜୟୀ, ଆତ୍ମବିଶ୍ୱାସୀ, ସଚ୍ଚରିତ୍ର ଜ୍ଞାନୀ ଓ ଅଭିମାନୀ ରାଜା ଶଙ୍କରପ୍ରତାପଙ୍କ ପକ୍ଷରେ ଦେଶମୁକ୍ତି ଆନ୍ଦୋଳନ ପ୍ରତ୍ୟକ୍ଷରେ ବା ପରୋକ୍ଷରେ କେତେ ବେଶୀଥିଲା ତାହା ସେତେବେଳର ପରିସ୍ଥିତି ଓ ଘଟଣାବହୁଳ ଇତିହାସ ଯେ ଏ ସବୁରେ ଗୌରବମୟ ମୂଲ୍ୟାଙ୍କନ କରିଛି ଏଥିରେ ସନ୍ଦେହ ନାହିଁ । କିନ୍ତୁ ନିଜ ଢୋଲ ନିଜେ ନପିଟିବା କାରଣରୁ ଏହି ଦେଶଭକ୍ତ ସୁଯୋଗ୍ୟ ସନ୍ତାନର କୀର୍ତ୍ତିମୟ କାହାଣୀ ପଥର ତଳେ ଢ଼ାଙ୍କି ହୋଇ ରହିଗଲା । ଯାହା ନକରିଛନ୍ତି, ଯାହା ନକହିଛନ୍ତି, ଯାହା ନଚିନ୍ତିଛନ୍ତି ତାହା ଖଳ ପ୍ରକୃତିର ବ୍ୟକ୍ତି ବିଶେଷଙ୍କ ଦ୍ୱାରା ଅତିରଂଜିତ ହୋଇ ପ୍ରକାଶ ପାଇଥିଲା ।

ବ୍ରିଟିଶ ସରକାର ବିଭିନ୍ନ ସୂତ୍ରରୁ ସଂଗୃହୀତ ତଥ୍ୟ ବଳରେ ଏକ ନିଃସନ୍ଦେହ ନିଷ୍ପତ୍ତି ନେଲେ ଯେ ଢେଙ୍କାନାଳ ରାଜା ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପଳାୟନରେ ଓତଃପ୍ରୋତଃ ଭାବରେ ଜଡ଼ିତ ଅଛନ୍ତି ଏବଂ ଦେଶର ମୁକ୍ତିସଂଗ୍ରାମୀ ବିଶିଷ୍ଟ ଜନନାୟକଙ୍କ ସହିତ ତାଙ୍କର ପ୍ରଚ୍ଛନ୍ନ ଯୋଗାଯୋଗ ରହିଛି , ତେଣୁ ଦଣ୍ଡନୀୟ । ଏହିପରି ଅଭିଯୋଗ ଆଣି ସାମୟିକଭାବରେ ଢେଙ୍କାନାଳର ଶାସନ ଦାୟିତ୍ୱ ରାଜା ଶଙ୍କରପ୍ରତାପଙ୍କ ଠାରୁ ନେଇ ବ୍ରିଟିଶ ଶାସନର ୩ ଜଣ କର୍ମଚାରୀ ବିଶିଷ୍ଟ ଏକ କମିଟି ହାତରେ ଅର୍ପଣ କଲେ ନିର୍ଦ୍ଦିଷ୍ଟ ଲକ୍ଷ୍ୟରଖି । ତାହାହେଲା ରାଜାଙ୍କ ବିରୁଦ୍ଧରେ ଯେମିତି ହେଲେ ଗୁରୁତର ଅଭିଯୋଗପତ୍ର ପ୍ରସ୍ତୁତ କରାଯିବ । ଏଥିରେ ମୁଖ୍ୟ ଥିଲେ ଶ୍ରୀ ଶ୍ରୀବାସ୍ତବ, ଟି. ସତ୍ୟନାରାୟଣ ଓ ଶ୍ରୀ ତ୍ରିବେଦୀ । ଏମାନେ କାହାକୁ ଚାକିରୀ ଦେଇ, ଅର୍ଥଦେଇ, ଉପାଧିଦେଇ, ଜେଲ ଧମକ ଦେଇ ଓ ଅନ୍ୟାନ୍ୟ ସୁବିଧା ସୁଯୋଗ ଦେଇ ରାଜାଙ୍କ ବିରୁଦ୍ଧରେ ସାକ୍ଷ୍ୟ ପ୍ରମାଣ ସହ ଅଭିଯୋଗ ପତ୍ର ପ୍ରସ୍ତୁତ କରିବାକୁ ଲାଗିଲେ । ଏହା ସହିତ ସୁବିଧା ସୁଯୋଗ ଦେଖି ଦୁଇ ହାତରେ ପ୍ରଚୁର ଅନ୍ୟାୟ ଅର୍ଥ ସଂଗ୍ରହ

କରିବାକୁ ମଧ ଭୁଲିଲେ ନାହିଁ । ଢ଼େଙ୍କାନାଳ ରାଜାଙ୍କ ପାଖରେ ଯେଉଁମାନେ ଚାକିରୀ କରି ନିଜର ଦୌଲତ ବଢ଼ାଇଥିଲେ ସେମାନେ ବହୁ ମନଗଢ଼ା କାହାଣୀ ପ୍ରସ୍ତୁତ କରି ତାଙ୍କ ବିରୁଦ୍ଧରେ ଅନର୍ଗଳ ଭାଷ୍ୟ ଦେଲେ । ରାଜାଙ୍କ ବିରୁଦ୍ଧରେ କହି କେହି କେହି ଚାକିରୀବି ପାଇଲେ । ଏସବୁ ପ୍ରତ୍ୟକ୍ଷ କରି ଢ଼େଙ୍କାନାଳର ତଥାକଥିତ ସ୍ୱାର୍ଥନ୍ୱେଷୀ ବ୍ୟକ୍ତିବିଶେଷ ଆପଣାକୁ ନେତା ବୋଲି ପରିଚୟ ଦେଉଥିବା ବେଳେ ବଡ଼ ଆମ୍‌ସୁଖ ଅନୁଭବ କରୁଥାନ୍ତି । ଢ଼େଙ୍କାନାଳ ରାଜା ଶଙ୍କରପ୍ରତାପ ବ୍ରିଟିଶ ସରକାରଙ୍କ କୋପରେ ପଡ଼ି ରାଜ୍ୟ ସର୍ବସ୍ୱ ହରାଇଛନ୍ତି ବୋଲି ସେମାନେ କହୁଥାନ୍ତି ଓ ଆମ୍‌ତୃପ୍ତି ପାଉଥାନ୍ତି । କିନ୍ତୁ ଏହା ଯେ ଗଭୀର ଦେଶପ୍ରୀତିର ପରିଚାୟକ ତାହା ଏମାନେ ବୁଝିପାରୁନଥାନ୍ତି । ବ୍ରିଟିଶ ସରକାର ଯେଉଁ ନିଷ୍ପତ୍ତି ବଳରେ ଏହି ଅଭିଯୋଗପତ୍ର ପ୍ରସ୍ତୁତ କରୁଛନ୍ତି ତାହାର ପୃଷ୍ଠଭୂଇଁ ଏକ ନିଚ୍ଛକ ସ୍ୱଦେଶୀ ବସ୍ତ୍ଳତା ଏବଂ ଜନସାଧାରଣଙ୍କ ଗଣ ଆନ୍ଦୋଳନର ଅନ୍ୟ ଏକ ନିଗୂଢ଼ ବିଷୟ ବସ୍ତୁ ତାହା ଏମାନଙ୍କର ଉପଲବ୍ଧି କରିବାର କ୍ଷମତା ନଥିଲା । ଏହା ବ୍ୟତୀତ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ନିଯୁକ୍ତ ଏହି ତିନିଜଣ ସଦସ୍ୟଙ୍କ ଉତ୍ପାତ ମଧ୍ୟ କମ୍ ନଥିଲା । ଏମାନଙ୍କର ଦୌରାମ୍ୟ ଅମ୍ଳାନ ବଦନରେ ଗ୍ରହଣ କରୁଥିଲେ ତଥା କଥିତ ଏହି ସ୍ୱାର୍ଥପର ଗୋଷ୍ଠୀ । ବୃହତ୍ତର ସ୍ୱାର୍ଥପ୍ରତି ସେମାନଙ୍କର ଥିଲା ଘୋର ଉଦାସୀନତା ।

ରାଜା ଶଙ୍କରପ୍ରତାପ ନିଜର ଆମ୍ ବଡ଼ିମା ନେଇ ଚିତ୍‌କାର କରନ୍ତି ନାହିଁ । କିନ୍ତୁ ସେ ଥିଲେ ନୀରବ ଓ ନିର୍ଭୀକ ବିପ୍ଳବୀ । ନିଶ୍ଚିତ ମନରେ ବ୍ରିଟିଶ୍‌ମାନଙ୍କର ଏକତରଫା ଓ ଅନ୍ୟାୟ ଜୁଲମ ସେ ମାନି ନେଲେ ନାହିଁ । ଏହା ବିରୁଦ୍ଧରେ ସେ ସର୍ବୋଚ୍ଚ କର୍ତ୍ତୃପକ୍ଷଙ୍କ ନିକଟରେ ନିଜର ନିରପେକ୍ଷ, ନିର୍ଭୀକ ଓ ଯୁକ୍ତିସଂଗତ ପ୍ରତିବାଦ କଲେ, ବିଚାର ପରେ ନିଷ୍ପତ୍ତି ପାଇବାକୁ । ଏହା ବିଚାର ହେବା ପୂର୍ବରୁ ଢ଼େଙ୍କାନାଳରେ କୋକୁଆ ଭୟ ସୃଷ୍ଟି ହୋଇଥାଏ ।

ରାଜା ଶଙ୍କର ପ୍ରତାପଙ୍କ ବିରୁଦ୍ଧରେ ଘଟଣା, ଦୁର୍ଘଟଣା ଓ ଅନ୍ୟାନ୍ୟ ଅସଂଗତ କର୍ମମାନ ଖୋଜା ଚାଲିଥାଏ । ବିଶେଷ କିଛି ମିଳୁନଥାଏ । ବ୍ରିଟିଶ୍ ସରକାରଙ୍କ ଦୁର୍ନାମ ହେବ ତେଣୁ ତାଙ୍କ ବିରୁଦ୍ଧରେ ଯେମିତି ହେଲେ ଅଭିଯୋଗପତ୍ର ତିଆରି କରିବାକୁ ହେବ । ଜନ୍ମରେ, ଶିକ୍ଷାରେ ଓ ଦିକ୍ଷାରେ ଭାରତୀୟ ହେଲେ ମଧ ଏହି ୩ଜଣ କର୍ମଚାରୀ ବ୍ରିଟିଶ ସରକାରଙ୍କର ଦରମା ଟଙ୍କାରେ ଲୁଣ ଖାଉଛନ୍ତି । ନିମକହାରାମ ହେବେ ନାହିଁ । ତେଣୁ ଅନ୍ଧାରରେ ବାଡ଼ି ବୁଲାଇବା ପରି ଯେଉଁଠି ପାରେ ସେଇଠି, ଯେତେବେଳେ ପାରେ ସେତେବେଳେ ଏବଂ ଯାହାକୁ ପାରି ତାହାକୁ ଧରି

ଆଣି ଛବରଦସ୍ତ ରାଜାଙ୍କ ବିରୁଦ୍ଧରେ ମିଥ୍ୟା କାହାଣୀ ସଂଗ୍ରହ କରିବାକୁ ଉଦ୍ୟମ କରୁଥିଲେ । ହିତାହିତ ଜ୍ଞାନ ରହିଲା ନାହିଁ । ଆଇନ କାନୁନ ପ୍ରତି ଆଖି ବୁଜି ଦିଆଗଲା । ଧମକ ଚମକରେ ରାଜ୍ୟ ପ୍ରକମ୍ପିତ ହେଲା ।

ରାଜ୍ୟ ଶାସନର ଅନ୍ୟତମ ବରିଷ୍ଠ କର୍ମକର୍ତ୍ତା ତଥା ରାଜାଙ୍କ ତୃତୀୟ ଭାଇ ନିନି ସାହେବଙ୍କୁ ଅପ୍ରସଂଗିକ କାରଣ ଦର୍ଶାଇ ରାଜାଙ୍କ ବିରୁଦ୍ଧରେ ଦୋଷ ତ୍ରୁଟି ସହ ବିରୋଧ କରିବାକୁ ବାଧ କରାଗଲା । ବିରୋଧ ଆଗତ ଅଭିଯୋଗ ସଂପୂର୍ଣ୍ଣ ଅଭିସନ୍ଧିମୂଳକ, ଭିତ୍ତିହୀନ, ଏବଂ ଅସତ୍ୟ ଥିବାରୁ ନିନି ସାହେବ ରୋକ୍ଠୋକ୍ ମନା କରିଦେଲେ । ତେବେ ତାଙ୍କୁ ବ୍ରିଟିଶ୍ ସରକାରଙ୍କ ନିର୍ଦ୍ଦେଶରେ ଅତି ନିଷ୍ଠୁର ଭାବରେ ବନ୍ଦୀ କରାଗଲା । ସେହିପରି ୧୯୪୦ ମସିହାରୁ ଚାକିରୀରୁ ଇସ୍ତଫା ଦେଇ ଅବସର ପ୍ରାପ୍ତ ରାଜ କର୍ମଚାରୀ ଶ୍ରୀ ନନ୍ଦକିଶୋର ରାୟ ରାଜାଙ୍କ ବିରୁଦ୍ଧରେ ମନଗଢ଼ା କାହାଣୀ ନକହିବାରୁ ତାଙ୍କୁ ଅମାନୁଷିକ ଭାବରେ ନିର୍ଯ୍ୟାତନା ଦେଇ ବନ୍ଦୀ କରାଗଲା ।

ବ୍ରିଟିଶ ସରକାରଙ୍କ ସ୍ୱାର୍ଥ ସପକ୍ଷରେ ସ୍ୱର ଉତ୍ତୋଳନ କରିନଥିବା ବ୍ୟକ୍ତିମାନଙ୍କୁ ଯେପରି ବ୍ରିଟିଶ ସରକାରଙ୍କ ଏଜେଣ୍ଟମାନେ ଆଇନ୍ କାନୁନ୍ ପ୍ରତି ଆଖିବୁଜି ଅରାଜକତାର ନିଦର୍ଶନ ଦେଇ ଅମାନୁଷିକ ଦଣ୍ଡବିଧାନ କଲେ ଏବଂ ସେହି ବ୍ୟକ୍ତି ମାନେ ଏହି ଦଣ୍ଡ ବିଧାନକୁ ଯେପରି ଗ୍ରହଣ କଲେ ତାହା ସେମାନଙ୍କ ଦେଶସେବାର ଗର୍ବ ଓ ଗୌରବର ପ୍ରତୀକ ଛଡ଼ା ଆଉ କ'ଣ ହୋଇପାରେ ? ସେମାନଙ୍କ ପ୍ରତି ବ୍ରିଟିଶ ସରକାରଙ୍କ ଏଜେଣ୍ଟ ମାନେ ନିଷ୍ଠୁରତା ଆଚରଣ କରିଥିଲେ ହେଁ ମିଥ୍ୟା, ପ୍ରବଞ୍ଚନା, ଅନ୍ୟାୟ ଓ ଅନୀତି ଆଗରେ ମୁଣ୍ଡ ନୁଆଁଇ ନଥିଲେ କିମ୍ୱା ଅନ୍ୟମାନଙ୍କ ପରି ବିଦେଶୀ ଶକ୍ତିର ପଦ ଲେହନ କରିନଥିଲେ ।

ରାଜାଙ୍କର ଅନ୍ୟତମ ଭାଇ ଟିକି ସାହେବ ଗ୍ରହଶାନ୍ତି ପାଇଁ ଯାଉଁଳି ପୋଖରୀ ମଠ ପ୍ରାଙ୍ଗଣରେ ବଗଳାଖୀ ପୂଜାକରୁଥିବା ବେଳେ ତାଙ୍କ ନାମରେ ଅଭିଯୋଗ ଅଣାଗଲା ଯେ ବ୍ରିଟିଶ ସରକାର ଓ ତାଙ୍କ ନିଯୁକ୍ତ ଏଜେଣ୍ଟମାନଙ୍କୁ ଶେଷ କରି ଦେବା ପାଇଁ ସେ ତନ୍ତ୍ର ପୂଜା କରୁଛନ୍ତି । ଶୁଣିର ସାକ୍ଷୀ ମାତାଲ ନ୍ୟାୟରେ ଏହା ସତବୋଲି କହିବାକୁ ଅର୍ଥବିନିମୟରେ ସାକ୍ଷୀ ମଧ ବାହାରି ପଡ଼ିଲେ । କିନ୍ତୁ ତାଙ୍କୁ ବନ୍ଦୀ କରିବା ବେଳକୁ ସେ ଢେଙ୍କାନାଳ ଛାଡ଼ି ବିଭିନ୍ନ ବାଟରେ କାଶ୍ମୀର ଚାଲିଗଲେ ଗୋପନରେ । ତଥାପି ତାଙ୍କୁ ଧରି ବନ୍ଦୀର ନିର୍ଯ୍ୟାତନା ଦେବାପାଇଁ ସକ୍ରିୟ ଉଦ୍ୟମ ଚାଲିଲା । ସଫଳ କିନ୍ତୁ ହେଲେ ନାହିଁ ।

ରାଜାଙ୍କ ବିରୁଦ୍ଧରେ ଗୋଟିକ ପରେ ଗୋଟିଏ ଅଭିଯୋଗ ତିଆରି ଚାଲୁଥାଏ ତାହା ଗୋପନରେ ପ୍ରସ୍ତୁତ ହେଉଥିବାରୁ କ'ଣ କ'ଣ ସଂଗ୍ରହ ହେଉଛି ତାହା ଜଣା ପଡୁ ନଥାଏ । ଏହା ହେଲେ ମଧ୍ୟ ଖୁବ୍ ଶୀଘ୍ର କିଛି ଗୁରୁ ବିପଦ ଆମ ଉପରକୁ ଆସୁଛି ତାହାର ଆଭାସ ସ୍ପଷ୍ଟ ଭାବରେ ଆମ୍ଭେ ଅନୁଭବ କରୁଥାଉଁ । ଏପରିକି ମୋ ବିରୁଦ୍ଧରେ ଏକ ଅଭିଯୋଗ ଆମେ ଢେଙ୍କାନାଳରୁ ବୌଦ ଦେଇ ପାଟନା ଗଲାବେଳେ ଶୁଣିଲୁଯେ ମୁଁ କିରୋସିନ ବେପାର କରି ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରିଛି । ବ୍ରିଟିଶ ସରକାର କିମ୍ବା ତାଙ୍କର କୃତହୀନ ଓ ଦିଗନ୍ତହୀନ ଗୋଲାମ ମାନଙ୍କ ପକ୍ଷରେ ଏହି ଭଳି ନିଚସ୍ତରର ଅଭିଯୋଗ ଆଣିବା ସେତେବେଳର ପ୍ରତିକୂଳ ପରିସ୍ଥିତିରେ ଅସମ୍ଭବ ନଥିଲା । ମୋର କିରୋସିନ ବେପାର କଥା ଶୁଣିବା ବେଳେ ଘୃଣାରେ ମୋ ମନ ଓ ଦେହ ବିଷାକ୍ତ ହୋଇ ଉଠିଲା । ମୋତେ ଆଉ କିଛି ମିଳିଲା ନାହିଁ ଯେ, ମୁଁ କିରୋସିନ ବେପାର କରୁଥିଲି ? ଏ ମିଥ୍ୟା ଅଭିଯୋଗ କିପରି ଉଦ୍ଭୂତ ହେଲା ? କ'ଣ ନଥିଲା ? ରାଜ୍ୟ ଥିଲା, ଶାସନ ଥିଲା, କ୍ଷମତା ଥିଲା, ସଂପତ୍ତି ଥିଲା, ପ୍ରତିପତ୍ତି ଥିଲା । ଏବଂ ସର୍ବୋପରି ଥିଲା ବଂଶ ମର୍ଯ୍ୟାଦା, ବଂଶ ପରମ୍ପରା, ଜ୍ଞାନଗାରିମା ଓ ବୁଦ୍ଧିମତ୍ତା । ସେ ସବୁକୁ ପାଦରେ ଦଳି କିରୋସିନ ବେପାର ଦ୍ବାରା ମୋର କିପରି ଗୌରବ ବୃଦ୍ଧିହେବ ତାହା ମୁଁ ବୁଝିପାରୁ ନଥିଲି । କିଂକର୍ତ୍ତବ୍ୟବିମୂଢ଼ ହୋଇ ମୁଁ ସେତେବେଳେ ଭାଙ୍ଗିପଡିଥିଲି । ଢେଙ୍କାନାଳ ପରି ଏକ ରାଜ୍ୟରେ ଶ୍ରେଷ୍ଠ ଶାସକ ପରିବାରର ହୋଇ ଆମ୍ଭେମାନେ ଯେପରି ନିର୍ଯ୍ୟାତିତ ହୋଇଛୁ, ଯେପରି ଦୁଃଖକଷ୍ଟ ଭୋଗିଛୁ, ଅବାଞ୍ଛିତ ଓ ନୀଚ ପ୍ରକୃତି ର ଲୋକମାନଙ୍କର ସନ୍ଦେହର ଘେରରେ ପଡି ଆମେ ଯେପରି ଯାତନା ପାଇଛୁ, ଅମୂଳକ ଓ ଅନ୍ୟାୟ ପ୍ରଚାରରେ ଆମ୍ଭମାନଙ୍କୁ ଯେପରି ଅପଦସ୍ଥ କରାଯାଇଛି ତାହା କେବଳ ବ୍ରିଟିଶ ସରକାର ଓ ତାଙ୍କ ଏଜେଣ୍ଟ ସର୍ବସ୍ୱ କର୍ମକର୍ତ୍ତାମାନଙ୍କୁ ଅସ୍ୱୀକାର ବା ଅବଜ୍ଞା କରାଯାଇଥିବା କାରଣ ଯୋଗୁଁ ହେଉଥିଲା । ଏଥିରେ ଆଦୌ ସନ୍ଦେହ ନଥିଲା । ସ୍ୱଦେଶପ୍ରୀତି, ସ୍ୱଦେଶ ଭାବନା ଏବଂ ନିଜଦେଶର ସଂସ୍କୃତି, ଐତିହ୍ୟ ଓ ଦେଶର ସକଳ ବୈଭବର ଉତ୍କର୍ଷତା ପ୍ରତିପାଦନ ପାଇଁ ଆମର ଯେଉଁ ଐକାନ୍ତିକ ପ୍ରଚେଷ୍ଟା ତାହାର ମୂଲ୍ୟାୟନ ସେହି ସମୟରେ କିମ୍ବା ପରେ କେତେବେଳେ ହେଲେ କରାଗଲା ନାହିଁ । ବରଂ ଅନ୍ତର୍ଦାହରେ ଆମ୍ଭମାନଙ୍କ ପ୍ରତି ଅନ୍ୟାୟ ଆଚରଣ କରାଗଲା । ଏହି ମାଟିରେ ଜନ୍ମ ଲାଭକରି ଏବଂ ଏହି ମାଟିର ପାଣିପବନରେ ଜୀବନ ଗଢ଼ି ଆମ୍ଭମାନଙ୍କ ମନରେ

ଦେଶପ୍ରୀତି ବା ସ୍ୱଦେଶୀ ଭାବନା ନଥିଲା ବୋଲି ଯେଉଁମାନେ କହନ୍ତି ସେମାନଙ୍କର ଉକ୍ତି ଅକ୍ଷମଣୀୟ, ଅପରାଧ କରି ନୀତିନିୟମ ବହିର୍ଭୂତ କାର୍ଯ୍ୟକରି ସେମାନଙ୍କର କର୍ମ ଯୋଗୁଁ ଦଣ୍ଡିତ ହୋଇଥିଲେହେଁ ପରବର୍ତ୍ତୀ ସମୟରେ ଅପକୀର୍ତ୍ତି ମୂଳକ ଦଣ୍ଡକୁ ପ୍ରଶଂସା ପତ୍ର ମନେ କରି ସ୍ୱାଧୀନତା ସଂଗ୍ରାମୀ ଭତ୍ତା ଓ ତତ୍‌ସହିତ ଅନେକ ସୁବିଧା ସୁଯୋଗ ପାଇଲେ । ଏବେ ମଧ ପାଉଛନ୍ତି । ଏ ସଂପର୍କରେ ପ୍ରବଞ୍ଚନା ମୂଳକ ଇତିହାସର ଆଧାର ଏହି ଯେଉଁ ତଥାକଥିତ ନେତା କେତେଜଣ ଅପକୀର୍ତ୍ତି ମୂଳକ ଅପରାଧକୁ ପ୍ରଶଂସା ପତ୍ର ହିସାବରେ ସୁପାରିଶ କଲେ । ଏଥି ପାଇଁ ସେମାନେ ବେଶ କିଛି ଅନ୍ୟାୟ ପାଉଣା ସେମାନଙ୍କ ଠାରୁ ଆଦାୟ କଲେ । ଏହା କୁଆଡ଼େ ନେତା ମାନଙ୍କର ସ୍ୱଦେଶ ପ୍ରୀତି, ସ୍ୱଦେଶ ଭାବନା ଆତ୍ମତ୍ୟାଗ ଏବଂ ପରୋପକାର । ଆଜି ଏହାକୁ ତର୍ଜମା କରି ଏକାନ୍ତ ଗୋପନର ସତ୍ୟ କଥା ପ୍ରକାଶ ପାଏ । କିନ୍ତୁ ସତ୍ୟ ଉପରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ କେହି ସାହସ କଲେ ନାହିଁ । ସତ୍ୟର ସ୍ୱରୂପ ଆଜି ପଦାକୁ ଆସିଲେ ହେଁ ପ୍ରତିକ୍ରିୟା କିଛି ଜଣା ପଡ଼ିଲା ନାହିଁ । କାରଣ ପ୍ରତାରଣ ମୂଳକ ଅଭିନୟରେ ସେମାନେ ଭେଳିକି ଲଗାଇ ଲୋକ ମାନଙ୍କୁ ଭୁଲାଇ ଦେଇ ପାରନ୍ତି ଅତିବିଚକ୍ଷଣ ଭାବରେ । ମୋର କିରୋସିନ ବେପାର କଥା କପୋଳକଳ୍ପିତ ଓ ମିଥ୍ୟା ବୋଲି ମୋ ଭାଇ ବଲାଙ୍ଗୀରି ମହାରାଜା ସ୍ୱର୍ଗତଃ ରାଜେନ୍ଦ୍ର ନାରାୟଣ ସିଂହଦେଓ ଜାଣିବା ପାରେ ସେତେବେଳର କର୍ତ୍ତୃପକ୍ଷଙ୍କ ପାଖରେ ଅତି ଭଦ୍ର ଅଥଚ କଠୋର ଭାବରେ ଏକଥା ଉପସ୍ଥାପନ କଲେ ଏବଂ ଢେଙ୍କାନାଳର ଏଜେଣ୍ଟମାନଙ୍କ କାର୍ଯ୍ୟ କଳାପ ସଂପର୍କ ରେ ତିବ୍ର ସମାଲୋଚନା କରି ତୁରନ୍ତ ପ୍ରତିକାର ଲୋଡ଼ିଲେ । ମୋ ବିରୁଦ୍ଧରେ ଆଗତ କିରୋସିନ ବେପାର ଅଭିଯୋଗ ଆବଶ୍ୟ ଉଠାଇ ନିଆଗଲା ।

ଦାରିଦ୍ର୍ୟ ସବୁ ଅଞ୍ଚଳରେ ଲୋକମାନଙ୍କୁ ଅତ୍ୟନ୍ତ ଦୁର୍ବଳ କରିଥିଲା । କେବଳ ଧନୀ ଓ ଅଗ୍ରଗାମୀ ପରିବାରକୁ ଛାଡି ଦେଲେ ସାର୍ବଜନୀନ ଶିକ୍ଷା ଠାରୁ ଜନସାଧାରଣ ବହୁ ଦୂରରେ ରହୁଥିଲେ । ବ୍ରିଟିଶ ଏଜେଣ୍ଟମାନଙ୍କ ଜରିଆରେ ଶାସନ ନାମ ଢେଙ୍କାନାଳରେ ଯେଉଁ ଆତଙ୍କରାଜ ସୃଷ୍ଟି କରାଗଲା ଏବଂ ତାହା ସହିତ ରାଜପରିବାର ତଥା ଅନ୍ୟମାନଙ୍କ ନାମରେ ଯେଉଁ ଅନ୍ୟାୟ ଓ ଅମୂଳକ ଅଭିଯୋଗମାନ ସୃଷ୍ଟି କରାଗଲା, ସେଥିରେ ଅତ୍ୟନ୍ତ ମର୍ମାହତ ହୋଇ ତୁରନ୍ତ ସମାଧାନ ସକାଶେ ରାଜା ଶଙ୍କର ପ୍ରତାପ ବ୍ରିଟିଶ କର୍ତ୍ତୃପକ୍ଷଙ୍କୁ ଚରମ ପତ୍ର ଦେଲେ । ଏଥି ସହିତ ସଂପୃକ୍ତ ଉଚ୍ଚ କର୍ମ କର୍ତ୍ତା ତଥା ଭାଇସରାୟଙ୍କୁ ଭେଟି ନିର୍ଭୟ ଚିତ୍ତରେ ଆଲୋଚନା କଲେ

ଓ ଠୋକ୍‌ଠୋକ୍ ଭାବରେ ନିଷ୍ପତ୍ତି ଲୋଡ଼ିଲେ । ସେ ନିଶ୍ଚୟ ଅତ୍ୟନ୍ତ ଧୀର ଓ ସ୍ଥିର, କିନ୍ତୁ ଏହି ଘଟଣାରେ ସେ ଗାମ୍ଭୀର୍ଯ୍ୟପୂର୍ଣ୍ଣ ମୂର୍ତ୍ତି ଧାରଣ ପୂର୍ବକ ବ୍ରିଟିସ କର୍ତ୍ତୃପକ୍ଷଙ୍କ ସହିତ ମୁକାବିଲା କରିଥିଲେ । ସେତେବେଳର ଆଇନ୍‌କୁ ତର୍ଜମା କରି ନିଜର ସ୍ୱାଭିମାନକୁ ରକ୍ଷାକରି ସେ ବ୍ରିଟିଶ୍ କର୍ତ୍ତୃପକ୍ଷଙ୍କ କୂଟନୀତିର ଜାଲରୁ ମୁକ୍ତି ପାଇଲେ ଏବଂ ନିଜ ରାଜ୍ୟ ଶାସନ ଦାୟିତ୍ୱ ସମ୍ମାନର ସହିତ ନେଇପାରିଲେ । ରାଜାଶଙ୍କରପ୍ରତାପଙ୍କ ନିକଟରେ ବ୍ରିଟିଶ୍ ଶକ୍ତି ପରାଜୟ ସ୍ୱୀକାର କଲା । ମାତ୍ରାଧିକ କାର୍ଯ୍ୟ କରିଥିବା ତିନିଜଣ ଏଜେଣ୍ଟ କାକୁସ୍ଥ ହୋଇ ଗୋଡ଼ତଳେ ପଡ଼ି କ୍ଷମାଭିକ୍ଷା କରିଥିଲେ ଅତି ଭୟାତୁର ଭାବରେ । ହୁଏତ ସେମାନେ ଯେପରି ଘୃଣ୍ୟ କାର୍ଯ୍ୟ କରି ନିନ୍ଦିତ ହୋଇଥିଲେ ତାଙ୍କ ଉପରେ ସେହିପରି ଅନୁରୂପ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ବୋଲି ସେ ଭାବି ତରବରରେ ପଳାଇ ଯିବାକୁ ସେମାନଙ୍କୁ ତର ସହିନଥିଲା । କିନ୍ତୁ ସେମାନଙ୍କ ପ୍ରତି ରାଜାଙ୍କର ତିଳେହେଲେ ଅସୂୟା ଭାବ ନଥିଲା । କାରଣ ସେମାନେ ବ୍ରିଟିଶ୍ ସରକାରଙ୍କ ଇଙ୍ଗୀତରେ ପରିଚାଳିତ ହୋଇ ଏହି ପ୍ରକାର ନୀଚ ଓ ଘୃଣ୍ୟକାର୍ଯ୍ୟଦ୍ୱାରା ଅମଲାତାନ୍ତ୍ରିକ ପ୍ରଶଂସା ଅର୍ଜନ ପାଇଁ ଚେଷ୍ଟା ମାତ୍ର କରି ଥିଲେ, ସେମାନଙ୍କର ଗୋଲାମୀ ମନୋବୃତ୍ତି ଭିତରେ ବିବେକାନୁମୋଦିତ ଚିନ୍ତାଧାରା ଆଦୌ ନଥିଲା ବୋଲି ପରବର୍ତ୍ତୀ ସମୟରେ ସମସ୍ତେ କ୍ଷୋଭ ପ୍ରକାଶ କରିଥିଲେ ।

୧୯୪୨ ଓ ତା' ପୂର୍ବରୁ କିଛି ଉଲ୍ଲେଖଯୋଗ୍ୟ ଘଟଣା ଯେପରି ଅନ୍ଧକାରରେ ରଖାଯାଇ ବିକୃତ ଭାବରେ ଅତିରଞ୍ଜିତ କରି କୁହାଯାଇଛି , ତାହାର ସାଞ୍ଜଳ ଆଲୋଚନା ଏଠାରେ ଏକାନ୍ତ ଆବଶ୍ୟକ କେବଳ ଐତିହାସିକ ସତ୍ୟର ପରିପ୍ରକାଶ ପାଇଁ । ଦେଶୀୟ ରାଜା ମହାରାଜାମାନେ ନିଜ ରାଜ୍ୟଶାସନ ନେଇ ସାର୍ବଭୌମ କ୍ଷମତା ପାଇଥିଲେ ମଧ ବ୍ରିଟିଶ୍ ସରକାର 'ସୂର୍ଯ୍ୟାସ୍ତ ଆଇନ୍' ବୋଲି ଏକ ଅମୋଘ ଆଇନ୍ ସେମାନଙ୍କ ସନନ୍ଦର Clause-6 ରେଖାଙ୍କିଥିଲେ ରାଜା ମହାରାଜା ମାନଙ୍କୁ ଯେ କୌଣସି ସମୟରେ ଯେ କୌଣସି କ୍ଷେତ୍ରରେ ବିନିଯୋଗ କରି ଜବତ କରିବା ପାଇଁ । ଆଭନ୍ତରୀଣ ଶାନ୍ତି ଶୃଙ୍ଖଳା ରକ୍ଷା ନାମରେ ସେମାନେ ଯଦି କୌଣସି ରାଜା ମହାରାଜାଙ୍କ ଶାସନାଧୀନ ରାଜ୍ୟ ଭିତରକୁ ଆସୁଥିଲେ ନିଜର ସୈନ୍ୟ ସାମନ୍ତଙ୍କୁ ନେଇ , ସେତେବେଳେ କେବଳ ସେମାନଙ୍କର କ୍ଷମତାହିଁ ସ୍ୱୀକୃତ ହେଉଥିଲା । ରାଜା ମହାରାଜାମାନଙ୍କର ସେମାନଙ୍କ ରହିବା ସମୟ ଭିତରେ କୌଣସି କର୍ତ୍ତୃତ୍ୱ ରହୁନଥିଲା । ସନନ୍ଦ ଚୁକ୍ତି ଅନୁସାରେ କେବଳ ଦୈନନ୍ଦିନ ଶାସନ କାର୍ଯ୍ୟ

ବ୍ୟତୀତ ରାଜନୀତିକ କାର୍ଯ୍ୟକ୍ରମ ଓ ଆଭ୍ୟନ୍ତରୀଣ ଶାନ୍ତି ଶୃଙ୍ଖଳା ସେମାନଙ୍କ ହାତକୁ ଚାଲିଯାଉଥିଲା । ତେବେ ରାଜା ମହାରାଜା ମାନେ ବ୍ରିଟିଶ କର୍ତ୍ତୃପକ୍ଷଙ୍କର ଗତିବିଧି ଏବଂ ମାତ୍ରାଧିକ କାର୍ଯ୍ୟ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ । ସ୍ୱାଧୀନତା ପାଇଁ ସେତେବେଳକୁ ଜନଆନ୍ଦୋଳନ ତୀବ୍ରତର ହୋଇ ଉଠୁଥିଲା । ସେତେବେଳେ ବ୍ରିଟିଶ୍ ସରକାର ଏହାକୁ ନିଜର ସ୍ୱାର୍ଥପାଇଁ ଦମନ କରିବାକୁ ସବୁ ପ୍ରକାର ପ୍ରୟାସ କରୁଥାନ୍ତି । ସେମାନଙ୍କର ସିଧାସଳଖ ଶାସିତ ଅଞ୍ଚଳରେ ଦମନମୂଳକ କାର୍ଯ୍ୟ ସେପରି ସଫଳ ହେଉ ନଥାଏ । ଯେତିକି ଯେତିକି କଠୋର ଓ ଅକଥନୀୟ କାର୍ଯ୍ୟାନୁଷ୍ଠାନ ଚାଲୁଥାଏ, ସେତିକି ସେତିକି ମୁକାବିଲା ମୂଳକ ଜନଚେତନା ବୃଦ୍ଧି ପାଉଥାଏ । ତେଣୁ ଦେଶର କେତେକ ଦେଶୀୟ ରାଜ୍ୟରେ ଏହି ଭଳି ଦମନମୂଳକ କାର୍ଯ୍ୟାନୁଷ୍ଠାନ ଗ୍ରହଣକରି ବ୍ରିଟିଶ୍ କର୍ତ୍ତୃପକ୍ଷ ତାଙ୍କର ଉଦ୍ଦେଶ୍ୟ ହାସଲ କରିବା ପାଇଁ ଉଦ୍ୟମ କଲେ । ଢେଙ୍କାନାଳ ରାଜାଙ୍କର ନେତୃବର୍ଗଙ୍କ ସହିତ ସଂପର୍କ ଥିବାରୁ ଓ ପ୍ରଜାମଣ୍ଡଳ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମ ଆରମ୍ଭ କରିଥିବାରୁ ଢେଙ୍କାନାଳର ଦାୟିତ୍ୱ ବ୍ରିଟିଶ୍ ସରକାରଙ୍କ ନିର୍ଦ୍ଦେଶ ଅନୁସାରେ ସ୍ଥାନୀୟ ରେସିଡ଼େଣ୍ଟ ଓ ପଲିଟିକାଲ ଏଜେଣ୍ଟ ଗ୍ରହଣ କଲେ, ଜନ ଆନ୍ଦୋଳନକୁ ଦମନ କରିବାପାଇଁ । ଦରବାର ଶାସନ କେବେହେଲେ ନିଜଆଡୁ ଅନୁରୋଧ କରି ନଥିଲେ । ରେସିଡ଼େଣ୍ଟ୍ ଓ ପଲିଟିକାଲ ଏଜେଣ୍ଟ ଆସି ଦମନ ମୂଳକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନ୍ତି ବୋଲି ଢେଙ୍କାନାଳ ଆନ୍ଦୋଳନରେ ଯେଉଁ ମାନେ ପୁରୋଭାଗରେ ଥିଲେ ସେମାନଙ୍କ ମଧ୍ୟରୁ ଅନେକ ସମୟ ଦେଖି ନିଜଆଡୁ ସ୍ୱତଃ ପ୍ରବୃତ ଭାବରେ ଆସି ରାଜା ଶଙ୍କରପ୍ରତାପ ଏବଂ ଦରବାର ଶାସନର କର୍ମକର୍ତ୍ତା ମାନଙ୍କ ସହିତ ଆଲୋଚନା କରୁଥିଲେ । ପ୍ରଜା ଆନ୍ଦୋଳନର ରୂପରେଖ ଉପରେ ଖବର ଦେଉଥିଲେ । ଏକତ୍ର ବସି ଖିଆ ପିଆ କରୁଥିଲେ । ଖେଳା ଖେଳି କରୁଥିଲେ । ଶ୍ରୀ ହରମୋହନ ପଟ୍ଟନାୟକ ରାଜାଙ୍କ ସାନଭାଇ ଟିକି ସାହେବ ଓ ସାନ ସାହେବଙ୍କର ବ୍ୟକ୍ତିଗତ ବନ୍ଧୁ ଥିଲେ ଏବଂ ଟିକି ସାହେବଙ୍କର ସହପାଠୀଥିଲେ । ସେମାନଙ୍କର ବନ୍ଧୁତ୍ୱ ଏକାନ୍ତ ଭାବରେ ଅଭିନ୍ନ ଥିଲା । ସେମାନେ ମିଳିମିଶି କିଛି ବ୍ୟବସାୟ କରିବାକୁ ଉଦ୍ୟମ କରିଥିଲେ କଲିକତା ଓ ଢେଙ୍କାନାଳରେ । ଶ୍ରୀ ବୈଷ୍ଣବ ଚରଣ ପଟ୍ଟନାୟକଙ୍କ ଭାଇ ସ୍ୱର୍ଗତଃ ଭକ୍ତଚରଣ ପଟ୍ଟନାୟକ ଦରବାର ଶାସନରେ ଚାକିରୀ କରୁଥିଲେ । ବୈଷ୍ଣବ ବାବୁ ଆନ୍ଦୋଳନରେ ଲିପ୍ତ ହେବା ଯୋଗୁଁ ତାଙ୍କ ଭାଇ ଚାକିରୀ ଛାଡ଼ିବାକୁ ଚାହିଁଲେ କାଳେ ତାଙ୍କ ଜୀବନରେ ଶାସନକାର୍ଯ୍ୟରେ ଅବିଶ୍ୱାସ କିମ୍ବା ଅପ୍ରିତୀକର ପରିସ୍ଥିତି

ଉପୁଜିବ ବୋଲି । ରାଜା ସାହେବ ସୁନ୍ଦର ଏବଂ ସାବଲୀଳ ଭାବରେ ଭକ୍ତ ବାବୁଙ୍କୁ ବୁଝାଇ ଏଥିରୁ ନିବୃତ୍ତ କରିଥିଲେ । ଏହାଦ୍ୱାରା ତାଙ୍କର ଉଦାରପୂର୍ଣ୍ଣ ବ୍ୟକ୍ତିତ୍ୱର ପରିଚୟ ସେ ନିଜେ ଦେଇଥିଲେ କିନାହିଁ ତାହା ଉପଲବ୍ଧି କରିବା ପୂର୍ବରୁ ଭକ୍ତବାବୁ ନିଜେ କୃତଜ୍ଞତାରେ ଆବଦ୍ଧ ହୋଇ ଏକ ବିରାଟ ଐଶ୍ୱରିକ ପ୍ରକୃତିର ମଣିଷଙ୍କ ପ୍ରଭାବରେ ପ୍ରଭାବିତ ହୋଇଥିଲେ । ରାଜା ଶଙ୍କରପ୍ରତାପ ଶ୍ରଦ୍ଧାପୂର୍ଣ୍ଣ ଭାବରେ କହିଥିଲେ- ବୈଷ୍ଣବ ବାବୁ ତାଙ୍କର ବୁଦ୍ଧିବିବେକ ଖଟାଇ ତାଙ୍କ କାର୍ଯ୍ୟ ତାଙ୍କ ବାଟରେ କରୁଛନ୍ତି ଏବଂ ତମେ ତମ ବାଟରେ ତମ କାର୍ଯ୍ୟ କରିବ ତମ ବୁଦ୍ଧି ଓ ବିବେକ ଖଟାଇ । ପରିଶ୍ରମ କରି ତମେ ତମର ପରିବାର ପ୍ରତିପୋଷଣ କରୁଛ ଯାହା ତମର ଧର୍ମ ଓ କର୍ମ ପରିବାର ପ୍ରତି ଏଥିପାଇଁ କାହାର କିଛି ବ୍ୟସ୍ତ ହେବାରନାହିଁ ।

ନିନି ସାହେବ, ଟିକି ସାହେବ, ସାନ ସାହେବ, କବି ତଥା କମ୍ୟୁନିଷ୍ଟ ନେତା ଅନନ୍ତ ପଟ୍ଟନାୟକ ଓ ଅନ୍ୟତମ ବିପ୍ଳବୀ ରାମଚନ୍ଦ୍ର ରାମ ପ୍ରମୁଖ ଲଳିତା, ରୋଲସ୍ ୨୮ ଓ ସପ୍ତଶଯ୍ୟା ନାମରେ ତିନିଗୋଟି ଚଳଚ୍ଚିତ୍ର ନିର୍ମାଣ କରିଥିଲେ । ସାମାଜିକ ଓ ସାଂସ୍କୃତିକ ଚେତନାରେ ସାମ୍ୟତା ନଥିଲେ ଏବଂ ମନରେ ବଡ଼ ସାନ ଭେଦ ନେଇ ସାମାନ୍ୟ ମାତ୍ର ଭିନ୍ନତା ଥିଲେ ଏହିପରି କାର୍ଯ୍ୟକ୍ରମ ସେମାନେ କରି ପାରିନଥାନ୍ତେ ।

ରେସିଡେ଼ଣ୍ଟ ଓ ପଲିଟିକାଲ ଏଜେଣ୍ଟଙ୍କ ଅଧୀନରେ ଥିବା ପୋଲିସ ଫୋର୍ସ ଗଡ଼ଜାତମାନଙ୍କୁ ଆସିଲେ କେବଳ ଏହି ଉଦ୍ଦେଶ୍ୟ ନେଇ ଯେ ପୋଲିସ କାର୍ଯ୍ୟାନୁଷ୍ଠାନ ମାଧ୍ୟମରେ ନିଜ ଶାସନକୁ ଏ ଦେଶରେ ବଜାୟ ରଖିବେ କିନ୍ତୁ ବିଦେଶୀ ଶାସନର ଦିନକାଳ ଯେ ଶେଷ ହୋଇ ଆସୁଛି ତାହା ସ୍ପଷ୍ଟ ଭାବରେ ସେତେବେଳକୁ ଜଣା ପଡ଼ିଗଲାଣି । ତେଣୁ ହିଂସ୍ର ବ୍ୟାଘ୍ର ପରି ବ୍ରିଟିଶ୍ କର୍ତ୍ତୃପକ୍ଷ ତାଙ୍କ ଶେଷ ପର୍ଯ୍ୟାୟରେ ଅସ୍ଥିର ଚିତ୍ତରେ ଫଳାଫଳ ପ୍ରତି ଦୃଷ୍ଟି ନ ରଖି ସୀମାତୀତ ଦମନକାରୀ କାର୍ଯ୍ୟ କରୁଥାନ୍ତି ନିର୍ଦ୍ଦେଶ ଅନୁସାରେ । ଅସହ୍ୟ ବୋଧ କରୁଥାନ୍ତି ରାଜା ଶଙ୍କରପ୍ରତାପ । ସେତେବେଳେ ସେ ନିରୁପାୟ । କିନ୍ତୁ ସଂକଳ୍ପ କଲେ କୌଣସି ବାଟରେ ସେ ଲୋକମାନଙ୍କୁ ସାହାଯ୍ୟ କରିବେ । ଯେଉଁ ଅଞ୍ଚଳକୁ ବ୍ରିଟିଶ୍ ସୈନ୍ୟ ରୋଡ଼ ମାର୍ଚ୍ଚ କରିବାକୁ ଯାଆନ୍ତି କିମ୍ବା ଗ୍ରାମ ତଦାରଖ କରିବାକୁ ଯାଆନ୍ତି ରାଜା ସାହେବ ନିଜେ ଆଗରୁ ସେ ଅଞ୍ଚଳକୁ ଖବର ପଠାଇ ଦିଅନ୍ତି ଏବଂ ଲିଖିତ ଆକାରରେ ବ୍ରିଟିଶ୍ ସୈନ୍ୟଙ୍କୁ ଯିବାପାଇଁ ମନାକରନ୍ତି । ସାବଧାନ କରାଇ ଦିଅନ୍ତି ସ୍ତ୍ରୀଲୋକ ଓ

ପିଲାଛୁଆମାନଙ୍କୁ ନିରାପଦ ସ୍ଥାନରେ ରଖାଇ ଦେବାକୁ । ସେତେବେଳର ପରିସ୍ଥିତିରେ ପାରିବାରିକ ସମ୍ମାନ ଅନ୍ୟ ଜାତୀୟ ବା ବିଦେଶୀ ଦଲାଲମାନଙ୍କ ଦ୍ୱାରା ଭୂଲୁଣ୍ଠିତ ନହେଉ ଏହାହିଁ ଥିଲା ତାଙ୍କର ଉଦ୍ଦେଶ୍ୟ । ଏପରିକି ସେ ନିଜ ଆଡୁ ଏକ ବ୍ୟବସ୍ଥା କରି ଅନେକ ସମ୍ମାନୀତ ପରିବାର ଓ ବହୁ ସାଧାରଣ ପରିବାରଙ୍କୁ ସମ୍ମାନହାନିକର ପରିସ୍ଥିତିରୁ ରକ୍ଷାକରିଛନ୍ତି । ଏହା ଆଜି ଅସ୍ୱୀକାର କରାଯାଇ ପାରିବ ନାହିଁ । ସେ ସେତେବେଳେ ତୁରନ୍ତ ଘୋଷଣା କଲେ ଯେ ଦରବାର ଶାସନ ପ୍ରତି ଅନୁରକ୍ତ ପ୍ରକାଶ କରି ଚୁକ୍ତି ପତ୍ର ଲେଖି ଦେଲେ ବ୍ରିଟିଶ୍ ସୈନ୍ୟଙ୍କ ନିର୍ଯ୍ୟାତନାରୁ ରକ୍ଷା ମିଳିବ । ଏହା କେବଳ କରାଗଲା ଅସହ୍ୟ ନିର୍ଯ୍ୟାତନାରୁ ଲୋକମାନଙ୍କୁ ରକ୍ଷା କରିବା ପାଇଁ । ଏହାଦ୍ୱାରା ଅନେକ ଲୋକ ରକ୍ଷା ପାଇଥିଲେ ଏବଂ ନିଜର ସମ୍ମାନ ମଧ ବଞ୍ଚାଉଥିଲେ । ବ୍ରିଟିଶ୍ ସୈନ୍ୟ ଲୋକମାନଙ୍କୁ ଧରି ଆଣିବା ପାଇଁ ଯେତେବେଳେ ତାଲିକା କରୁଥିଲେ କିମ୍ବା ଗ୍ରାମଗୁଡ଼ିକର ତାଲିକା କରୁଥିଲେ ଫ୍ଲାଗ୍ ମାର୍ଚ୍ଚ କରିବା ପାଇଁ, ସେମାନଙ୍କୁ କୁହାଯାଉଥିଲା ଯେ ସେମାନେ ଗଣ୍ଡଗୋଳକାରୀ ନୁହଁନ୍ତି ଏବଂ ସେମାନେ କାହାରି ପ୍ରତି ଅନିଷ୍ଟ କରନ୍ତି ନାହିଁ । ପ୍ରାୟତଃ ରାଜାଙ୍କ କଥାରେ ସେମାନଙ୍କୁ ଛାଡ଼ି ଦେଉଥିଲେ କିମ୍ବା ସେମାନଙ୍କୁ ଆଦୌ ଆଣୁ ନଥିଲେ ଅଥବା ସେ ଗ୍ରାମ ଗୁଡ଼ିକୁ ଫ୍ଲାଗ ମାର୍ଚ୍ଚରେ ଯାଉନଥିଲେ । ଏହିପରି ଅନେକ ରକ୍ଷାପାଇଥିଲେ । ଗୁଣଞ୍ଚ ରାଜା ଶଙ୍କରପ୍ରତାପଙ୍କର ଏହି ମହତ ଉଦ୍ଦେଶ୍ୟକୁ ମଧ ସେତେବେଳେ ସମାଲୋଚନା କରାଯାଇଥିଲା । ସେ ଏଥି ପ୍ରତି ଭ୍ରୁକ୍ଷେପ କରିନଥିଲେ । ବରଂ ଆତ୍ମସନ୍ତୋଷ ଲାଭ କରିଥିଲେ ଯେ ବୁଝି ପାରୁନଥିବା ଲୋକମାନଙ୍କୁ ପ୍ରତ୍ୟକ୍ଷ ଅବା ପରୋକ୍ଷରେ ସାହାଯ୍ୟ କରିଥିଲେ ଏବଂ ନିଜର କର୍ତ୍ତବ୍ୟ ନିଭାଇଥିଲେ ବୋଲି ।

ରାଜା ବା ଶାସକଙ୍କ ମୁଣ୍ଡରେ ସବୁବେଳେ ସବୁ ଦୋଷ ଲଦାଯାଏ । ଯେତେବେ଼ଳେ ମଢ଼ି ( ମଢ଼ି ୧୯୪୨ ମସିହାରେ ମୋ ବଡ଼ ପୁଅ ଶ୍ରୀମାନ୍ କାମାକ୍ଷା ପ୍ରସାଦର ପ୍ରଥମ ଜନ୍ମ ଦିବସରେ କାମାକ୍ଷାନଗର ନାମରେ ନାମିତ ହେଲା ) । କଚେରୀ ଓ ଥାନା ପୋଡ଼ାଗଲା ଏବଂ ରାଜକର୍ମଚାରୀମାନଙ୍କ ଉପରେ ବାଡ଼ିଆପିଟା କରି ସେମାନଙ୍କ ମଧରେ ଘୋର ଆତଙ୍କ ସୃଷ୍ଟି କରାଗଲା, ଆତ୍ମରକ୍ଷା ପାଇଁ ସେମାନେ କୌଣସ ନିର୍ଦ୍ଦେଶ ପାଇବା ପୂର୍ବରୁ ବିବେକାନୁମୋଦିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଅସମ୍ଭବ ନଥିଲା । ପୋଡ଼ାଜଳା, ମାରପିଟ ଆଦି ଆଇନ୍ ବହିର୍ଭୁତ କାର୍ଯ୍ୟ ଯେଉଁମାନେ କରିଥିଲେ ତାହା କେତେବେଳେ ହେଲେ ସମର୍ଥନ ଯୋଗ୍ୟ ନଥିଲା ।

ଆଜି ମଧ ନୁହେଁ । ଏହି ପୃଷ୍ଠଭୂମି ଉପରେ । ସେହିଭଳି ୧୯୩୮ ମସିହାରେ ପ୍ରଜାମଣ୍ଡଳAgitation କୁ ଦବାଇବା ପାଇଁ ବ୍ରିଟିଶ୍ ସରକାର ପଞ୍ଜାବ ତଥା ଅନ୍ୟ ଦେଶୀୟ ରାଜ୍ୟରୁ ଫୌଜ ଆଣି ଖରସୁଆଁ, ଷଢ଼େଇକଳା, ଖଇରାଗଡ଼ ଓ ଢ଼େଙ୍କାନାଳର ଫୌଜଙ୍କୁ ମିଶାଇ Eastern State Agency joint police ବାହିନୀ ଗଠନ କଲେ । ପ୍ରଜାମଣ୍ଡଳୀ ମାନଙ୍କ କଥାରେ ପଡ଼ି ଲୋକେ ଯେତେବେଳେ କିଛି ଶୁଣିବାକୁ ଚାହିଁଲେ ନାହିଁ, ଉଶୃଙ୍ଖଳ ହୋଇଉଠିଲେ, ଲୋକଙ୍କୁ ଭୟଭୀତ କରିବା ପାଇଁ Fireing କରାଗଲା । ଗଡ଼ଜାତ ପୋଲିସଙ୍କୁ ଗୋଳାବାରୁଦ ଦିଆହେଉନଥିଲା । ଗଣ୍ଡଗୋଳକାରୀ ମାନଙ୍କୁ ଘଉଡ଼ାଇବା ପାଇଁ joint police ବାହିନୀ ଗୁଳି ଚଳାଇବା ସମୟରେ ବାଜିରାଉତର ମୃତ୍ୟୁ ଘଟିଲା । ବାଜିରାଉତର ମୃତ୍ୟୁ ଘଟଣା ନେଇ ବହୁରଙ୍ଗବୋଳି ମିଥ୍ୟାର ଆବରଣ ତଳେ ଏପରି ପ୍ରଚାର କରାଗଲା ସତେ ଯେପରି ନିଜେ ରାଜାଶଙ୍କରପ୍ରତାପ ପଞ୍ଜାବର ଜାଲିଓ୍ୱାନାବାଗ ପରି ଆଉଏକ ଜାଲିଓ୍ୱାନାବାଗ ନୀଳକଣ୍ଠପୁର ଘାଟରେ ସୃଷ୍ଟିକରି ବହୁଲୋକଙ୍କୁ ମାରିଦେଇଛନ୍ତି । ବାଜିରାଉତର ମୃତ୍ୟୁରେ ରାଜା ଶଙ୍କର ପ୍ରତାପ ଅତ୍ୟନ୍ତ ବ୍ୟଥିତ ହୋଇଥିବା କଥା ଆମ୍ଭେମାନେ ଜାଣୁ । କେଉଁ ପରିସ୍ଥିତିରେ କାହିଁକି ଏପରି କରିବାକୁ ହେଲା ସଂପୃକ୍ତ କର୍ମଚାରୀମାନଙ୍କୁ ଅତିନିର୍ମମ ଭାବରେ କୈଫିୟତ ତଲବ କରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ପ୍ରଶାସନର ନୀତି ଓ ନିୟମ ଭିତରେ ଆତ୍ମରକ୍ଷା ପାଇଁ ସେମାନେ ପରିସ୍ଥିତି ଦୃଷ୍ଟିରୁ ଏହା କରିବାକୁ ବାଧ ହୋଇଥିଲେ ବୋଲି ଆଇନ୍‌ର ତର୍ଜମା ଭିତରେ ପ୍ରକାଶ କରିଥିବାରୁ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇ ପାରିଲା ନାହିଁ । ଦେଶ ସ୍ୱାଧୀନ ହେବାପରେ ଯେଉଁମାନେ ଏହି Agitation ରେ ସଂପୃକ୍ତ ଥିଲେ ସେମାନଙ୍କ ଭିତରୁ କେହି କେହି ସଂଗ୍ରାମୀ ଭତ୍ତା ପାଇବାକୁ ଉଦ୍ୟମ କରିଛନ୍ତି କିମ୍ବା ପାଉଛନ୍ତି ଏବଂ କେହି କେହି ସ୍ୱାଧୀନ ସରକାରଙ୍କର ଉଚ୍ଚତମ ପଦବୀରେ ପ୍ରତିଷ୍ଠିତ ହୋଇ ସୁନାମ ଅର୍ଜନ କରିଛନ୍ତି । ଠିକ୍ ଏହିପ୍ରକାର ପରିସ୍ଥିତି ଓ ପରିବେଶ ମଧ୍ୟରେ ଗୋଟିଏ ନୁହେଁ ଅନେକ ଘଟଣା ସ୍ୱାଧୀନତା ପାଇବା ପରେ ଏବଂ ନିର୍ବାଚିତ ସରକାରଙ୍କ ସମୟରେ ବା ସହାୟତାରେ ଘଟିଛି ତାହା ସ୍ୱାଧୀନ ଦେଶର ନାଗରିକ ଭାବରେ ନିଜେ ଅନୁଭବ କରିଥିଲେ ମଧ ନୀରବରେ ସ୍ୱୀକାର କରିବା କିମ୍ବା ଭୟାତୁର ଭାବରେ ନିରବ ସମର୍ଥନ ଦେବା ଏକ ସର୍ବଶ୍ରେଷ୍ଠ ଗଣତାନ୍ତ୍ରିକ ଦେଶ ଭାରତ ବର୍ଷର ନାଗରିକମାନଙ୍କ ପକ୍ଷରେ କଣ ଗୌରବମୟ ଇତିହାସ ? କେହି ନିର୍ଭୀକ ଚିତ୍ତରେ

ପିଲାଛୁଆମାନଙ୍କୁ ନିରାପଦ ସ୍ଥାନରେ ରଖାଇ ଦେବାକୁ । ସେତେବେଳର ପରିସ୍ଥିତିରେ ପାରିବାରିକ ସମ୍ମାନ ଅନ୍ୟ ଜାତୀୟ ବା ବିଦେଶୀ ଦଲାଲମାନଙ୍କ ଦ୍ୱାରା ଭୂଲୁଣ୍ଠିତ ନହେଉ ଏହାହିଁ ଥିଲା ତାଙ୍କର ଉଦ୍ଦେଶ୍ୟ । ଏପରିକି ସେ ନିଜ ଆଡୁ ଏକ ବ୍ୟବସ୍ଥା କରି ଅନେକ ସମ୍ମାନୀତ ପରିବାର ଓ ବହୁ ସାଧାରଣ ପରିବାରଙ୍କୁ ସମ୍ମାନହାନିକର ପରିସ୍ଥିତିରୁ ରକ୍ଷାକରିଛନ୍ତି । ଏହା ଆଜି ଅସ୍ୱୀକାର କରାଯାଇ ପାରିବ ନାହିଁ । ସେ ସେତେବେଳେ ତୁରନ୍ତ ଘୋଷଣା କଲେ ଯେ ଦରବାର ଶାସନ ପ୍ରତି ଅନୁରକ୍ତ ପ୍ରକାଶ କରି ଚୁକ୍ତି ପତ୍ର ଲେଖି ଦେଲେ ବ୍ରିଟିଶ୍ ସୈନ୍ୟଙ୍କ ନିର୍ଯ୍ୟାତନାରୁ ରକ୍ଷା ମିଳିବ । ଏହା କେବଳ କରାଗଲା ଅସହ୍ୟ ନିର୍ଯ୍ୟାତନାରୁ ଲୋକମାନଙ୍କୁ ରକ୍ଷା କରିବା ପାଇଁ । ଏହାଦ୍ୱାରା ଅନେକ ଲୋକ ରକ୍ଷା ପାଇଥିଲେ ଏବଂ ନିଜର ସମ୍ମାନ ମଧ୍ୟ ବଞ୍ଚାଉଥିଲେ । ବ୍ରିଟିଶ୍ ସୈନ୍ୟ ଲୋକମାନଙ୍କୁ ଧରି ଆଣିବା ପାଇଁ ଯେତେବେଳେ ତାଲିକା କରୁଥିଲେ କିମ୍ବା ଗ୍ରାମଗୁଡ଼ିକର ତାଲିକା କରୁଥିଲେ ଫ୍ଲାଗ୍ ମାର୍ଚ୍ଚ କରିବା ପାଇଁ, ସେମାନଙ୍କୁ କୁହାଯାଉଥିଲା ଯେ ସେମାନେ ଗଣ୍ଡଗୋଳକାରୀ ନୁହଁନ୍ତି ଏବଂ ସେମାନେ କାହାରି ପ୍ରତି ଅନିଷ୍ଟ କରନ୍ତି ନାହିଁ । ପ୍ରାୟତଃ ରାଜାଙ୍କ କଥାରେ ସେମାନଙ୍କୁ ଛାଡ଼ି ଦେଉଥିଲେ କିମ୍ବା ସେମାନଙ୍କୁ ଆଦୌ ଆଣୁ ନଥିଲେ ଅଥବା ସେ ଗ୍ରାମ ଗୁଡ଼ିକୁ ଫ୍ଲାଗ ମାର୍ଚ୍ଚରେ ଯାଉନଥିଲେ । ଏହିପରି ଅନେକ ରକ୍ଷାପାଇଥିଲେ । ଗୁଣଞ୍ଚ ରାଜା ଶଙ୍କରପ୍ରତାପଙ୍କର ଏହି ମହତ ଉଦ୍ଦେଶ୍ୟକୁ ମଧ୍ୟ ସେତେବେଳେ ସମାଲୋଚନା କରାଯାଇଥିଲା । ସେ ଏଥି ପ୍ରତି ଭ୍ରୁକ୍ଷେପ କରିନଥିଲେ । ବରଂ ଆତ୍ମସନ୍ତୋଷ ଲାଭ କରିଥିଲେ ଯେ ବୁଝି ପାରୁନଥିବା ଲୋକମାନଙ୍କୁ ପ୍ରତ୍ୟକ୍ଷ ଅବା ପରୋକ୍ଷରେ ସାହାଯ୍ୟ କରିଥିଲେ ଏବଂ ନିଜର କର୍ତ୍ତବ୍ୟ ନିଭାଇଥିଲେ ବୋଲି ।

ରାଜା ବା ଶାସକଙ୍କ ମୁଣ୍ଡରେ ସବୁବେଳେ ସବୁ ଦୋଷ ଲଦାଯାଏ । ଯେତେବେଳେ ମଡ଼ି ( ମଡ଼ି ୧୯୪୨ ମସିହାରେ ମୋ ବଡ଼ ପୁଅ ଶ୍ରୀମାନ୍ କାମାକ୍ଷା ପ୍ରସାଦର ପ୍ରଥମ ଜନ୍ମ ଦିବସରେ କାମାକ୍ଷାନଗର ନାମରେ ନାମିତ ହେଲା ) । କଚେରୀ ଓ ଥାନା ପୋଡ଼ାଗଲା ଏବଂ ରାଜକର୍ମଚାରୀମାନଙ୍କ ଉପରେ ବାଡ଼ିଆପିଟା କରି ସେମାନଙ୍କ ମଧ୍ୟରେ ଘୋର ଆତଙ୍କ ସୃଷ୍ଟି କରାଗଲା, ଆତ୍ମରକ୍ଷା ପାଇଁ ସେମାନେ କୌଣସ ନିର୍ଦ୍ଦେଶ ପାଇବା ପୂର୍ବରୁ ବିବେକାନୁମୋଦିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଅସମ୍ଭବ ନଥିଲା । ପୋଡ଼ାଜଳା, ମାରପିଟ ଆଦି ଆଇନ୍ ବହିର୍ଭୂତ କାର୍ଯ୍ୟ ଯେଉଁମାନେ କରିଥିଲେ ତାହା କେତେବେଳେ ହେଲେ ସମର୍ଥନ ଯୋଗ୍ୟ ନଥିଲା ।

ଆଜି ମଧ ନୁହେଁ । ଏହି ପୃଷ୍ଠଭୂମି ଉପରେ । ସେହିଭଳି ୧୯୩୮ ମସିହାରେ ପ୍ରଜାମଣ୍ଡଳAgitation କୁ ଦବାଇବା ପାଇଁ ବ୍ରିଟିଶ୍ ସରକାର ପଞ୍ଜାବ ତଥା ଅନ୍ୟ ଦେଶୀୟ ରାଜ୍ୟରୁ ଫୌଜ ଆଣି ଖରସୁଆଁ, ଷଢ଼େଇକଳା, ଖଇରାଗଡ଼ ଓ ଢେଙ୍କାନାଳର ଫୌଜଙ୍କୁ ମିଶାଇ Eastern State Agency joint police ବାହିନୀ ଗଠନ କଲେ । ପ୍ରଜାମଣ୍ଡଳୀ ମାନଙ୍କ କଥାରେ ପଡ଼ି ଲୋକେ ଯେତେବେଳେ କିଛି ଶୁଣିବାକୁ ଚାହିଁଲେ ନାହିଁ, ଉଶୃଙ୍ଖଳ ହୋଇଉଠିଲେ, ଲୋକଙ୍କୁ ଭୟଭୀତ କରିବା ପାଇଁ Fireing କରାଗଲା । ଗଡ଼ଜାତ ପୋଲିସଙ୍କୁ ଗୋଳାବାରୁଦ ଦିଆହେଉନଥିଲା । ଗଣ୍ଡଗୋଳକାରୀ ମାନଙ୍କୁ ଘଉଡ଼ାଇବା ପାଇଁ joint police ବାହିନୀ ଗୁଳି ଚଳାଇବା ସମୟରେ ବାଜିରାଉତର ମୃତ୍ୟୁ ଘଟିଲା । ବାଜିରାଉତର ମୃତ୍ୟୁ ଘଟଣା ନେଇ ବହୁରଙ୍ଗବୋଳି ମିଥ୍ୟାର ଆବରଣ ତଳେ ଏପରି ପ୍ରଚାର କରାଗଲା ସତେ ଯେପରି ନିଜେ ରାଜାଶଙ୍କରପ୍ରତାପ ପଞ୍ଜାବର ଜାଲିଓ୍ୱାନାବାଗ ପରି ଆଉଏକ ଜାଲିଓ୍ୱାନାବାଗ ନୀଳକଣ୍ଠପୁର ଘାଟରେ ସୃଷ୍ଟିକରି କହୁଲୋକଙ୍କୁ ମାରିଦେଇଛନ୍ତି । ବାଜିରାଉତର ମୃତ୍ୟୁରେ ରାଜା ଶଙ୍କର ପ୍ରତାପ ଅତ୍ୟନ୍ତ ବ୍ୟଥିତ ହୋଇଥିବା କଥା ଆମ୍ଭେମାନେ ଜାଣୁ । କେଉଁ ପରିସ୍ଥିତିରେ କାହିଁକି ଏପରି କରିବାକୁ ହେଲା ସଂପୃକ୍ତ କର୍ମଚାରୀମାନଙ୍କୁ ଅତିନିର୍ମମ ଭାବରେ କୈଫିୟତ ତଲବ କରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ପ୍ରଶାସନର ନୀତି ଓ ନିୟମ ଭିତରେ ଆତ୍ମରକ୍ଷା ପାଇଁ ସେମାନେ ପରିସ୍ଥିତି ଦୃଷ୍ଟିରୁ ଏହା କରିବାକୁ ବାଧ ହୋଇଥିଲେ ବୋଲି ଆଇନ୍‌ର ତର୍ଜମା ଭିତରେ ପ୍ରକାଶ କରିଥିବାରୁ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇ ପାରିଲା ନାହିଁ । ଦେଶ ସ୍ୱାଧୀନ ହେବାପରେ ଯେଉଁମାନେ ଏହି Agitation ରେ ସଂପୃକ୍ତ ଥିଲେ ସେମାନଙ୍କ ଭିତରୁ କେହି କେହି ସଂଗ୍ରାମୀ ଭତ୍ତା ପାଇବାକୁ ଉଦ୍ୟମ କରିଛନ୍ତି କିମ୍ବା ପାଉଛନ୍ତି ଏବଂ କେହି କେହି ସ୍ୱାଧୀନ ସରକାରଙ୍କର ଉଚ୍ଚତମ ପଦବୀରେ ପ୍ରତିଷ୍ଠିତ ହୋଇ ସୁନାମ ଅର୍ଜନ କରିଛନ୍ତି । ଠିକ୍ ଏହିପ୍ରକାର ପରିସ୍ଥିତି ଓ ପରିବେଶ ମଧରେ ଗୋଟିଏ ନୁହେଁ ଅନେକ ଘଟଣା ସ୍ୱାଧୀନତା ପାଇବା ପରେ ଏବଂ ନିର୍ବାଚିତ ସରକାରଙ୍କ ସମୟରେ ବା ସହାୟତାରେ ଘଟିଛି ତାହା ସ୍ୱାଧୀନ ଦେଶର ନାଗରିକ ଭାବରେ ନିଜେ ଅନୁଭବ କରିଥିଲେ ମଧ ନୀରବରେ ସ୍ୱୀକାର କରିବା କିମ୍ବା ଭୟାତୁର ଭାବରେ ନିରବ ସମର୍ଥନ ଦେବା ଏକ ସର୍ବଶ୍ରେଷ୍ଠ ଗଣତାନ୍ତ୍ରିକ ଦେଶ ଭାରତ ବର୍ଷର ନାଗରିକମାନଙ୍କ ପକ୍ଷରେ କଣ ଗୌରବମୟ ଇତିହାସ ? କେହି ନିର୍ଭୀକ ଚିତ୍ତରେ

ପ୍ରତିବାଦ କରି ସ୍ୱାଧୀନ ଦେଶର ସରକାରଙ୍କୁ କ'ଣ ଭାଙ୍ଗିଦେଇପାରିଲେ ? ଅସ୍ୱୀକାର କରିପାରିଲେ ? ପ୍ରତିବାଦ କରିପାରିଲେ ? ନିରୀହ, ଶାନ୍ତ, ଚରିତ୍ରବାନ ଓ ଅଧ୍ୟବସାୟୀ ଛାତ୍ର ସୁନିଲ ଓ ବେଙ୍ଗପାଣିଆ । ଯେତେବେଳେ ରାଜ୍ୟ ସୀମା ନିର୍ଦ୍ଧାରଣରେ ଓଡ଼ିଶା ପ୍ରତି ଅବିଚାର କରାଗଲା ସେତେବେଳ ପ୍ରତିବାଦର ଦର୍ଶକ ଏହି ଦୁଇ ବାଳକଙ୍କର ପ୍ରାଣ ନିର୍ବାଚିତ ସରକାରଙ୍କର ନିର୍ମମଗୁଳିରେ ଯେପରି ଚାଲିଗଲା ତାହା କ'ଣ କାହାକୁ ବ୍ୟଥିତ କଲା ? କରିଥିଲେ ଅବା କେବଳ ଦୁଇଦିନ ପାଇଁ କିମ୍ବା କେହି କାହାକୁ ଏଥି ପାଇଁ ଦୋଷୀ ସାବ୍ୟସ୍ତ କରିପାରିଲା ? କମିଶନ ବସିଲା ନାହିଁ କିମ୍ବା ତଦନ୍ତ ରିପୋର୍ଟଟି ପ୍ରକାଶ ପାଇଲା ନାହିଁ । ସେମାନଙ୍କ ପାଇଁ ସ୍ମାରକୀ କାନ୍ଦୁନାହିଁ କିମ୍ବା ଇତିହାସର ନିର୍ଘୋଷ ସେମାନଙ୍କ ପାଇଁ ନାହିଁ । କ୍ଷୁଧାରେ ଲୋକ ଅସୁମାରୀ ସଂଖ୍ୟାରେ ମରୁଛନ୍ତି କିମ୍ବା ଆର୍ତ୍ତଚିତ୍କାର କରୁଛନ୍ତି । ରୋଗରେ ମରୁଛନ୍ତି କିମ୍ବା ଘାଣ୍ଟି ସାଉଣ୍ଟି ହେଉଛନ୍ତି । ପଇସା ନାହିଁ କି ଚିକିତ୍ସା ନାହିଁ । ପିଇବାକୁ ପାଣି ନାହିଁ । ଅଥଚ ଲକ୍ଷ ସଂଖ୍ୟାରେ କୂଅ, ପୋଖରୀ ଓ ନଳକୂଅର ଅଭାବନାହିଁ । ମନଜିଣା ଓ ମନକିଣା କରି ସଂଖ୍ୟାରେ ମୋହରେ ପଡ଼ି ଏକାତି ବା ଦେଶ କେବଳ ବଞ୍ଚିଛି ବୋଲି ମନେହୁଏ । ବର୍ତ୍ତମାନ ମିଳିତ କାର୍ଯ୍ୟରେ ପରିମାଣ ଏତେବେଶୀ ଏବଂ ପ୍ରତିକ୍ରିୟାଶୀଳ ବ୍ୟକ୍ତିମାନଙ୍କର ସ୍ୱାର୍ଥ ଚିନ୍ତା ଏତେ ବେଶୀ ଯେ ପ୍ରଗତିର ରଥଚକ ଆଗକୁ ନଯାଇ ପଶ୍ଚାତ୍‌ଗତି କରିବାକୁ ଓ ଦେଶର ଅଗଣିତ ନରନାରୀ ନିଷ୍ପେସିତ ଜୀବନ ଯାପନ କରିବାକୁ ବାଧ ହେଉଛନ୍ତି । ରାହା ନାହିଁ । ମୁକ୍ତି ନାହିଁ । ଦେଶର ଜୀବନ ଆଜି ନିଃସହାୟ ଓ ଅସହାୟ ଭାବରେ ଭାଗ୍ୟବାଦୀ ହୋଇପଡୁଛି ।

ତିନିଜଣିଆ ଏଜେଣ୍ଟ ଶାସନର ଅବସାନ ପରେ ରାଜାଶଙ୍କରପ୍ରତାପ ନିଜ ରାଜ୍ୟରେ ଶାନ୍ତି ଓ ଶୃଙ୍ଖଳାର ସହ ଉତ୍ତମ ବୁଝାମଣା ନେଇ ରାଜ୍ୟ ପରିଚାଳନା ନିମନ୍ତେ କାର୍ଯ୍ୟକ୍ରମ ଆରମ୍ଭ କଲେ । ବିଭିନ୍ନ ବିଭାଗ କାର୍ଯ୍ୟ ସନ୍ତୋଷ ଜନକ ଭାବରେ ସମ୍ପାଦନ କରିବା ପାଇଁ ସଂପୃକ୍ତ କର୍ମଚାରୀମାନଙ୍କୁ ନ୍ୟାୟ ଓ ନିରପେକ୍ଷ ଭାବରେ ଆଇନର ପରିସର ମଧ୍ୟରେ ସମସ୍ତଙ୍କର ସହଯୋଗ ନେଇ ପରସ୍ପରକୁ ସାହାଯ୍ୟ କରିବାର ଲକ୍ଷ୍ୟରଖି କାର୍ଯ୍ୟ କରିବାକୁ ଉପଦେଶ, ନିର୍ଦ୍ଦେଶ ଦେଲେ ନ୍ୟାୟପୂର୍ଣ୍ଣ ଭାବରେ କାର୍ଯ୍ୟ କରିବାକୁ ଉତ୍ସାହିତ କରି । ଗ୍ରାମ ମାନଙ୍କରେ ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ପଞ୍ଚାୟତ ଗଢ଼ିଲେ । ପଞ୍ଚାୟତ କାର୍ଯ୍ୟକ୍ରମ ମଧ୍ୟରେ ରହିଲା ଆଭ୍ୟନ୍ତରୀଣ ଶାନ୍ତି ଶୃଙ୍ଖଳା ରକ୍ଷା କରିବା, ଉନ୍ନତ କୃଷି କାର୍ଯ୍ୟରେ ଶକ୍ତି ବିନିଯୋଗ

କରିବା, ଶିକ୍ଷା ଓ ଶିକ୍ଷାନୁଷ୍ଠାନର ସୁପରିଚାଳନା କରିବା, ଜଙ୍ଗଲ ସମ୍ପଦ ରକ୍ଷା କରିବା, କୋଠଘର ସଂସ୍କୃତି ତଥା ଗ୍ରାମର ସମସ୍ତ ମୌଳିକ ସମ୍ପଦର ଶ୍ରୀ ବୃଦ୍ଧି କରିବା ଆଦି ଅନେକ ଲୋକ ହିତକର କାର୍ଯ୍ୟକ୍ରମ କରିବା । ଏତଦ୍‌ବ୍ୟତୀତ ଉଚ୍ଚକ୍ଷମତାସଂପନ୍ନ ଏକ ପ୍ରଶାସନ କମିଟି ଗଠନ କଲେ ବିଳମ୍ବିତ ଶାସନକୁ ଅଧିକ କ୍ରିୟାଶୀଳ କରିବା ପାଇଁ ଏବଂ ନ୍ୟାୟ ନିରପେକ୍ଷ ଓ ନିର୍ମଳ ଶାସନ ଦେବାପାଇଁ ।

ଏହି ବିଧିବ୍ୟବସ୍ଥା ସେତେବେଳେ ଅତ୍ୟନ୍ତ ଲୋକପ୍ରିୟ ହୋଇଉଠିଥିଲା । ଅନ୍ୟାନ୍ୟ ଅନେକ ଗଡ଼ଜାତ ରାଜ୍ୟ ଓ ଅନ୍ୟ ଅଂଚଳର ମୁଖ୍ୟ ବ୍ୟକ୍ତିମାନେ ଏହି ଶାସନ ବ୍ୟବସ୍ଥା ଅନୁଧ୍ୟାନ କରିବାକୁ ଢେଙ୍କାନାଳକୁ ଆସିଥିଲେ ନିଜରାଜ୍ୟରେ ପ୍ରଚଳନ କରିବା ଉଦ୍ଦେଶ୍ୟ ରଖି । ଏହି ପ୍ରକାର ଶାସନ ଏବଂ ସ୍ୱାଧୀନତା ଆନ୍ଦୋଳନର ଗତି ଓ ପ୍ରଗତି ଆଦି ବିଭିନ୍ନ ବିଷୟରେ ସେମାନଙ୍କ ସହିତ ରାଜା ଶଙ୍କରପ୍ରତାପ ବିଶେଷ ଭାବରେ ଆଲୋଚନା କରୁଥିଲେ । ଫଳରେ ଉଭୟଙ୍କର ଚିନ୍ତାଧାରା ଓ କର୍ମପ୍ରଣାଳୀ ପରିମାର୍ଜିତ ଭାବରେ ନୂତନ ରୂପରେଖ ନେଉଥିଲା । ନିଜ ରାଜ୍ୟଭିତରେ ସେ ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ କ୍ଷେତ୍ରରେ ଏକ ସାର୍ଥକ ଏବଂ ଫଳପ୍ରଦ ପରିବର୍ତ୍ତନ ଆଣିବା ପାଇଁ ଏହି ପରିବର୍ତ୍ତିତ ପରିସ୍ଥିତିରେ ମଧ୍ୟ ଉଦ୍ୟମ ଆରମ୍ଭ କରିଥିଲେ ।

ତା' ପରେ ଦେଶର ରାଜନୈତିକ କ୍ଷେତ୍ରରେ ଖୁବ୍ ଦ୍ରୁତ ପଟ୍ଟ ପରିବର୍ତ୍ତନ ଘଟୁଥାଏ । ବିପୁଳ ଜନ ଆନ୍ଦୋଳନ ହେତୁ ବ୍ରିଟିଶ୍ ସରକାର ଶେଷରେ ସ୍ଥିରକଲେ ଭାରତବର୍ଷକୁ ସ୍ୱାଧୀନତା ଦେଇ ନିଜ ଦେଶକୁ ବାହୁଡ଼ିଯିବେ, କିନ୍ତୁ କୁଟନୀତିର ବିଷାକ୍ତଜ୍ୱାଳା ଛାଡ଼ିଦେଇ ଯିବେ । ତାହାହିଁ ହେଲା ଜାତି ଜାତି ମଧ୍ୟରେ, ଧର୍ମ ଧର୍ମ ମଧ୍ୟରେ, ଭାଷା ଭାଷା ମଧ୍ୟରେ ବିଭେଦ ସୃଷ୍ଟିକରି ଦେଶକୁ ଦୁଇ ଭାଗ କଲାପରେ ଯାଇ ସେମାନେ ଚାଲିଗଲେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଭାରତ ସ୍ୱାଧୀନତା ପାଇ ସରକାର ଗଢ଼ିଲେ ।ବହୁ ଆନନ୍ଦ ଓ ଉଦ୍ଦୀପନା ମଧ୍ୟରେ ।

ରାଜା ଶଙ୍କରପ୍ରତାପ ପ୍ରଗତିଶୀଳ ଥିଲେ ଓ ପାରମ୍ପରିକ ଭାବରେ ନିଜର ଭାଷା, ସଂସ୍କୃତି, କୃଷି, ସାହିତ୍ୟ, ଇତିହାସକୁ ନେଇ ସର୍ବଦା ଗର୍ବ କରନ୍ତି । କୁସଂସ୍କାର ବିରୁଦ୍ଧରେ ସର୍ବଦା ସ୍ୱର ଉତ୍ତୋଳନ କରୁଥିଲେ । 'କୁସଂସ୍କାର ପ୍ରଗତିର ପରିପନ୍ଥୀ' ଥିଲା ତାଙ୍କର ଚିନ୍ତା ଧାରା । ତେଣୁ ସେଗୁଡ଼ିକ ଦୂରକରି ସଂସ୍କାରପ୍ରିୟ ସମାଜ ଗଠନ ଦିଗରେ ସେ ସବୁବେଳେ ସଚେଷ୍ଟ ଥିଲେ । ୧୯୩୫ ମସିହାରେ ଗୋଟିଏ ଗରୀବ ବାଳକ

ଶ୍ରୀ ଧର୍ମାନନ୍ଦ ନାଏକ  ଉଚ୍ଚଶିକ୍ଷା ନିମନ୍ତେ ସାହାଯ୍ୟ ପ୍ରାର୍ଥନା କରି ରାଜା ସାହେବଙ୍କୁ ସାକ୍ଷାତ କରିବାକୁ ଆସିଲେ । ସାକ୍ଷାତ୍‌ହେଲା ଏବଂ ବାଳକଟିର ସରଳତାରେ ମୁଗ୍ଧ ହୋଇ ତାର ପଢ଼ାପଢ଼ିର ବ୍ୟବସ୍ଥା କରି ଥିଲେ । ପ୍ରଥମ ଅବସ୍ଥାରେ ତାକୁ ଯାଉଁଳି ପୋଖରୀ ମଠର ଛାତ୍ରବାସରେ ରଖେଇବାର ବ୍ୟବସ୍ଥା କରି ଥିଲେ । ଏହା ସେତେବେଳେ କମ୍ କଥା ନଥିଲା । ପ୍ରତିବାଦର ଗୁଞ୍ଜରଣ ସେତେବେଳେ ଉଠିଥିଲା । କିନ୍ତୁ ଶାସ୍ତ୍ରୋଚିତ ଯୁକ୍ତିରେ ସେ ସମସ୍ତଙ୍କୁ ଶାନ୍ତ କରାଇଥିଲେ । ଉଗ୍ରଜାତିବାଦ ସେତେବେଳେ ପ୍ରତିବନ୍ଧକ ହୋଇପାରିନଥିଲା ରାଜା ଶଙ୍କରପ୍ରତାପଙ୍କ ନିଷ୍ପତ୍ତିକୁ ବଦଳାଇବାକୁ । ସରଳ, ନିଷ୍କପଟ ମେଧାବୀ ବାଳକଟି ପରେ ହାଇସ୍କୁଲ ଛାତ୍ରବାସରେ ରହି ତାର ପାଠପଢ଼ା ଶେଷ କରିଥିଲା । ପରେ ଶୁଣିଛି ସେ ଚାକିରି କରି ସୁସ୍ଥ ଜୀବନ ଯାପନ କରିଥିଲେ । ଅସ୍ପୃଶ୍ୟତା ସମାଜର ଏକ କଳଙ୍କ ବୋଲି ସେ ଉପଲବ୍ଧି କରିଥିଲେ । ଜାତି ଭେଦ ଜନିତ କଳଙ୍କ ଦୂରକରିବା ପାଇଁ ସେ ପର୍ଯ୍ୟାୟ କ୍ରମେ ଦୃଢ଼ ପଦକ୍ଷେପ ନେଇଥିଲେ । ସେତେବେଳେ ଢେଙ୍କାନାଳର ଏକ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟକୁ ସମାଜର କୌଣସି ଗୋଷ୍ଠୀ ଗ୍ରହଣ କରୁନଥିଲେ । ସେମାନଙ୍କଠାରୁ କେହି ଜଳସ୍ପର୍ଶ କରୁନଥିଲେ ପ୍ରାୟତଃ ଏକଘରିକିଆ ହୋଇ ସେହି ସଂପ୍ରଦାୟଟି ଉତ୍କଟ ଜାତିଭେଦ ନୀତିରେ ଅଲଗା ହୋଇ ରହୁଥିଲେ । ମାନସିକ ପ୍ରକ୍ରିୟାରେ ଏହି ଗୋଷ୍ଠୀଟି ଜାତିଆଣ ଭେଦଭାବରେ ବହୁ ଦୁର୍ଭାଗ୍ୟର ର ସମ୍ମୁଖୀନ ହୋଇ ସାମାଜିକ ସ୍ୱୀକୃତି ପାଉନଥିଲେ । ଏହା ରାଜା ଶଙ୍କରପ୍ରତାପ ଙ୍କୁ ଅତ୍ୟନ୍ତ ବ୍ୟଥିତ କରିଥିଲା । ସେ ଏହାର ଶାସ୍ତ୍ରୀୟ ପ୍ରତିକାର କରିଥିଲେ ଏବଂ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଯଥାର୍ଥ ସାମାଜିକ ସ୍ୱୀକୃତି ପାଇଥିଲେ । ତାଳଚେର ଓ ଢେଙ୍କାନାଳର ପ୍ରମୁଖ ପଣ୍ଡିତ ତଥା ଶାସ୍ତ୍ରୀୟ ବିଦ୍ୱାନମାନଙ୍କ ସହିତ ସେ ନିଜେ ପର୍ଯ୍ୟାଲୋଚନା କଲାପରେ ଏମାନଙ୍କୁ ସାମାଜିକ ସ୍ୱୀକୃତି ଦେବା ନିମନ୍ତେ ପଣ୍ଡିତ ଶିଖରେଶ୍ୱର ମିଶ୍ରଙ୍କୁ ପ୍ରତିନିଧି ହିସାବରେ ପଠାଇ ପୁରୀ ମୁକ୍ତିମଣ୍ଡପର ପଣ୍ଡିତ ମଣ୍ଡଳୀଙ୍କ ଠାରୁ ଶାସ୍ତ୍ର ସମ୍ମତ ନିର୍ଦ୍ଦେଶାନାମା ସଂଗ୍ରହ କରାଇଥିଲେ । ଅବଶ୍ୟ ଏହି ନିଷ୍ପତ୍ତି ନେବାପୂର୍ବରୁ ସେ ମୋ ସହିତ ତଥା ଅନ୍ୟମାନଙ୍କ ସହିତ ଉତ୍କଟ ଜାତିପ୍ରଥା ସମ୍ପର୍କରେ ପ୍ରାଞ୍ଜଳ ଆଲୋଚନା କରିଥିଲେ । ଆମ ଷଢ଼େଇକଳା ରାଜପରିବାରରେ କୌଣସି ଗୋଷ୍ଠୀ ବା ପରିବାର କିମ୍ବା ଜାତିପ୍ରଥା କଡ଼ାକଡ଼ି  ଭାବରେ ଆଦୌ ବିଚାର କରାଯାଏନାହିଁ । ତେଣୁ ପରିଷ୍କାର ପରିଚ୍ଛନ୍ନ ପରିବେଶରେ କୌଣସି ଗୋଷ୍ଠୀ ବା ପରିବାର ରୁଚିପୂର୍ଣ୍ଣ ଭାବରେ ଚଳପ୍ରଚଳ କରୁଥିଲେ । ତାକୁ ଅସ୍ପୃଶ୍ୟଭାବରେ ବ୍ୟବହାର କରିବାର କୌଣସି କାରଣ ବା ଯୁକ୍ତି

ନାହିଁ ବୋଲି ଆମ୍ଭେମାନେ ବିଚାର ଆଲୋଚନା ବେଳେ ପ୍ରକାଶ କରୁଥିଲୁ । ଆମ୍ଭମାନଙ୍କର ଏହି ଚିନ୍ତାଧାରା ତାଙ୍କୁ ନିଷ୍ପତ୍ତି ନେବାରେ ସବୁବେଳେ ପ୍ରଭୂତ ସାହାଯ୍ୟ କରିଥାଏ । ସାଧାରଣତଃ ସେ ନିଜେ କୌଣସି କୌଣସି ବିଷୟରେ ଏକତରଫା ନିଷ୍ପତ୍ତି ନିଅନ୍ତି ନାହିଁ । ସମସ୍ତଙ୍କୁ ପଚାରନ୍ତି । ଅନ୍ୟ ଗ୍ରହଣୀୟ ବ୍ୟକ୍ତିମାନଙ୍କର ମତ ଉଦ୍ଧାର କରନ୍ତି । କ୍ରିୟା, ପ୍ରତିକ୍ରିୟା ସମ୍ପର୍କରେ ଅନୁଶୀଳନ କରନ୍ତି ଏବଂ ଶେଷରେ ନିଜର ନିଷ୍ପତ୍ତି, ଯାହା ପ୍ରତ୍ୟେକ ଦୃଷ୍ଟିକୋଣରୁ ମଙ୍ଗଳଜନକ ବା ଲାଭ ଜନକ ବୋଲି ମନେକରନ୍ତି ତାହାକୁହିଁ ଗ୍ରହଣ କରନ୍ତି । ତାହା କେବଳ ପ୍ରଣିଧାନ ଯୋଗ୍ୟ ନୁହେଁ, ବରଂ ଅନନ୍ୟ ଏବଂ ଶ୍ରେଷ୍ଠ ବିଧି । କେବଳ ଏତିକି ନୁହେଁ, ଅନେକ କ୍ଷେତ୍ରରେ ପିତୃମାତୃହରା କନ୍ୟା କିମ୍ବା ଅସହାୟ ଓ ଗରୀବ ଘରର କନ୍ୟା ମାନଙ୍କୁ କୁଳଗୋତ୍ର ଓ ଜାତି ବିଚାରରେ ଉପଯୁକ୍ତ ମାନ ମର୍ଯ୍ୟାଦା ଦେଇ ବିବାହ ଦେବା, ଆବଶ୍ୟକ ସ୍ଥଳରେ ବ୍ରାହ୍ମଣ ସନ୍ତାନ ମାନଙ୍କୁ ବ୍ରତ ଉପନୟନ କାମରେ ସାହାଯ୍ୟ କରିବା, ଛୋଟ-ବଡ଼ ମନେ ନକରି ପରିପୂର୍ଣ୍ଣ ମନରେ ଅତିଥି ସେବା କରିବା ଥିଲା ରାଜା ଶଙ୍କର ପ୍ରତାପ ଙ୍କର ଦୈନନ୍ଦିନ କାର୍ଯ୍ୟ ମଧ୍ୟରେ ଅନ୍ୟତମ । ସେ ନିଃସ୍ୱାର୍ଥପର ଭାବରେ ଏହା ନିଜର କର୍ତ୍ତବ୍ୟ ଦୃଷ୍ଟିରୁ ଦୁର୍ବାର ଏକ ଐଶ୍ୱରିକ ଶକ୍ତିର ବିଶ୍ୱାସ ନେଇ କରୁଥିଲେହେଁ କେତେକ ଦୁର୍ବଳମନା, ସ୍ୱାର୍ଥପର, ଅସହିଷ୍ଣୁ ପ୍ରକୃତିର ଲୋକ ଏହି ପ୍ରକାର ସେବା ମୂଳକ କାର୍ଯ୍ୟକୁ କଟୂକ୍ତି ସହିତ ସମାଲୋଚନା କରୁଥିଲେ । ପରିସ୍ଥିତି ଦୃଷ୍ଟିରୁ ଅସହାୟ, ଗରିବ, ଦୁଃଖୀ ଲୋକମାନେ ଏପରି ପ୍ରଜାବତ୍ସଳ ରାଜ ଦୃଷ୍ଟିରେ ନପଡ଼ିଥିଲେ ଅର୍ଥାତ୍ କିଛି ବ୍ୟବସ୍ଥା ହୋଇନଥିଲେ ସେମାନଙ୍କୁ ବା ସେମାନଙ୍କର ଜମି, ଘର ବାଡ଼ି, ଧନ ସମ୍ପତ୍ତିକୁ ଏହି କୁଚକ୍ରି ଦଳ ଉପଭୋଗ କରିଥାନ୍ତେ ବିନା ଶ୍ରମରେ, ବିନାମୂଲ୍ୟରେ ଓ ବିନା କଷ୍ଟରେ । ସେଥିରେ ବାଧା ପଡ଼ିଲା । ତେଣୁ ସାମନାରେ ନୁହେଁ; ପଶ୍ଚାତ୍ ଭାଗରେ ଚରମ ରାଗରୋଷ ରଖି ଏହା ରାଜୋଚିତ କାର୍ଯ୍ୟନୁହେଁ ବୋଲି କୁଭାଷାରେ କହିବାକୁ ଭୁଲିନଥିଲେ । ଆମ ଜାନକୁ ଏସବୁ କଥା ବାରମ୍ବାର ଆସୁଥିଲେ ହେଁ ଏହା ମନ୍ଦ ଲୋକମାନଙ୍କର ମନ୍ଦ କାର୍ଯ୍ୟ ବୋଲି ମନେ କରି ସଂପୂର୍ଣ୍ଣ ଏଡ଼େଇ ଯାଇଥିଲୁ । ହିଂସୁକ ଶ୍ରେଣୀର ଲୋକଙ୍କ ଠାରୁ ସ୍ୱାର୍ଥପର କଥାଛଡ଼ା ଧର୍ମର କଥା ବା ଆସିବ କୁଆଡୁ ?

ନ୍ୟାୟ ନିରପେକ୍ଷ ବିଚାରର ପରିଚୟ ଦେବା କେବଳ ଇତିହାସ ପୁରୁଷ ରାଜା ଶଙ୍କର ପ୍ରତାପଙ୍କ ପକ୍ଷରେ ସମ୍ଭବ ଥିଲା ନମନୀୟ ସବଳ ବ୍ୟକ୍ତିତ୍ୱ ସ୍ୱଧର୍ମରକ୍ଷକ ତଥା ଦୋଷ ତ୍ରୁଟିହୀନ ଓ ପ୍ରଜାପରାୟଣ ରାଜା ଶଙ୍କରପ୍ରତାପଙ୍କର ଏହାହିଁ ଲକ୍ଷ୍ୟ ଥିଲା ।

ନିଜ ହାତରେ ଗଢ଼ି, ହୃଦୟରୁ ସମସ୍ତ ସ୍ନେହ ଶ୍ରଦ୍ଧା ନିଗାଡ଼ି, ଶିକ୍ଷା ଦୀକ୍ଷାଦେଇ ସେ ତାଙ୍କ ତଳଭାଇ ପଟ୍ଟାୟତ ସ୍ୱର୍ଗତଃ ନୃସିଂହ ପ୍ରତାପଙ୍କୁ ଦରବାର ଶାସନରେ ସର୍ବୋଚ୍ଚ ସ୍ଥାନରେ ମୂତୟନକରି ପ୍ରତିଷ୍ଠିତ କରାଇଥିଲେ । ବଡ଼ ଭାଇ ହିସାବରେ ରାଜା ଶଙ୍କର ପ୍ରତାପ ବିଶ୍ୱାସ କରିଥିଲେ ଯେ, ପଟ୍ଟାୟତ ଭାଇ ରାଜ କାର୍ଯ୍ୟ ସୂଚାରୁ ରୂପେ ତୁଲାଇବେ । କିନ୍ତୁ ରାଜା ସାହେବଙ୍କ ଅନୁପସ୍ଥିତିରେ ଏବଂ ଅଜ୍ଞାତରେ ବହୁ ଶାସନ ପ୍ରତିକୂଳ କାର୍ଯ୍ୟ ଘଟିଥିବା ଯୋଗୁଁ ପଟ୍ଟାୟତ ନୃସିଂହ ପ୍ରତାପଙ୍କୁ ଶାସନ କାର୍ଯ୍ୟରୁ ବିଦାୟ ନେବାକୁ ପଡ଼ିଲା । ସେ ତାଙ୍କର ଜମି ବାଡ଼ି ଘର ଦ୍ୱାର ଢ଼େଙ୍କାନାଳରେ ଛାଡ଼ି ଗଲେ ଏବଂ ମଝିରେ ମଝିରେ ସେ କେବଳ ନିଜର ଜମିବାଡ଼ି ଦେଖିବାକୁ ଆସି ଫେରିଯାଉଥିଲେ ।

ରାଜା ଶଙ୍କରପ୍ରତାପଙ୍କର ଶାସନ ପ୍ରକ୍ରିୟାଥିଲା ମହତ୍ତ୍ୱପୂର୍ଣ୍ଣ ନିପୁଣ, ଉଚ୍ଚଶିକ୍ଷିତ, କାର୍ଯ୍ୟଗ୍ରାହୀ ଓ ଅନୁଭୂତି ସଂପନ୍ନ ବ୍ୟକ୍ତିମାନଙ୍କର ସମ୍ମିଳିତ ଶକ୍ତିର ବିନିଯୋଗରେ ଶୃଙ୍ଖଳିତ ଓ ନ୍ୟାୟ ନିରପେକ୍ଷ ଫଳପ୍ରଦ ଶାସନ ଦେଇ ନିଜ ରାଜ୍ୟକୁ ସର୍ବଶ୍ରେଷ୍ଠ ଭାବରେ ଗଢିତୋଳିବା ଥିଲା ତାଙ୍କର ଏକମାତ୍ର ଲକ୍ଷ୍ୟ । ରାଜ ପ୍ରସାଦର ସିଂହ ଦ୍ୱାରା ସାମନାରେ ଘୁଷୁରି ପାହାଚର ଦୁଇ ପାର୍ଶ୍ୱରେ ଦୁଇଟି ପକ୍କା ବାକ୍ସ ତିଆରି ହୋଇଥିଲା । ଗୋଟିଏ ପାଖରେ ସବୁଜ ରଂଗର ଟିଣ ପାତ ଓ ଅନ୍ୟ ପାଖରେ ଲାଲ୍ ରଙ୍ଗର ଟିଣ ପାତ ଲଗାଯାଇଥିଲା । ଗୋଟିକରେ ସର୍ବସାଧାରଣ ଗୁହାରି ପତ୍ର ଏବଂ ଅନ୍ୟଟିରେ ପ୍ରଶାସନ ତଥା ଅମଲାତନ୍ତ୍ର ଅନ୍ୟାୟ ବିରୁଦ୍ଧରେ ନିର୍ଦ୍ଦିଷ୍ଟ ଅଭିଯୋଗ ମାନ ଗ୍ରହଣ କରାଯାଉଥିଲା । ଏହି ଅଭିଯୋଗ ଗୁଡ଼ିକୁ ସେ ନିଜେ ତଦାରଖ କରି ତୁରନ୍ତ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଥିଲେ ।

ସେ ବେଳର ଢ଼େଙ୍କାନାଳ ଶାସନର କେତେକ ଆଦେଶାବଳୀ AnnexureII ରେ ପାଠକ ମାନଙ୍କ ପାଇଁ ସଂଲଗ୍ନ କଲି ।

ଢେଙ୍କାନାଳ ରାଜବଂଶର ପାରମ୍ପାରିକ ମର୍ଯ୍ୟାଦା ଥିଲା ନିଃସ୍ୱାର୍ଥପର ସେବା ଦେଇ ସାଧାରଣ ଭାବରେ ନିଜର କର୍ତ୍ତବ୍ୟ ସମ୍ପାଦନ କରିବା । ବୃଥା ଅହଂକାର ପାଇଁ ନାମ କମେଇବା କିମ୍ବା ଦାନ ଧର୍ମକରି ଐତିହାସିକ ବ୍ୟକ୍ତିଭାବରେ ସର୍ବତ୍ର ଜଣେଇ ହେବା ଢ଼େଙ୍କାନାଳ ରାଜବଂଶର କେହିହେଲେ କେବେ ଉଦ୍ୟମ କରିନାହାଁନ୍ତି । ନିଜ ବାହୁ ବଳରେ ଆପଣା ଇଲାକାରୁ ସୁଶିକ୍ଷିତ, କର୍ମଠ, ସାହସୀ ଓ ବଳବାନ୍ ଲୋକଙ୍କୁ ସୈନିକ ଭାବରେ ନିଯୁକ୍ତି ଦେଇ ଯଥାଯୋଗ୍ୟ ତାଲିମ ଦେଉଥିଲେ ଏବଂ ସେମାନଙ୍କ ସାହାଯ୍ୟରେ ଢ଼େଙ୍କାନାଳ ସୀମା ସୁରକ୍ଷା କରୁଥିଲେ । ଇତିହାସର ପ୍ରତ୍ୟେକ ପୃଷ୍ଠାରେ

ମିଳେ ଢେଙ୍କାନାଳ ବୀର ସୈନିକଙ୍କର ସେମାନଙ୍କ ଯୁଦ୍ଧର ନିପୁଣତା ସଂପର୍କରେ ବୀରତ୍ୱର କାହାଣୀ । କୌଣସି ଯୁଦ୍ଧରେ ଢେଙ୍କାନାଳ ବୀର ସେନାବାହିନୀର ଅମିତ ସାହସ ଓ ପରାକ୍ରମ, ତଥା କୌଶଳ ଯୋଗୁଁ ପରାଜୟର ସମ୍ମୁଖୀନ ହୋଇନଥିଲେ । ପ୍ରତ୍ୟେକ ସମୟରେ ଜୟ ଲାଭ କରି ଢେଙ୍କାନାଳର ପରିସୀମା ବୃଦ୍ଧି କରିଥିଲେ । ଜୟଲାଭର ଗୌରବ ଓ ଗର୍ବ କେବଳ ରାଜାଙ୍କର ଏକା ନୁହେଁ ସମସ୍ତ ଢେଙ୍କାନାଳ ସୈନ୍ୟବାହିନୀର ଥିଲା । ଅନ୍ୟ କଥାରେ ଜନସାଧାରଣଙ୍କ ମଧ୍ୟରେ ସମର୍ଥ ବ୍ୟକ୍ତି ମୁତୟନ ହେଉଥିବାରୁ ଏହା ସମସ୍ତ ଜନସାଧାରଣଙ୍କର କହିଲେ ଅତ୍ୟୁକ୍ତି ହେବନାହିଁ । ଏହା ହେଉଛି ଉଭୟଙ୍କର ନିଜର ଜନ୍ମଭୂମି ପ୍ରତି କ୍ଷୟହୀନ ସ୍ୱାଭିମାନ । ଢେଙ୍କାନାଳ ରାଜବଂଶ ନିଜର ବାହୁବଳ ଏବଂ ବୁଦ୍ଧି ବଳରେ ଅଜେୟ ଭାବରେ ନିଜ ପରିସୀମା ଅଭିବୃଦ୍ଧି ଘଟାଇଥିଲେ ହେଁ ନିଜ ରାଜ୍ୟର ଜନସାଧାରଣଙ୍କ ଉପରେ କେବେହେଲେ କ୍ଷମତାର ଅପପ୍ରୟୋଗ କରୁନଥିଲେ । କୋର୍ଟ କଚେରୀର ବିଚାର ଉପରେ ହସ୍ତକ୍ଷେପ କରୁନଥିଲେ । ମୃତ୍ୟୁ ଦଣ୍ଡରେ ଦଣ୍ଡିତ କରୁନଥିଲେ । ଶାସନ କଳର ପ୍ରତ୍ୟେକ ଅଂଶ ବିଶେଷ ଉପରେ ବରଂ ଗୁରୁତ୍ୱ ଆରୋପ କରୁଥିଲେ ; ସତ୍ୟ,ଦୟା ଓ ନ୍ୟାୟର ପ୍ରତିଷ୍ଠା ପାଇଁ । ବିଶ୍ୱାସ ଉପରେ ସମସ୍ତେ ଥିଲେ ନିର୍ଭରଶୀଳ ।

ରାଜା ଶଙ୍କରପ୍ରତାପ ଗ୍ରାମର ସର୍ବରାକାର ଓ ଚୌକିଦାର ମାନଙ୍କୁ ପୂର୍ଣ୍ଣ ବିଶ୍ୱାସ କରୁଥିଲେ ଏବଂ ସେମାନଙ୍କୁ ସବୁବେଳେ ଶାସନର ବିଶିଷ୍ଟ ଅଂଶ ମନେକରି ଯଥୋଚିତ ସମ୍ମାନ ଦେଉଥିଲେ । କେବଳ ଏହି ଆସ୍ଥା ଓ ବିଶ୍ୱାସ ଯୋଗୁଁ ଚୌକିଦାର ମାନେ ସ୍ୱଳ୍ପ କିଛି ନିଷ୍କର ଜମି ବୃତ୍ତିଭୋଗ ଭାବରେ ପାଇ ଯେଉଁ ସେବା ଦେଉଥିଲେ ତାହା ଗର୍ବ ଓ ଗୌରବର କଥା । ସେମାନଙ୍କର ସେବା ଜନସାଧାରଣଙ୍କ ପାଇଁ ନିରାପତ୍ତାର ସେବା । ଅସ୍ପୃଶ୍ୟ ଜାତି ହେଲେହେଁ ସାମାନ୍ୟ ମାତ୍ର ଦରମାରେ ଓ ସ୍ୱଳ୍ପ କିଛି ନିଷ୍କର ଜମିର ବିନିମୟରେ ଅହୋରାତ୍ର ୨୪ ଘଣ୍ଟା ସେମାନେ ପାଇବାର କୌଣସି ଆଶା ନରଖି ନ୍ୟାୟ ଓ ନିରପେକ୍ଷ କର୍ତ୍ତବ୍ୟ କରିଯାଇଥିଲେ ତାହା ଦରବାର ଶାସନରେ ସ୍ୱୀକୃତି ପାଇ ଶାସନର ଏକ ମୁଖ୍ୟ ଧାରାଭାବରେ ଗୃହୀତ ହୋଇଥିଲା । ଚୌକିଦାର ମାନେ ନିଷ୍ପତ୍ତି ଦେଉନଥିଲେ କିମ୍ବା ଆଦେଶ ନିର୍ଦ୍ଦେଶ ଦେଉନଥିଲେ । ତେବେ ସେମାନଙ୍କୁ ଯେଉଁ କ୍ଷମତା ଦିଆଯାଇଥିଲା ତାହା ସେମାନେ ନିର୍ଭିକ ଭାବରେ ଠିକଣା ସମୟରେ ଓ ଠିକଣା ସ୍ଥାନରେ ଠିକ୍ ଠିକ୍ ଭାବରେ ପ୍ରୟୋଗ କରୁଥିଲେ ଏବଂ ସମସ୍ତେ ସେ ସବୁକୁ ଶାସନର ପ୍ରକ୍ରିୟା ମଧ୍ୟରେ ସ୍ୱୀକାର କରୁଥିଲେ । ଗାଁ ମାନଙ୍କୁ

କେହି ଅପରିଚିତ ଲୋକ ଆସିଲେ ତାହାର କାର୍ଯ୍ୟକଳାପ ସନ୍ଦେହ ମୁକ୍ତ କି ନୁହେଁ ସେ ସମସ୍ତ ବିଷୟରେ ଚୌକିଦାର ଅବଗତ ହୋଇ ଉପରକୁ ରିପୋର୍ଟ ଦିଅନ୍ତି । ରାତିରେ ଜାଗ୍ରତ ରହି ଗାଁର ଏମୁଣ୍ଡରୁ ସେ ମୁଣ୍ଡ ଯାଏ ପହରା ଦିଅନ୍ତି । ମାଡ଼୍‌ପିଟ୍, କଳିଗୋଳ, ଜଙ୍ଗଲ ସୁରକ୍ଷା, ବିଦ୍ୟାଳୟରେ ଛାତ୍ରଛାତ୍ରୀ ଉପସ୍ଥାନ, ଶିକ୍ଷକ ମାନଙ୍କର ଅନୁପସ୍ଥିତି, ଚୋରୀ, ଫସଲ ଉଜାଡ଼, ହିଂସ୍ର ଜନ୍ତୁ ମାନଙ୍କ ଉପ୍ତାତ, ହତ୍ୟା, ମଦ୍ୟପାନ ଜନିତ ଗଣ୍ଡଗୋଳ, ସାମାଜିକ କାର୍ଯ୍ୟକଳାପ, ଯାନିଜାତ୍ରା ଆଦି ପ୍ରତ୍ୟେକ ବିଷୟରେ ସେମାନେ ରିପୋର୍ଟ କରନ୍ତି ଏବଂ ସାମାଜିକ ଶୃଙ୍ଖଳାରେ ସାହାଯ୍ୟ କରନ୍ତି । କୌଣସି ତଦନ୍ତ ସମୟରେ ଚୌକିଦାରର ସାକ୍ଷ୍ୟ ସବୁବେଳେ ଗ୍ରହଣ ଯୋଗ୍ୟ ହୋଇଥାଏ । ଗାଁ ଗୁଡ଼ିକର ବେସରକାରୀ ଅଥଚ ସ୍ୱୀକୃତିପ୍ରାପ୍ତ ସର୍ବମାନ୍ୟ କର୍ତ୍ତୃପକ୍ଷ ସର୍ବରାକାର ମାନଙ୍କୁ ଚୌକିଦାର ପ୍ରତ୍ୟେକ କାର୍ଯ୍ୟରେ ସାହାଯ୍ୟ ସହଯୋଗ କରନ୍ତି । ଫଳରେ ଗାଁର ପ୍ରତ୍ୟେକ ଖବର, ଚାଷବାସ ଠାରୁ ଆରମ୍ଭ କରି ବେପାର ବଣିଜ ଆଦି ପ୍ରତ୍ୟେକ ବିଷୟ ସହିତ ଗ୍ରାମ ବାସୀମାନେ କିପରି ସଂପୃକ୍ତ ଓ ସେମାନଙ୍କର ଆଗ୍ରହ ଅନାଗ୍ରହ କିପରି ଓ କେତେଦୂର ପରିବ୍ୟାପ୍ତ ତାହା ଚୌକିଦାର ମାନଙ୍କର ରିପୋର୍ଟରୁ ତୁରନ୍ତ ଦରବାର ଶାସନ କର୍ତ୍ତୃପକ୍ଷଙ୍କ ଠାରେ ପହଞ୍ଚୁଥିଲା । ଚାଷ ବାସ କିପରି, ବନ୍ୟା ବା ମରୁଡ଼ି ହୋଇ କେବେ ଓ କେତେ ଫସଲ ହାନି ହୋଇଛି, ଫସଲ ଆମଦାନୀ କିପରି ତାହା ଠିକ୍ ଭାବରେ ବିଜୁଳି ବେଗରେ ପହଞ୍ଚି ପାରୁଥିଲା । ଏହି ଖବର ଅନୁସାରେ ଯଥା ସମ୍ଭବ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଥିଲା । ତେଣୁ ଦରବାର ଶାସନ ସବଳୀଳ ଭାବରେ ସିମୀତ ଆର୍ଥିକ ପରିସର ମଧ୍ୟରେ ସୁଖଶାନ୍ତି ରେ ଚାଲୁଥିଲା । ସର୍ବରାକାରୀ ଓ ଚୌକିଦାରୀ ବ୍ୟବସ୍ଥା ଯୋଗୁଁ ଚୋରୀ, ଫସଲ ଉଜାଡ଼, ମାଡ଼ପିଟ୍, ଗଣ୍ଡଗୋଳ, କଳିକଜିଆ ଅସାମାଜିକ କାର୍ଯ୍ୟକଳାପ ଆଦି ପ୍ରାୟତଃ ଗାଁ ମାନଙ୍କରେ ଘଟୁନଥିଲା । ଅଭାବ ଜନିତ ଦୁଃଖକଷ୍ଟ ଥିଲେ ହେଁ ସମସ୍ତେ ନିର୍ଭୟରେ ଓ ଆନନ୍ଦ ମନରେ ଚଳପ୍ରଚଳନ କରୁଥିଲେ । ସାହାଯ୍ୟ ସହଯୋଗ ସହ ପରସ୍ପର ମଧ୍ୟରେ ଉପଯୁକ୍ତ ବୁଝାମଣା ଥିଲା ।

ଗ୍ରାମର ସର୍ବରାକାର ମାନେ ଯଥାର୍ଥରେ ଗାଁର ପରିଚାଳକ ଥିଲେ । ସେମାନେ ଶାସକ ଭାବରେ କ୍ଷମତାଶାଳୀ ନଥିଲେ ହେଁ ଦରବାର ନିର୍ଦ୍ଦେଶ ଓ ଆଦେଶ ଅନୁସାରେ ସ୍ୱୀକୃତି ପ୍ରାପ୍ତ ଓ ସାମାଜିକ ଦୃଷ୍ଟି କୋଣରୁ ଦାୟିତ୍ୱ ପରିଚାଳକ ଭାବରେ କାର୍ଯ୍ୟକରୁଥିଲେ । ଗ୍ରାମର ଶାନ୍ତି ଶୃଙ୍ଖଳା ରକ୍ଷା, କୋଠ ଘର ପରିଚାଳନା,

ସର୍ବସାଧାରଣ ଅନୁଷ୍ଠାନ ଗୁଡ଼ିକର ରକ୍ଷଣା ବେକ୍ଷଣ, ସରକାରୀ କର୍ମଚାରୀ ମାନଙ୍କ ସହିତ ସହଯୋଗ ଓ ସେମାନଙ୍କ କାର୍ଯ୍ୟରେ ସାହାଯ୍ୟ, ଜଙ୍ଗଲ ସଂପଦ ଓ ଗ୍ରାମ୍ୟ ସଂପଦର ସୁରକ୍ଷା, ଯାନି ଜାତ୍ରା, ଦେବାଦେବୀ ମନ୍ଦିର ବା ଆସ୍ଥାନର ପରିଚାଳନା, ଅତିଥି ଅଭ୍ୟାଗତ ମାନଙ୍କ ପାଇଁ ବ୍ୟବସ୍ଥା, କୃଷି ବ୍ୟବସ୍ଥା, ରାଜସ୍ୱ ଆଦାୟ ଆଦି ବହୁବିଧ କାର୍ଯ୍ୟକ୍ରମ ସେମାନେ ନିପୁଣତାର ସହିତ କାର୍ଯ୍ୟନିଷ୍ଠ ବେସରକାରୀ କର୍ମଚାରୀ ଭାବରେ କରୁଥିଲେ । ସେମାନଙ୍କର ମନୋଭାବଥିଲା ସବୁବେଳେ ସେବାପରାୟଣ । ଗ୍ରାମୋନ୍ନତି କାର୍ଯ୍ୟକ୍ରମରେ ସେମାନେ ପୁରା ସମୟ ବିନିଯୋଗ କରୁଥିଲେ । ସେମାନେ ଦରମା ପାଉନଥିଲେ, ପାଉଥିଲେ ଦରବାର ଶାସନର ସମ୍ମାନ ଏବଂ ଜନସାଧାରଣଙ୍କର ଅଶେଷ ଶ୍ରଦ୍ଧା । ସେମାନଙ୍କର ଗ୍ରାମ ଓ ଗ୍ରାମବାସୀ ପ୍ରତି ସେବା ଥିଲା ଅକଳନ୍ତି । ପାଇବାର କୌଣସି ଆଶାନରଖି ସେମାନେ ନିଜର ଗ୍ରାମକୁ ସର୍ବଶ୍ରେଷ୍ଠ ଭାବରେ ଗଢ଼ିବାକୁ ସବୁବେଳେ ନିଜର କର୍ତ୍ତବ୍ୟ କରିଯାଉଥିଲେ , ଯାବତୀୟ କୌଣସି ଘଟଣା ବା ଦୁର୍ଘଟଣା ଘଟିଲା ତାହା ସଂପର୍କରେ ସେମାନେ ନିଜ ନିଜର ମନ୍ତବ୍ୟ ବା ପରାମର୍ଶ ଅଥବା ପ୍ରସ୍ତାବଦେଇ ଉପର କର୍ତ୍ତୃକକ୍ଷଙ୍କୁ ଜଣାଉଥିଲେ । ଅବସ୍ଥା ଅନୁସାରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଉଥିଲା । ଏହି ପ୍ରକ୍ରିୟାରେ ଅନିତୀ, ଦୁର୍ନିତୀ, ଲାଞ୍ଚ ମିଛ ଆଦିର ବିଭିନ୍ନ ଘଟଣା ମାନ ଗ୍ରାମ ମାନଙ୍କରେ ଘଟୁ ନଥିଲା । ରାଜା ଶଙ୍କରପ୍ରତାପ ସର୍ବରାକାର ମାନଙ୍କୁ ଓ ଚୌକିଦାର ମାନଙ୍କୁ ଶାସନର ଏକ ପ୍ରଧାନ ଅଙ୍ଗ ବିଚାରୀ ଅତ୍ୟନ୍ତ ବିଶ୍ୱାସ କରୁଥିଲେ । ସେମାନଙ୍କୁ କେହି ଅସମ୍ମାନ କଲେ କିମ୍ବା ହଇରାଣ ହରକତ କଲେ ତାହା ସେ ସହ୍ୟ କରୁନଥିଲେ ।

ଥରକର ଘଟଣା । କୌଣସି ଏକ ଗ୍ରାମର ସର୍ବରାକାର ଆସିଲେ ଆଦାୟ କରିଥିବା ଖଜଣା ଟଙ୍କା ଟ୍ରେଜେରୀରେ ଜମା କରିବାକୁ । ସେତେବେଳକୁ ବର୍ଷକରେ ଦୁଇକିସ୍ତିରେ ଖଜଣା ଅସୁଲ କରାଯାଉଥିଲା । ସେତେବେଳେ ଚଳୁଥିଲା ଟଙ୍କା, ଅଧୁଲି, ସୁଉକି, ଅଣା, ପଇସା । ବ୍ରିଟିଶ୍ ଶାସିତ ଅଞ୍ଚଳ ଓ ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଢ଼େଙ୍କାନାଳର ଖଜଣା ହାର ଥିଲା ସବୁଠାରୁ କମ୍ । ସର୍ବରାକାର ଜଣଙ୍କ ଯେଉଁ ଟଙ୍କା ଆଣିଥିଲେ ତହିଁରେ ଟଙ୍କା, ଅଧୁଲି ଓ ସୁଉକୀର ପରିମାଣ ଥିଲା ଅଳ୍ପ । ଅଣା, ପଇସା, ଅଧଲା ଓ ପାହୁଲାର ପରିମାଣ ଥିଲା ବହୁତ ବେଶୀ । ତାହାକୁ ଦୁଇଟି ବସ୍ତାରେ ଗଣା ପୋଛାକରି ଜଣେ ଭାରୁଆ ସାହାଯ୍ୟରେ କାନ୍ଧେଇ ଆଣିଥିଲେ । ଆଜିକାଲି ପରି ଯାତାୟତ ର ସୁବିଧା ସେତେବେଳେ ନଥିଲା । ତେଣୁ ଚାଲି ଚାଲି ଆସି ସଂଧ୍ୟାବେଳକୁ

ଢ଼େଙ୍କାନାଳରେ ପହଞ୍ଚି ସେମାନେ ରହିଲେ ଗୁଳୁରୀ ହାଟରେ । ଆଜି ତାହା ଇନ୍ଦିରା ମାର୍କେଟରେ ପରିଣତ ହୋଇଛି । ମେଞ୍ଚିଆ ସହିତ ଟିଣ ଛପର ଖୋଲାଘର । ଦୈନନ୍ଦିନ ହାଟ ସେଠାରେ ବସେ ଏବଂ ଅନେକ ଯିବା ଆସିବା କରୁଥିବା ଲୋକ ସେଠାରେ ରୋଷେଇବାସ କରି ରହନ୍ତି ଏବଂ ନିଜ ନିଜର କାମ ସାରି ଫେରିଯାଆନ୍ତି । ଚୋରି ଆଦିର ଭୟ ନଥିଲା । କେହି କାହାରି ପ୍ରତି ଜୁଲମ କରୁନଥିଲେ ବରଂ ଅତିଥି ଅଭ୍ୟାଗତ ବୋଲି ସେମାନଙ୍କ ପ୍ରତି ପ୍ରାୟତଃ ସମସ୍ତଙ୍କର ସଦିଚ୍ଛା ରହୁଥିଲା । ତା'ପର ଦିନ ନିତ୍ୟକର୍ମ ଶେଷ କରି କଚେରୀ କାମ ଆରମ୍ଭ ପୂର୍ବରୁ ସେମାନେ ଆସିଲେ ଖଜଣା ଟଙ୍କା ଜମାଦେବାକୁ । ଯିଏ ଗଣାଗଣି କରି ଟଙ୍କା ରଖିବେ ଏବଂ ସୁଇ ମୋହର ଦେଇ ରସିଦ୍ ଦେବେ ସେ ପଚାରିଲେ କଣ ସବୁ ଟଙ୍କା ଅଧୁଲି ଆଣିଛ ନା, ପଇସା, ଅଧଲା, ପାହୁଲା ଆଣିଛ । ସର୍ବରାକାର ବିନୟାବନତ ଭାବରେ ଉତ୍ତର ଦେଲା ଆଜ୍ଞା, ଟଙ୍କା ଅଧୁଲି କାହୁଁ ମିଳିବ ? ପ୍ରଜାମାନଙ୍କ ଉପରେ ଯେପରି ଖଜଣା ଧାର୍ଯ୍ୟ କରାଯାଇଛି ସେଥିରେ ପଇସା ଅଧୁଲା, ପାହୁଲା ବେଶୀ । ' ଏହା ଗଣିବାକୁ ମୋର ବେଳ ନାହିଁ । ଏହାକୁ ଟଙ୍କା ଓ ଅଧୁଲି କର ନଚେତ୍ ରାଜା ସାହେବ ଙ୍କୁ ରିପୋର୍ଟ କରାଯିବ । ସଂପୃକ୍ତ କର୍ମଚାରୀ ଏହିଭଳି କହି ଅନ୍ୟ ନିରର୍ଥକ କାମରେ ମନ ଦେଲେ । କିନ୍ତୁ ସର୍ବରାକାରଙ୍କ ଠାରୁ ଖଜଣା ଟଙ୍କା ରଖିଲେ ନାହିଁ । ଅପରନ୍ତୁ ପଇସା, ଅଧଲା, ପାହୁଲା ବସ୍ତାରେ ଭାରୁଆ ସାହାଯ୍ୟରେ କାନ୍ଧଇ ଆଣିଥିବାରୁ ଏକ ଶକ୍ତ ଅପରାଧ କରିଛନ୍ତି କହି ରାଜା ସାହେବଙ୍କୁ ରିପୋର୍ଟ କରି ଦଣ୍ଡ ଦିଆଇବାର ଧମକ୍ ଦେଲେ । ରାଜା ସାହେବ ଏ କଥା ଜାଣନ୍ତି ନାହିଁ । ଜାଣିଲେ ବା ପଇସା, ଅଧଲା, ପାହୁଲା, ଆଣିବା ଦୋଷ କିପରି ଦେବେ ? କିନ୍ତୁ ସଂପୃକ୍ତ କର୍ମଚାରୀ ଏହିଭଳି କପୋଳ କଳ୍ପିତ କଥା କହି ସର୍ବରାକାରଙ୍କ ମନରେ ଧିରେ ଧିରେ ଭୟ ସଂଚାର କରିବା ପାଇଁ ଉଦ୍ୟମ କରିଚାଲିଲେ । ଏହା ସହିତ ଖଜଣା ଟଙ୍କା ଯାହା ଦରବାର ଶାସନର ପ୍ରାପ୍ୟ ତାହା ବି ମଧ୍ୟ ଗ୍ରହଣ କଲେନାହିଁ । ବିଚରା ସର୍ବରାକାର ବସିବସି ଅନୁରୋଧ ରକ୍ଷା ନହେବାରୁ ପୁଣି ଟଙ୍କା ଭାର ଧରି ସେହି ଗୁଳୁରୀ ହାଟକୁ ଫେରିଆସିଲେ ରାତ୍ରିଯାପନ କରିବା ପାଇଁ । ଦୁଇଦିନ କାଳ ଏହିପରି ବିତିଗଲା ।

ତା' ପରଦିନ ସେହିପରି ପହଞ୍ଚି ପାଉଣା ରଖିବା ପାଇଁ ସେ ରାଜ କର୍ମଚାରୀଙ୍କୁ ଅନୁରୋଧ କଲା ଓ ନିଜେ ଆଣିଥିବା ଡ଼ାଲି ଚାଉଳ ସରିଯାଇଥିବା କଥା ମଧ୍ୟ ତାଙ୍କୁ ଜଣାଇଥିଲା । ଫଳରେ ସେହି ସଂପୃକ୍ତ କର୍ମଚାରୀ ନିଜର ଫନ୍ଦାଫିକର କରି ସାହାଯ୍ୟ କରିବାକୁ ନିଜଆଡୁ ପ୍ରସ୍ତାବ ଦେଲେ । ପଚାରିଲେ ପୂର୍ବ ଖଜଣା କିସ୍ତିର କିଛି

ବାକି ରଖିଛ କି? ଉତ୍ତର ହେଲା ନାହିଁ । ଏବେ ଏଥିରେ କେତେଟଙ୍କା ଅଛି ? ଉତ୍ତର ହେଲା ଏ କିସ୍ତିରେ ଯେତିକି ଜମା ରଖିବା କଥା ସେତିକି ମାତ୍ର ଅଛି । ତେବେ ତମ ପାଖରେ ଅଧିକ ଟଙ୍କା କେତେ ଅଛି ? 'ଯେତିକି ଚଳିବା ପାଇଁ ଆଣିଥିଲି ତାହା ତିନିଦିନ ଧରି ରହିବାରୁ ସରିଲାଣି, ଆଜି, ଖାଇବାକୁ କିଛି ନାହିଁ । ଉପାସରେ ରହିବାକୁ ହେବ କିମ୍ବା ଫେରିଯିବାକୁ ହେବ' । ସରଳ ସମାଧାନ କରି ସଂପୃକ୍ତ କର୍ମଚାରୀ ଜଣକ କହିଲେ 'ଖଜଣା ଜମା କରିବା ଟଙ୍କାରୁ ମୋର ପାଉଣାକୁ କିଛି ଦିଅ ଏବଂ ଯାହା ଦେବ ତାହା ବାକି ତାଲିକା କରିଦିଅ । ଆସନ୍ତା ଜମାବେଳକୁ ସେତକ ଭରଣ କରିଦେବ । ତେବେ ଗଣାଗଣି କରିଦା ନଚେତ୍ ଅନ୍ୟ ଜରୁରୀ କାର୍ଯ୍ୟରେ ମୁଁ ଲାଗିଯିବି ' । ହଇରାଣ ହରକତ ହେବା ଅପେକ୍ଷା ଭୋକଉପାସରେ ପଡ଼ରହିବା ବା ଟଙ୍କା ଧରି ଫେରିଯିବା ଅପେକ୍ଷା ଏହି ପ୍ରସ୍ତାବକୁ ଗ୍ରହଣକରି ନେଲେ ସର୍ବରାକାର । ଅବଶ୍ୟ ବାକି ରହିବା ଖଜଣା ପାଇଁ ସର୍ବରାକାରଙ୍କୁ ମଧ୍ୟ କୈଫତ ଦେବାକୁ ହେବ ଏବଂ ସେଥିପାଇଁ କୈଫତ୍ ଦେବେ ପଛେକେ କିନ୍ତୁ ବର୍ତ୍ତମାନର ପରିସ୍ଥିତିରୁ ସେ ଆଗେ ମୁକ୍ତ ହୋଇଯାନ୍ତୁ ।

ତୃତୀୟ ଦିନ ଗଣାଚାଲିଲା । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଜଣେ ଟ୍ରେଜେରୀଗାର୍ଡ଼ ଏହା ଦେଖୁଥାନ୍ତି ଓ ଶୁଣୁଥାନ୍ତି । ଦିନ ଗୋଟାକ ବେଳକୁ ସେହି ଟ୍ରେଜେରୀ ଗାର୍ଡ଼ ଡ଼ିଉଟି ବଦଳରେ ପାଲେସ୍ ପରିସର ମଧ୍ୟରେ ଥିବା ତାଙ୍କ ରହଣି ସ୍ଥଳକୁ ଆସିଲେ । ଆସିଲାବେଳେ ରାଜା ସାହେବଙ୍କୁ ଏକାକି ବସିଥିବାର ଦେଖିଲେ । ସେ ପୋଲିସ କାଇଦାରେ ଅଭିନନ୍ଦନ ଜଣାଇବାପରେ ରାଜାସାହେବ ତାଙ୍କୁ ପଚାରିଲେ କ'ଣ ସବୁ ଖବର । ପୋଲିସ ଗାର୍ଡ଼ ଜଣକ ସର୍ବରାକାରଙ୍କ ହଇରାଣ ହେବାର ବିଶେଷ ଭାବରେ ବ୍ୟଥିତ ହୋଇଥିଲା ଏବଂ ତାଙ୍କଠାରେ ପ୍ରବଳ ପ୍ରତିକ୍ରିୟା ଦେଖାଯାଇଥିଲା । ସେ ନିର୍ବିକାରଭାବରେ ଓ ନିର୍ଭୟରେ ଘଟଣାଟିର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ରାଜା ସାହେବଙ୍କ ନିକଟରେ ପ୍ରକାଶ କରିଥିଲେ ।

ପ୍ରଥମେ ସର୍ବରାକାର ମାନଙ୍କୁ ଡ଼କାଗଲା ସାକ୍ଷାତ ପାଇଁ । ବିଭିନ୍ନ ପ୍ରଶ୍ନ କଲେ ରାଜା ସାହେବ କେବେ ଓ କ'ଣ ପାଇଁ ଆସିଥିଲେ, ଗାଁର ଖବର, ଚାଷବାସ ଖବର, କାମ ଧନ୍ଦାର ଖବର, ପାଠ ପଢ଼ା ବାଡ଼ି ବଗିଚା । ଦେହ ପା ଆଦିର ପ୍ରତ୍ୟେକ ଖବର ସେ ବୁଝିନେଲେ । ଖଜଣା ଆଦାୟ ବେଳେ ଜୁଲମ୍ କରିବାକୁ ପଡ଼ିଲା ନା ଆପଣାଛାଏଁ ପ୍ରଜାମାନେ ଖଜଣା ଦାଖଲ କଲେ । ତାହା ମଧ୍ୟ ବୁଝିନେଲେ । ତାହାପରେ ଅସଲ କଥାକୁ ଆସିଲେ ଏବଂ ସର୍ବରାକାର ତାଙ୍କ ଇଛା ବିରୁଦ୍ଧରେ ଘଟଣାର ସମସ୍ତ ସତ୍ୟ କଥା ପ୍ରକାଶ କଲେ ।

ଏହାପରେ ସଂପୃକ୍ତ କର୍ମଚାରୀଙ୍କୁ ଡ଼କାଗଲା ସାକ୍ଷାତ ପାଇଁ । ଗୁରୁଗମ୍ଭୀର କଣ୍ଠରେ ପଚାରିଲେ ମହାଶୟଙ୍କୁ ଚିହ୍ନିଛ । ଉତ୍ତର ଆସିଲା ହଁ । ତିନିଦିନ ପର୍ଯ୍ୟନ୍ତ ତାଙ୍କ ଠାରୁ ଖଜଣା ଟଙ୍କା ନରଖି କେଉଁ ମାତାବରୀ କ୍ଷମତାରେ ତାଙ୍କୁ ହଇରାଣ କରିଛ ? ଯିଏ ଖଜଣା ଆକାରରେ ଟଙ୍କା ଆଦାୟକରି ଟ୍ରେଜେରୀରେ ଜମା ଦିଅନ୍ତି ଏବଂ ଯେଉଁ ଟଙ୍କାରେ ମୁଁ ବା ତମପରି କର୍ମଚାରୀ ଭତ୍ତା ବା ଦରମା ପାଇ ଚଳପ୍ରଚଳ ହୁଅନ୍ତି ତାଙ୍କ ପ୍ରତି ସଦୟ ଆଚରଣ ନ କରି ନିର୍ଦ୍ଦୟ ଆଚରଣ କ'ଣ ନିମକ ହାରାମୀ ନୁହେଁ ? ଏହାର ପ୍ରାୟଶ୍ଚିତ କରି ହୃତସମ୍ମାନ ଓ ଗୌରବ କିପରି ଫେରାଇ ଆଣିବାକୁ ହେବ ତାହା ତୁରନ୍ତ ଠିକ୍ କରି ମୋତେ କୁହ । ଆଦେଶ ଦେଲେ ନିଜ ସାମନାରୁ ଚାଲିଯିବା ପାଇଁ । ନିର୍ମଳ ହୃଦୟରେ ଓ ସ୍ଥିର ଚିତ୍ତରେ ଅନୁତାପ ଭରା ଭାଷାରେ ଜଣେ କ୍ଷମତାବାନ୍ ଓ ସାର୍ବଭୌମ ରାଜା ହିସାବରେ ସର୍ବରାକାର ସମ୍ମୁଖରେ ଭୁଲ ସ୍ୱୀକାର କରି ସାଧାରଣ ମୁରବୀ ଶ୍ରେଣୀୟ ବ୍ୟକ୍ତି ହିସାବରେ କ୍ଷମା ମାଗିନେଲେ ରାଜା ଶଙ୍କର ପ୍ରତାପ । ଏହା ରାଜାଙ୍କର ବିଶାଳତା ଏବଂ ଉଦାରତା ନୁହେଁ ତ ଆଉ କ'ଣ ?

ହାତଗଣତି ମୁଷ୍ଟିମେୟ ସ୍ୱାର୍ଥାନ୍ଧ ବ୍ୟକ୍ତି ଯେଉଁମାନେ ନିଜର ଫାଇଦା ପାଇଁ ମାୟାର ଜାଲ ବିଛାଇ ସର୍ବସାଧାରଣ ବା ବହୁସଂଖ୍ୟାରେ ଗରୀବ ଅଜ୍ଞାନ ଲୋକଙ୍କୁ ଶୋଷଣ ବା ହଇରାଣ କରିବା ପାଇଁ ସବୁବେଳେ ଚକ୍ରାନ୍ତମୂଳକ କାର୍ଯ୍ୟରେ ଲିପ୍ତ ଥିଲେ, ରାଜା ଶଙ୍କର ପ୍ରତାପଙ୍କ ଯୋଗୁଁ ସେମାନଙ୍କର ଆଶା ଚରିତାର୍ଥ ହୋଇପାରୁ ନଥିଲା । ତେଣୁ ଏହି ବୃତ୍ତିହୀନ ମଳାଙ୍ଗବାଦୀ ଦଳ ରାଜା ଶଙ୍କର ପ୍ରତାପଙ୍କ କେବଳ ନିନ୍ଦାଗାନ କରିନାହାନ୍ତି, ଶତ୍ରୁତା କରିବାକୁ ମଧ୍ୟ ଭୁଲିନାହାନ୍ତି । ପ୍ରଶ୍ନ ଉଠେ ଏହି ସାମାନ୍ୟକାରୀ ପରଜୀବୀମାନଙ୍କୁ ଜଣେ କ୍ଷମତାବାନ ସାର୍ବଭୌମ ରାଜା ପ୍ରାଣଦଣ୍ଡ କିବା ନିର୍ବାସନ ପରି ଦଣ୍ଡଦେଇ ଜବତ ନକଲେ କାହିଁକି ? କରିପାରିଥାନ୍ତେ । ସେ କ୍ଷମତା ଥିଲା ସେତେବେଳର ରୀତି ଅନୁସାରେ କିନ୍ତୁ ରାଜା ଶଙ୍କର ପ୍ରତାପ ସେପରି ଚରମଦଣ୍ଡ ଦେବା କଥା ସ୍ୱପ୍ନରେ ସୁଦ୍ଧା ଚିନ୍ତା କରୁନଥିଲେ । ଅନ୍ୟ କ୍ଷେତ୍ରରେ ରାଜା ଶଙ୍କର ପ୍ରତାପଙ୍କର ବିଚାର ଖଣ୍ଡା ଧାର ଠାରୁ ଆହୁରି ଅଧିକ ଶାଣିତ ଥିଲା । ଏଥିରେ ସନ୍ଦେହ ନାହିଁ । ସ୍ୱାଧିନତା ପାଇବାପାଇଁ ଆମ୍ଭ ମାନଙ୍କର ଅବଦାନ କିଛି କମ୍ ନୁହେଁ । ଯେଉଁମାନେ ଆଜି ଅଶ୍ଳୀଳ ଭାଷାରେ ରାଜା ମହାରାଜା ମାନଙ୍କର କେବଳ ଗୁଡ଼ିଏ ମନ୍ଦ କଥା ଇତିହାସର ଛିଟିକା ଦେଇ ଅନର୍ଥ ବଖାଣି ବସନ୍ତି ସେମାନେ ନିଶ୍ଚୟ ଏ କଥା

ଜାଣନ୍ତି ଯେ ପ୍ରତ୍ୟକ୍ଷ ବା ପରୋକ୍ଷଭାବରେ ଜାତୀୟ ଆନ୍ଦୋଳନକୁ ରାଜାମହାରାଜାମାନେ ଅନେକ ଦିଗରୁ ଉତ୍ସାହିତ ଓ ପ୍ରୋତ୍ସାହିତ କରାଇଥିଲେ । ବଂଶଗତ, ରକ୍ତଗତ ପରମ୍ପରା ଅନୁସାରେ ସେମାନେ ଚିରକାଳ ସ୍ୱାଧିନତା ପ୍ରିୟ । କାହାର ବଶତା ସ୍ୱୀକାର ସେମାନେ କରିପାରନ୍ତି ନାହିଁ । ସ୍ୱାଧିନତାର ଅର୍ଥ ଓ ଏହାର ମୂଲ୍ୟ ଓ ମର୍ଯ୍ୟାଦା ସେମାନେ ବୁଝନ୍ତି, ଏଥିପାଇଁ ପ୍ରାଣକୁ ବାଜି ରଖିପାରନ୍ତି । ଏହାକୁ କିପରି ହାସଲ କରାଯାଏ ଏବଂ ଏହାର ସାର୍ଥକ ବିନିଯୋଗରେ ଜୀବନର ମୂଲ୍ୟବୋଧ କିପରି ଗୁଣାତ୍ମକ ଭାବରେ ବୃଦ୍ଧି ପାଏ ତାହା ଅନୁଭବ କରିନ୍ତି ଏହି ରାଜା ମହାରାଜାମାନେ ।

ମୋର ବାଲ୍ୟଜୀବନ ଷଢ଼େଇକଳାର ସଂସ୍କୃତି ଓ ଇତିହାସର ପ୍ରଭାବରେ ଗଢ଼ି ଉଠିଥିଲା ସତ୍ୟ କିନ୍ତୁ ପରିପୂର୍ଣ୍ଣ ବିକାଶ ଲାଭ କଲା ରାଜା ଶଙ୍କର ପ୍ରତାପଙ୍କ ସହିତ ମୋର ବିବାହ ହେବାପରେ । ଅନ୍ୟକୁ ସୁନାମ ଧନ୍ୟ ଭାବରେ ଗଢ଼ିବା ଥିଲା ତାଙ୍କରି ଏକ ଐଶ୍ୱରିକ ଶକ୍ତି । ଆଦର୍ଶ ପୁତ୍ର, ଆଦର୍ଶ ସ୍ୱାମୀ, ଆଦର୍ଶ ପିତା, ଆଦର୍ଶ ଭାଇ, ଆଦର୍ଶ ଅଭିଭାବକ ଓ ଆଦର୍ଶ ଶାସକ ଭାବରେ ସେ ପ୍ରତ୍ୟେକ କ୍ଷେତ୍ରରେ ନିଜର ଗଭୀରତା ପ୍ରମାଣିତ କରଥିଲେ । ମୋର ସୀମିତ ଜ୍ଞାନର ପରିସରକୁ ସେ ଆଦର୍ଶ ସ୍ୱାମୀ ହିସାବରେ ଅଭିବୃଦ୍ଧି କରାଇଥିଲେ । ଏହା ମୋର ଉତ୍ତର ଜୀବନର କର୍ମକ୍ଷେତ୍ରକୁ ପର୍ଯ୍ୟାପ୍ତ ଭାବରେ ଋଦ୍ଧିମନ୍ତ କରିଛି । ନାରୀ ସୁଲଭ ଭୟ ମୋର ଘୁଞ୍ଚିଛି ତାଙ୍କରି ଯତ୍ନମୂଳକ ଶିକ୍ଷା ଯୋଗୁଁ । ନିର୍ଭୀକ ଭାବରେ ନାନା ସମସ୍ୟାକୁ ମୁକାବିଲା କରି ସମାଧାନ କରିବାର ଶକ୍ତି ମିଳିଛି ତାଙ୍କରି ପ୍ରେରଣା ଯୋଗୁଁ । ନାନା ଘଟଣା ବା ଆଲୋଚନାରୁ ସତ୍ୟକୁ ଉଦ୍‌ଘାଟନ କରିବାର ବିଚାର ପାଇଛି ତାଙ୍କରି ଅନୁକମ୍ପାରୁ । ସେ କେବଳ ମୋର ଜୀବନ ସାଥି ନଥିଲେ; ଥିଲେ ମୋର ଜୀବନର ପରମ ଆରାଧ୍ୟ, ପରମଆଦର୍ଶ ଏବଂ ସର୍ବକାଳ ପାଇଁ ମୋ ଜୀବନର ଦିଗ ଦର୍ଶକ ଏବଂ ନିୟନ୍ତକ । ତାଙ୍କ କର୍ମମୟ ଜୀବନର ପ୍ରତ୍ୟେକ ଚିନ୍ତାଧାରା, ତାଙ୍କ ଆଧ୍ୟାତ୍ମିକ ଜୀବନର ସୂକ୍ଷ୍ମ ଅନୁଚିନ୍ତା ଏବଂ ତାଙ୍କ ଅକଳନ୍ତି ଜ୍ଞାନ ଭଣ୍ଡାରର ପ୍ରତ୍ୟେକ ପ୍ରତିଫଳନ ଯୋଗୁଁ ମୋତେ ଏକ ଶ୍ରେଷ୍ଠ ଭାରତୀୟ ନାରୀର ମୂର୍ତ୍ତୀମନ୍ତ ପ୍ରତୀକ ହିସାବରେ ଗଢ଼ିଥିଲା । ଏହା ଭାବିଲା ବେଳେ ନିଜକୁ ଜଣେ ପ୍ରେରଣାମୟୀ ସ୍ତ୍ରୀ, ସ୍ନେହମୟୀ ଭଗ୍ନି ଓ ଅମୃତମୟୀ ମା' ହିସାବରେ ନିଜକୁ ମୁଁ ଗଢ଼ି ପାରିଛି । ଏହା ମୋର ପରମ ସୌଭାଗ୍ୟ । ଜୀବନର ସାର୍ଥକତା ମଧ୍ୟ କର୍ମମୟ ଜୀବନର ଅନେକ ଘଟଣା ମନର ସ୍ମୃତି ପଟକୁ ଆପଣାଛାଏଁ ଅନେକ

ସମୟରେ ଆସିଯାଉଛି । ଏହା ଅର୍ଥବୋଧକ, ଶିକ୍ଷଣୀୟ ଅନ୍ତକରଣୀୟ ଏବଂ ଇତିହାସର ବିଷୟବସ୍ତୁ । ଏଥିରେ ଅତିରଞ୍ଜିତ ନାହିଁ । ସତ୍ୟ କାହାଣୀ, ବିଧାନସଭା ବିବରଣୀରେ ପ୍ରାୟ ସମସ୍ତ କଥା ଲିପିବଦ୍ଧ ହୋଇଛି । ଆଲୋଚନାତ୍ମକ ବିଧାନ ସଭା ଗୃହ । ୧୯୬୫ ମସିହା ମାର୍ଚ୍ଚ ମାସର ବଜେଟ୍ ଅଧିବେଶନବେଳେ ବିଧାନ ସଭାରେ ମୋର ଆଲୋଚନା ଥାଏ । ସେହି ଅଧିବେଶନରେ ଢେଙ୍କାନାଳରେ ବିଜ୍ଞାନ କଲେଜ ପ୍ରତିଷ୍ଠା, ଭୂସଂସ୍କାର, ବନ୍ୟା ପ୍ରତିକାର, ପଞ୍ଚାୟତ ସଂଗଠନ, ସ୍ତ୍ରୀ ଶିକ୍ଷା ଓ ଢେଙ୍କାନାଳ ଠାରେ ମହିଳା କଲେଜ ସ୍ଥାପନ, ଜେଲ ଅତ୍ୟାଚାର, ମରୁଡ଼ି, ଚୌକିଦାର ପ୍ରଥା, ସ୍ୱାସ୍ଥ୍ୟ, ଜଙ୍ଗଲ, ଜଳଯୋଗାଣ, କୃଷି ସାମଗ୍ରୀ, ତଥା କଣ୍ଟ୍ରୋଲ ଜିନିଷ ବଣ୍ଟନ ଆଦି ବିଭିନ୍ନ ବିଷୟ ସମ୍ପର୍କରେ ଆଲୋଚନା କରୁଥିଲି । ସେତେବେଳେ ମୁଁ ଢେଙ୍କାନାଳ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ବିଧାୟିକା ଭାବରେ ପ୍ରତିନିଧିତ୍ୱ କରୁଥାଏ ସ୍ୱତନ୍ତ୍ର ଦଳର । ତେଣୁ କଂଗ୍ରେସର ପରାଜୟ ପାଇଁ ମୋର ନିର୍ବାଚନ ମଣ୍ଡଳୀ ତଥା ଢେଙ୍କାନାଳ ପରି ଗଡ଼ଜାତ ଅଞ୍ଚଳର ଲୋକ ମାନଙ୍କ ସକାଶେ ସରକାର ବ୍ୟଗ୍ର ଥିଲେ ମାତ୍ର ଉନ୍ନୟନ ମୂଳକ କୌଣସି କାମ ହେଉନଥିଲା । କେଉଁ କାରଣରୁ କାମ ହେଉନଥିଲା ଜାଣି ହେଉନଥିଲା । ଆମ୍ଭ ମାନଙ୍କ ଉପରେ ପୂର୍ଣ୍ଣ ଆସ୍ଥା, ଆଶା ଏବଂ ବିଶ୍ୱାସ ଥିବାରୁ ଜନସାଧାରଣ ୧୯୫୭ ମସିହାରୁ ଆଜି ପର୍ଯ୍ୟନ୍ତ ଆମ୍ଭ ମାନଙ୍କ ପ୍ରତିନିଧିତ୍ୱ କରିବାର ସୁଯୋଗ ଦେଇ ଆସିଛନ୍ତି । ଢେଙ୍କାନାଳର ଜନସାଧାରଣ ଅନମନୀୟ ଭାବରେ ସଂଘବଦ୍ଧ, ସତ୍ୟନିଷ୍ଠ, କର୍ମନିଷ୍ଠ । ଭାଙ୍ଗିଯାଇପାରନ୍ତି କିନ୍ତୁ ନଇଁପଡ଼ି କାହାର ପାଦ ମଞ୍ଜାଳିବା କିମ୍ବା ବ୍ୟକ୍ତିଗତ ସ୍ୱାର୍ଥ ପାଇଁ କାହାର ଅଧିନତା ସ୍ୱୀକାର କରିବା ସେମାନଙ୍କର ଜନ୍ମ ଜାତକରେ ନାହିଁ । ହାତରେ ନମାରି ଭାତରେ ମାରିବା ପାଇଁ ଯେଉଁ ମାନେ ଆସ୍ଫାଳନ କରନ୍ତି ସେମାନଙ୍କୁ ଜବାବ ଦେବାପାଇଁ ଢେଙ୍କାନାଳ ଜନସାଧାରଣ କଠୋର ଭାବରେ ଅଙ୍ଗୀକାର ବଦ୍ଧ ହୋଇପଡ଼ିଛନ୍ତି । କାହାର ଦୟା କିମ୍ବା ଅନୁକମ୍ପା ଅଥବା ଦାନ ଦକ୍ଷିଣା ଉପରେ ଢେଙ୍କାନାଳର ଜନ ସାଧାରଣ ବଞ୍ଚିବା ଚାହାଁନ୍ତି ନାହିଁ । ବରଂ ନିଜର ପୂର୍ଣ୍ଣ ଅଧିକାର ସାବ୍ୟସ୍ତ କରିବାକୁ ଚାହାଁନ୍ତି ଜୀବନ ସଂଗ୍ରାମର ମୂଲ୍ୟବୋଧ ନେଇ । ଢେଙ୍କାନାଳ ଜନସାଧାରଣଙ୍କର ଏହି ସାର୍ବଜନିନ ନୀତିକୁ ଆମ୍ଭେ ଏବଂ ଆମ୍ଭ ରାଜ ପରିବାରର ପ୍ରତ୍ୟେକ ସଦସ୍ୟ ସମ୍ମାନର ସହିତ ଗ୍ରହଣ କରୁ । ଏବଂ ସେହି ଅନୁସାରେ କାର୍ଯ୍ୟ କରୁ । ସେମାନଙ୍କର ମୌଳିକ ଚିନ୍ତାଧାରାକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ । ଏହି ପରିପ୍ରେକ୍ଷୀରେ ବିଧାନ ସଭା ଗୃହରେ

ଓଡିଶାର ସମସ୍ତ ନିର୍ବାଚିତ ସଦସ୍ୟଙ୍କ ଉପସ୍ଥିତିରେ ୧୫.୩.୧୯୬୫ ତାରିଖ ଦିନ ମୋ ଭାଷଣରେ ମୁଁ ଉଲ୍ଲେଖ କରିଥିଲି ଭାବ ଗମ୍ଭୀର ଭାବରେ ମୁଁ ହେଉଛି ଜଣେ ମା' । ମା' ହିସାବରେ ସମସ୍ତଙ୍କ ପ୍ରତି ସମାନ କର୍ତ୍ତବ୍ୟ ରହିଛି । ବିଭିନ୍ନ ଜାଗାରେ ଯେଉଁଠି ଯାହା ଅସୁବିଧା ଦେଖିଲି ଏଠାରେ କହିଲି । ମୋ ନିଜ ଜିଲ୍ଲାର ଉନ୍ନତି ସଙ୍ଗେ ସଙ୍ଗେ ଅନ୍ୟ ବାରଟି ଜିଲ୍ଲାର ମଧ୍ୟ ମୁଁ ସମାନ ଉନ୍ନତି କାମନା କରୁଛି । ଏଥିରେ ଶାସକ ଦଳ ଓ ବିରୋଧି ଦଳ ଆବେଗ ପୂର୍ଣ୍ଣ ଭାବରେ ଉଦ୍‌ବୁଦ୍ଧ ହୋଇ ମୋର ସାର୍ବଜନୀନ ଓ ସେବାମୂଳକ ଚିନ୍ତାଧାରା ପ୍ରତି ଗଭୀର ସମ୍ମାନ ପ୍ରକାଶ କରିଥିଲେ । ସଦସ୍ୟମାନେ ଏହାଦ୍ୱରା ଅନୁପ୍ରାଣିତ ହୋଇଥିଲେ । କେବଳ ନିଜ କଥା କିମ୍ବା ନିଜ ନିର୍ବାଚନ ମଣ୍ଡଳୀ କଥା ଚିନ୍ତା କଲେ ଜଣେ ସଦସ୍ୟର ସଂକୀର୍ଣ୍ଣତା ପ୍ରକାଶ ପାଇବା ବ୍ୟତୀତ ଅନ୍ୟଗୁଣ ରାଶି ମୁକ୍ତ ଲାଭ କରିପାରେନାହିଁ ।

ରାଜା ଶଙ୍କର ପ୍ରତାପ ଶାସନ କାର୍ଯ୍ୟରେ ଅଯଥା ହସ୍ତକ୍ଷେପ କରୁନଥିଲେ । ଯାହାଙ୍କୁ ଯେଉଁ ଦାୟିତ୍ୱ ଦେଉଥିଲେ ତାହା ସେ କରିପାରୁଛନ୍ତି କି ନାହିଁ ତାହା ତାଙ୍କର ଅନ୍ତର୍ନିହିତ ନିରୀକ୍ଷଣ ଶକ୍ତି ବଳରେ ଜାଣି ପାରୁଥିଲେ । ଆବଶ୍ୟକ ସ୍ଥଳରେ ପରାମର୍ଶ ଦେଉଥିଲେ କିମ୍ବା ଭୂଲ୍ ଠିକ୍‌ର ରାସ୍ତା ବତାଇ ଦେଉଥିଲେ ନ ପାରିଲା ମଣିଷଟିକୁ ସେ ଏଭଳି ତିଆରି କରି ନେଇ ପାରୁଥିଲେ ଯେଉଁଥିରେ କି ସେ ପ୍ରତ୍ୟେକ କ୍ଷେତ୍ରରେ ନିଜର ପାରିଲା ପଣକୁ ପ୍ରମାଣିତ କରିପାରୁଥିଲେ ।

ମୋ ଉପରେ ଥିଲା ତାଙ୍କର ଗଭୀର ଆତ୍ମ ବିଶ୍ୱାସ । ଶାସନ କାର୍ଯ୍ୟ ଠାରୁ ଆରମ୍ଭ କରି ଗଲା ଆଇଲା ବନ୍ଧୁ, ବାନ୍ଧବ, ପ୍ରିୟ , ଗୁରୁଜନ ଆଦି ପ୍ରତ୍ୟେକ ବିଷୟରେ ମୋ ସହିତ ବରାବର ଆଲୋଚନା କରନ୍ତି । ପରାମର୍ଶ ମଧ୍ୟ ମାଗନ୍ତି । ବିନା ପରାମର୍ଶରେ, ବିନା ଆଲୋଚନାରେ ସେ କେବେ ହେଲେ ନିଷ୍ପତ୍ତି ନିଅନ୍ତି ନାହିଁ । ସେ ଏକାକୀ ନିଷ୍ପତ୍ତି ନେଇ କାର୍ଯ୍ୟକରିବାରେ ଅବଶ୍ୟ କେତେବେଳେ ହେଲେ କୌଣସି ବାଧା ବିଘ୍ନ ନଥିଲା, କିନ୍ତୁ ଅନ୍ୟକୁ ଜାଣିବା ପାଇଁ ଅନ୍ୟର ଜ୍ଞାନ ଶକ୍ତିକୁ କଳନା କରିବା ପାଇଁ , ଅନ୍ୟର ନ୍ୟାୟ ନିରପେକ୍ଷ ବିଚାର ଶକ୍ତିର ପରମ୍ପରାପାଇଁ ଏବଂ ତାହାକୁ ଆବଶ୍ୟକ ଅନୁସାରେ ବିନିଯୋଗ କରିବା ପାଇଁ ଅନ୍ୟମାନଙ୍କର ମତାମତ ବୁଝିବାପାଇଁ ଏବଂ ସର୍ବୋପରି ଉଦାରମନା ବିଚାରଧାରାରେ ସମସ୍ତଙ୍କୁ ବିଚାର ଆଲୋଚନାରେ ସଂପୃକ୍ତ କରିବା ପାଇଁ ନିଷ୍ପତ୍ତି ସେ ନିଅନ୍ତି । ଅନ୍ୟର ମତବାଦକୁ ସେ ସମ୍ମାନ କରିନ୍ତି ଏବଂ ଅନ୍ୟ ମାନଙ୍କ ଠାରେ ଥିବା ଶକ୍ତି କୁ ସେ ବିଶ୍ୱାସ ମଧ୍ୟ କରନ୍ତି । ଏହାର ଏକମାତ୍ର କାରଣ

ସେ ଥିଲେ ଜ୍ଞାନ ଶକ୍ତି ଆଧାରିତ ନିର୍ମଳ ଚରିତ୍ରର, ଗୁଣବାନ୍ ଏବଂ ଆଧୁନିକ ଚିନ୍ତାଧାରା ବ୍ୟକ୍ତି । ସେ ସ୍ୱେଚ୍ଛାଚାରୀ ବା ଅହଂକାରୀ ବ୍ୟକ୍ତି ନଥିଲେ; ଥିଲେ ବରଂ ଅଶେଷ ଗୁଣର ଅଧିକାରୀ ସ୍ଥିତିପ୍ରଜ୍ଞ ବ୍ୟକ୍ତି । ଏହି ବିଚାର ଧାରାରେ ରାଜା ଶଙ୍କର ପ୍ରତାପ ତାଙ୍କର ଶାସନ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ମୋତେ ଦେବୋତ୍ତର ଅଧକ୍ଷ ଭାବରେ ନିଯୁକ୍ତି ଦେଲେ । ଏହାଥିଲା ଅବୈତନିକ । କିନ୍ତୁ ଦାୟିତ୍ୱପୂର୍ଣ୍ଣ । ନିଜର ତଥା ପାରିବାରିକ କାର୍ଯ୍ୟ ସହିତ ଦେବୋତ୍ତର କାର୍ଯ୍ୟ କରି ପାରିଲା ଭଳି ଶକ୍ତି ଓ ସାମର୍ଥ ମୋର ଅଛି ବୋଲି ବିଶ୍ୱାସ କରି ରାଜା ଶଙ୍କର ପ୍ରତାପ ମୋତେ ଏହି କାର୍ଯ୍ୟ ଦେଇଦେଲେ । ତେଣୁ କିପରି ଏହା ସଫଳତାର ସହିତ ନିର୍ବାହ କରି ତାଙ୍କର ବିଶ୍ୱାସ ଭାଜନ ହେବି ଏହି ଚିନ୍ତା ଥିଲେ ମଧ ନିଜର ମାନସିକ ପ୍ରତ୍ୟୟ ଯୋଗୁଁ ମୁଁ ହାରିଯିବି ନାହିଁ ବୋଲି ସଂକଳ୍ପ ବଦ୍ଧ ହୋଇ କାର୍ଯ୍ୟରେ ଯୋଗଦାନ କଲି । ସେ ପ୍ରଥମେ ଲକ୍ଷ୍ୟ ରଖିଥିଲେ ମୁଁ ନିୟମିତ ଭାବରେ ଠିକ୍ ସମୟରେ ଅନ୍ୟ କର୍ମଚାରୀ ମାନଙ୍କ ପରି ଅଫିସ୍ ଯାଉଛି କି ନାହିଁ । ଆଲୋଚନା ପ୍ରସଙ୍ଗରେ ମୋର ପ୍ରତ୍ୟେକ ଦିନ କାର୍ଯ୍ୟକ୍ରମ ଓ କାର୍ଯ୍ୟପଦ୍ଧତି ସଂମ୍ପର୍କରେ ଆଲୋଚନା କରାଯାଇଥିଲା ।ଫଳରେ ମୋର କାର୍ଯ୍ୟ ଦକ୍ଷତା ନିଃସନ୍ଦେହ ଭାବରେ ବୃଦ୍ଧି ପାଇଲା ଏବଂ ଦେବୋତ୍ତର ବିଭାଗର କାର୍ଯ୍ୟ ଅତ୍ୟନ୍ତ ଶୃଙ୍ଖଳତାର ସହିତ ନିର୍ବାହିତ ହେବାରେ ବ୍ୟତିକ୍ରମ ଘଟିଲା ନାହିଁ ।

ଢେଙ୍କାନାଳର ପ୍ରଧାନ ଦେବାଦେବୀ ମନ୍ଦିର ମଧ୍ୟରେ କପିଳାସର ଶ୍ରୀ ଶ୍ରୀ ଚନ୍ଦ୍ରଶେଖର ଜୀଉ ମନ୍ଦିର, ଶ୍ରୀ ଶ୍ରୀ ବଳରାମ ଜୀଉ ମନ୍ଦିର, ପଣ୍ଡିମେଶ୍ୱର, ନାଧରା ରାମଚଣ୍ଡି, ସପ୍ତଶଯ୍ୟା ରଘୁନାଥ ମନ୍ଦିର, ଅନ୍ନକୋଟିଶ୍ୱର, ନାଗନାଥ ମନ୍ଦିର, ଦଧିବାମନ ମନ୍ଦିର ଆଦି କୁ ଛାଡ଼ିଦେଲେ ଅନେକ ସ୍ଥାନରେ ମହାଦେବ ମନ୍ଦିର ଠାରୁ ଆରମ୍ଭ କରି ଅନ୍ୟାନ୍ୟ ଦେବାଦେବୀ ପ୍ରତିଷ୍ଠାନ ମାନ ରହିଛି । ଏତଦ୍ ବ୍ୟତୀତ ପ୍ରତ୍ୟେକ ଗ୍ରାମମାନଙ୍କରେ ଗ୍ରାମଦେବତା ବା ଦେବୀ ମାନଙ୍କର ପ୍ରତିଷ୍ଠାନ ମଧ ରହିଛି । ଢେଙ୍କାନାଳ ରାଜ ବଂଶର ପୃଷ୍ଠପୋଷକତାରେ ଓ ଜନସାଧାରଣଙ୍କ ସହଯୋଗରେ ଏହି ପ୍ରତିଷ୍ଠାନ ଗୁଡ଼ିକ ବିଭିନ୍ନ ସମୟରେ ଆଧାତ୍ମିକ ଅନୁପ୍ରେରଣା ପାଇ ପ୍ରତିଷ୍ଠିତ ହୋଇଛି । ଏଥିରେ କେବଳ ଭାଗବତ ବିଶ୍ୱାସ ନିହିତ ନଥିଲା ; ଥିଲା ଏବଂ ଚିରକାଳ ଧରି ରହିଛି ସେହି ଅସୀମ ଅଦୃଶ୍ୟ ଶକ୍ତିର ଆଶୀର୍ବାଦ । ଢେଙ୍କାନାଳ ରାଜ ବଂଶର ସ୍ୱର୍ଗତଃ ରାଜା ହରିସିଂହ ବିଦ୍ୟାଧରଙ୍କ ଠାରୁ ରାଜା କାମାକ୍ଷାପ୍ରସାଦ ସିଂହ ଦେଓ ଙ୍କ ପର୍ଯ୍ୟନ୍ତ ବିଭିନ୍ନ ସମୟରେ ବିଭିନ୍ନ ଦେବାଦେବୀଙ୍କ ପ୍ରତିଷ୍ଠାନ ନିର୍ମାଣ ହୋଇଛି । ବର୍ତ୍ତମାନ ପର୍ଯ୍ୟନ୍ତ ଶେଷ ଅନୁଷ୍ଠାନ ସପ୍ତଶଯ୍ୟା ରଘୁନାଥ ଜୀଉ ମନ୍ଦିର ସ୍ୱପ୍ନାବିଷ୍ଟ ହୋଇ ରାଜା ଶଙ୍କର

ପ୍ରତାପ ଓ ମୁଁ ଶ୍ରୀ ଶ୍ରୀ ରଘୁନାଥ ଜୀଉ ମନ୍ଦିର ନିର୍ମାଣ କରିଥିଲୁ ଏବଂ ଆମ୍ଭର ସୁଯୋଗ୍ୟ ପୁତ୍ର ରାଜା କାମାକ୍ଷା ପ୍ରସାଦ, ରାଜା ଶଙ୍କର ପ୍ରତାପଙ୍କ ମୃତ୍ୟୁ ପରେ ପରମାର୍ଥିକ ଭିତ୍ତିରେ ମୂର୍ତ୍ତି ମାନ ଅଣାଇ ଯାଗଜଜ୍ଞର ବିଧାନ ପରେ ପ୍ରାଣ ପ୍ରତିଷ୍ଠା କରିଥିଲେ । ଜୀଉଙ୍କର ଦୈନନ୍ଦିନ ଭୋଗରାଗ ପାଇଁ ନିଜ ତରଫରୁ ଖଞ୍ଜା ଜମିର ବ୍ୟବସ୍ଥା ମଧ୍ୟ କରାଯାଇଛି ।

ଢ଼େଙ୍କାନାଳ ରାଜ ପରିବାରର ବିଶେଷତ୍ୱ ହେଉଛି ବଂଶ ପରମ୍ପରା କ୍ରମେ ସେମାନଙ୍କର ଈଶ୍ୱର ଭକ୍ତି ଏବଂ ଭକ୍ତି ରସାଣିତ ଆଧ୍ୟାତ୍ମିକ ଚିନ୍ତାଧାରା ଦିବ୍ୟଜୀବନ ଯାପନ, କେବଳ ମନ୍ଦିର ନିର୍ମାଣ ଓ ମୂର୍ତ୍ତି ପ୍ରତିଷ୍ଠାରେ ସେମାନେ ସନ୍ତୁଷ୍ଟ ରହୁନଥିଲେ । ମଦ୍ରାସା, ମସ୍‌ଜିଦ୍, ତାଜିଆ ଓ ମହିମାଧର୍ମ ପ୍ରତିଷ୍ଠା ଓ ପରିଚାଳନାରେ ମଧ୍ୟ ସେ ସାହାଯ୍ୟ କରିଥିଲେ । ବିଧିବିଧାନ ସହ ଦୈନନ୍ଦିନ ପୂଜା କର୍ମ, ଯାନିଯାତ୍ରା ଓ ପର୍ବପର୍ବାଣୀ ପାଳନ ନିମନ୍ତେ ନିଜସ୍ୱ ପରିଚାଳନା ପାଇଁ ପ୍ରଭୂତ ପରିମାଣର ନିସ୍କର ଜମିର ବ୍ୟବସ୍ଥା କରିଥିଲେ । ଏପରିକି ଗ୍ରାମ ଦେବତା ବା ଦେବୀ ମାନଙ୍କର ପରିଚାଳନା ପାଇଁ ଉପଯୁକ୍ତ ପରିମାଣରେ ନିଷ୍କର ଜମିର ବ୍ୟବସ୍ଥା କରାଯାଇଥିଲା । ଦେବତା ମାନଙ୍କର ଚାଷ ଜମି ଖମାର ପରିଚାଳିତ ଚାଷ ଦ୍ୱାରା ସୁସମ୍ପନ୍ନ କରାଯାଉଥିଲା । ଏହି ଜମିରେ ପନିପରିବା ଠାରୁ ଆରମ୍ଭ କରି ଧାନ, ମୁଗ, ବିରି, ଆଖୁ ଆଦି ବିଭିନ୍ନ ଫସଲ ଉତ୍ପାଦନ କରାଯାଉଥିଲା ଏବଂ ଏହି ଉତ୍ପାଦିତ ଫସଲରୁ ସମସ୍ତ କର୍ମ ନିର୍ବାହ କରାଯାଉଥିଲା । ଠାକୁର ମାନଙ୍କର ନିତିକାର୍ଯ୍ୟ ପାଇଁ କାହା ଉପରେ ନିର୍ଭର କରିବାକୁ ପଡୁନଥିଲା । କୌଣସି କୌଣସି କ୍ଷେତ୍ରରେ ଘିଅ, ଦୁଧ, ଦହି, ଛେନାର ଆବଶ୍ୟକତା ପୂରଣ କରାଯାଉଥିଲା । ଠାକୁରଙ୍କ ପରିଚାଳନା, ଖମାର ଓ ପ୍ରତିପାଳିତ ଗାଈ, ମଈଁଷିଙ୍କ ଦ୍ୱାରା ହେଉଥିଲା । ଯେଉଁ ଠାରେ ବଳିଦାନ ର ବ୍ୟବସ୍ଥା ସେଠି ଛେଳି ଆଦିର ପ୍ରତିପାଳନର ବ୍ୟବସ୍ଥା ଥିଲା । ଏହା ବ୍ୟତୀତ ଆର୍ଥିକ ସମସ୍ୟାର ସମାଧାନ ପାଇଁ ଦେବୋତ୍ତର ବିଭଗ ତରଫରୁ ପର୍ବପର୍ବାଣୀ ବା ଯାନିଯାତ୍ରା ଅନୁସାରେ ଆର୍ଥିକ ଅନୁଦାନ ର ବ୍ୟବସ୍ଥା କରାଯାଇଥିଲା ।

ଦେବୋତ୍ତର ବିଭାଗ ସୃଷ୍ଟି ନକରି ଏହି ରାଜ ବଂଶର ରାଜା ମାନେ ସମସ୍ତ ଠାକୁରଙ୍କ ପରିଚାଳନା ନିଜ ଦାୟିତ୍ୱରେ ରଖି ପାରିଥାଆନ୍ତେ । କିନ୍ତୁ ତାହା ସେମାନେ କରିନଥିଲେ । ତାହା କରିଥିଲେ ନିଜର ଅହଂକାର ବଢ଼ିଥାଆନ୍ତ, ଅଧିକାର ବଳବତ୍ତର ହୋଇଥାଆନ୍ତା ଓ ସ୍ୱାର୍ଥ ମଧ୍ୟ କିଛି ଥାଆନ୍ତା । ତେଣୁ ନିଜର ବୋଲି ନକହି ଏହା ସର୍ବ ସାଧାରଣ ପ୍ରତିଷ୍ଠାନ ଭାବରେ ସ୍ୱୀକୃତି ଦେଇ ଦେବାଦେବୀ ପୂଜନରେ ସମସ୍ତଙ୍କର ସମାନ ଅଧିକାର ସାବ୍ୟସ୍ତ କରାଯାଇଥିଲା । ସେତେବେଳର ଅବସ୍ଥାକୁ ଚାହିଁଲେ ଏହା ଏକ ଅନନ୍ୟ ବିଚାରଧାରା , ପ୍ରସାରିତ ଦିବ୍ୟ ଚିନ୍ତା ଧାରା ଏବଂ ମହିମାନ୍ୱିତ ଓ ସମନ୍ୱିତ ସମାଜର ପରିରୂପ ।

ଢେଙ୍କାନାଳ ରାଜ ବଂଶର ସମୟ ଅନୁସାରେ ସମସ୍ତ ରାଜା ଓ ସେମାନଙ୍କର ପ୍ରିୟ ପରିଜନ ପ୍ରତ୍ୟହ ଠାକୁର ଦର୍ଶନ କରୁଥିଲେ ଏବଂ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ଠାକୁର ଦର୍ଶନ ଥିଲା ଏକ ନିତ୍ୟ ଆଚରିତ କର୍ମ । ବିଧି ବିଧାନର ସହିତ ପୂଜା ପାଠ କରୁଥିଲେ । ରାଜା ଠାକୁର ପୂଜା ପୂର୍ବରୁ ଜଳ ସୁଦ୍ଧା ଗ୍ରହଣ କରୁନଥିଲେ । ଏହି ପରି ଈଶ୍ୱରଭକ୍ତି ଓ ଦେବା ଦେବୀ ଦର୍ଶନ, ପୂଜନ କାରଣ ଯୋଗୁଁ ଏହି ବଂଶର ରାଜ ପୁରୁଷଗଣ ଯଥାର୍ଥରେ ଥିଲେ ଦୟାଶୀଳ, କ୍ଷମାଶୀଳ, ଦାନଶୀଳ, ନ୍ୟାୟ ଓ ନିରପେକ୍ଷତାର ନିର୍ଭୀକ ପ୍ରତିମୂର୍ତ୍ତି ।

ଖିଆଲ ଉପରେ ସେମାନେ ଶାସନ କରୁନଥିଲେ । ସେମାନେ କଳ୍ପନାରେ କିମ୍ବା ସ୍ୱପ୍ନରେ ପିଠା ଗଢୁ ନଥିଲେ । ନିନ୍ଦାକୁ ଭ୍ରୁକ୍ଷେପ କରୁନଥିଲେ କିମ୍ବା ପ୍ରଶଂସାରେ ଉତ୍‌ଫୁଲ୍ଲ ହେଉନଥିଲେ । ସେମାନେ ଥିଲେ ଦ୍ରଷ୍ଟା । ସୁଦୂର ଭବିଷ୍ୟତକୁ ସେମାନେ ଯେପରି ଦେଖି କରଣୀୟ କିମ୍ବା ଅକରଣୀୟ କଳ୍ପନା କରୁଥିଲେ ।, ସେହି ପରି ଅତୀତର ଘଟଣାବଳୀର ସ୍ମୃତି ଚାରଣ କରିପାରୁଥିଲେ । ସେମାନେ ଥିଲେ ବାସ୍ତବ ବାଦୀ । କର୍ମ ପ୍ରୟାସୀ, ଛଳନା ସେମାନଙ୍କୁ ସ୍ପର୍ଶ କରିନଥିଲା । କାରଣ ରାଜୋଚିତ ସୁଗୁଣ ସହିତ ଦୈବ ଆଶୀର୍ବାଦ ସେମାନଙ୍କ ଉପରେ ରହିଥିଲା । ଏହି ସୂକ୍ଷ୍ମ ଦୃଷ୍ଟିକୋଣ ନେଇ ସେମାନେ ଦେବାଦେବୀ ପ୍ରତିଷ୍ଠାନ ଗୁଡ଼ିକୁ ସର୍ବସାଧାରଣ ଅନୁଷ୍ଠାନ ଭାବରେ ସମସ୍ତଙ୍କୁ ସମାନ ଅଧିକାର ଦେଇ କେବଳ ଗଢ଼ିନଥିଲେ, ଦେବୋତ୍ତର ବିଭାଗ ମାଧ୍ୟମରେ ସେଗୁଡ଼ିକର ଶୃଙ୍ଖଳିତ ପରିଚାଳନା କରୁଥିଲେ । ଏହା ଦ୍ୱାରା ପଣ୍ଡା, ପଢ଼ିହାରୀ, ସେବକ ଓ ସେବାୟତମାନେ ଠାକୁରଙ୍କ ନିତିକାର୍ଯ୍ୟ ନିର୍ବାହ କରି ନିଜର ପରିବାର ପ୍ରତିପୋଷଣ କରୁଥିଲେ । ଅତିଥି ଅଭ୍ୟାଗତ ମାନେ ଠାକୁରଙ୍କ ପ୍ରସାଦ ପାଇଁ ଅନାୟାସରେ ଅତିଥେୟତା ପାଉଥିଲେ । ସାମାନ୍ୟ ମାତ୍ର ବ୍ୟୟରେ ଗରିବ ଲୋକ ମାନେ ପ୍ରସାଦ ପାଉଥିଲେ । ଠାକୁର ମାନଙ୍କ ଜମି ଚାଷ କରି ଅନେକ ଲୋକ ନିଜର ପରିବାର ପ୍ରତିପୋଷଣ କରୁଥିଲେ । ବହୁ ଲୋକ କର୍ମନିଯୁକ୍ତି ପାଇ ସ୍ୱଳ୍ପ ଆୟ ହେଲେ ହେଁ ଚଳିଯାଉଥିଲେ । ଏହାଛଡ଼ା ଯାନି ଯାତ୍ରା ପର୍ବପର୍ବାଣୀ ଗୁଡ଼ିକ ଅତି ଯାକଯମକରେ କରାଯାଉଥିବାରୁ ଆଧ୍ୟାତ୍ମିକ ଚେତନା ଜାଗ୍ରତ ହେଉଥିଲା । ଏହା ସହିତ ମନୋ ରଂଜନ କାର୍ଯ୍ୟକ୍ରମର ଆୟୋଜନ ମଧ୍ୟ ହେଉଥିଲା । ସେତେବେଳର ଜନ ଜୀବନ ନିଜ ନିଜର ରୁଚି ଦୃଷ୍ଟିରୁ ଏହାକୁ ବେଶ୍ ଉପଭୋଗ କରୁଥିଲେ । ସ୍ୱଳ୍ପ ପ୍ରୟୋଜନୀୟ ଦ୍ରବ୍ୟର ବିକାକିଣା କରୁଥିଲେ । ଫଳରେ ବେପାର ବାଣିଜ୍ୟରେ ଲାଭବାନ୍ ହେଉଥିଲେ ଓ ବ୍ୟବହାରିକ ଜିନିଷ ପତ୍ର ସବୁ ସଂଗ୍ରହ କରୁଥିଲେ । ସାମାଜିକ ଜୀବନରେ ଏହାର ଆବ୍ୟଶ୍ୟକତା ଅନୁଭବ କରାଯାଉଥିଲା ।

ମୁଁ ଦେବୋତ୍ତର କାର୍ଯ୍ୟ ଗ୍ରହଣ କଲାପରେ ପ୍ରଥମେ ସମସ୍ତ ଦେବାଦେବୀଙ୍କ ଆସ୍ଥାନ, ପୂଜାବିଧି, ଭୋଗରାଗ, ଜମିଜମା, ଉତ୍ପାଦିତ ଫସଲର ପରିମାଣ ତାର ରକ୍ଷଣାବେକ୍ଷଣ ଓ ଏହାର ବିନିଯୋଗ ଆଦି ବିଭିନ୍ନ ବିଷୟରେ ଧୀରେ ଧୀରେ ଜାଣିବାକୁ ଚେଷ୍ଟା କଲି । ଖମାର, ଏହାର ପରିଚାଳନା ଓ ଲାଭକ୍ଷତି ସମ୍ପର୍କରେ ଅନୁରୂପ ଭାବରେ ଜାଣିବାକୁ ମଧ୍ୟ ଉଦ୍ୟମ କଲି । ଦେବୋତ୍ତର ସମ୍ପତ୍ତି ବିଭାଗୀୟ କାର୍ଯ୍ୟ ସମ୍ପର୍କରେ ମୋର ବିଶେଷ ଧାରଣା ହେଲା । ତାପରେ ନିର୍ବିଘ୍ନରେ ଏବଂ ନିର୍ଭୟରେ ପ୍ରତ୍ୟହ ମୁଁ ମୋର କାର୍ଯ୍ୟ ନିଖୁଣ ଭାବରେ ସମ୍ପାଦନ କଲି । ବିଭିନ୍ନ ସମୟରେ ଦେବାଦେବୀ ପ୍ରତିଷ୍ଠାନ ଓ ଖମାର ପରିଦର୍ଶନ କରି ପୂଜାର ସମୟ. ଭୋଗର ମାନ ଏବଂ ପରିମାଣ, ସମ୍ପତ୍ତିର ରକ୍ଷଣାବେକ୍ଷଣ ଓ ଅନ୍ୟାନ୍ୟ ସମସ୍ତ ଆନୁସଙ୍ଗିକ କାର୍ଯ୍ୟ ଅନୁଧ୍ୟାନ କରୁଥିଲି । ଏହା ସହିତ ଯାତ୍ରୀମାନଙ୍କର ସୁବିଧା ଅସୁବିଧା ସେମାନଙ୍କର ଠାକୁର ଦର୍ଶନ ଅଥବା ସମୟ ଅସମୟରେ ରହଣି ଓ ପ୍ରସାଦ ସେବନର ସୁବିଧା ଅସୁବିଧା ନେଇ ପଚରା ଉଚରା କରୁଥିଲି । ଅସୁବିଧା ଥିଲେ ସମାଧାନ କରୁଥିଲି ଅଘଟଣ ବ୍ୟବସ୍ଥାକୁ ସୁଧାରୁଥିଲି । ବିଶୃଙ୍ଖଳାକୁ ସଜାଡୁଥିଲି । ଆସ୍ଥାନ ଗୁଡିକର ପରିମଳ ଉପରେ ମୋର ତୀକ୍ଷ୍ଣ ଦୃଷ୍ଟି ରହୁଥିଲା । ପରିସରକୁ ସବୁବେଳେ ଛାୟାବୃତ୍ତ କରି ରଖିବାପାଇଁ ମନ୍ଦିର ଉପଯୋଗୀ ଫୁଲ ଫଳ ଗଛମାନ ଲଗାଯାଉଥିଲା ଓ ଯତ୍ନ ନିଆଯାଉଥିଲା । ପରିଷ୍କାର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ଦିଆଯାଉଥିଲା । ଦେବାଦେବୀ ସ୍ଥାନଗୁଡିକରେ ପାରମ୍ପରିକତା ନୀତି ସମୟ ଅନୁସାରେ ଓ ପବିତ୍ରତା ରକ୍ଷା କରି ନିଷ୍ଠାର ସହିତ କରାଯାଉଥିଲା । ନିଯୁକ୍ତ ସେବକ, ପଣ୍ଡା, ପଢିଆରି ପ୍ରଭୃତି କର୍ତ୍ତବ୍ୟରେ ହେଳା ନ କରିବା ପାଇଁ ପରାମର୍ଶ ଦେଉଥିଲି । ସେମାନଙ୍କର ଆଚରଣ ମର୍ଯ୍ୟାଦାବନ୍ତ ରଖିବାକୁ ମୁଁ ସବୁବେଳେ ସେମାନଙ୍କୁ କହିଥାଏ । ତେଣୁ କୌଣସି କ୍ଷେତ୍ରରେ ତ୍ରୁଟି ପରିଲକ୍ଷିତ ହେଉନଥିଲା । ଠାକୁରମାନଙ୍କର ଯେଉଁଠି ନିଜସ୍ୱ ଖମାର ଥିଲା ସେଠାରେ ହାତ ଚାଷ କରାଯାଉଥିଲା । ସେଥିରେ କୌଣସି ଅପବ୍ୟୟ ବା ଅନ୍ୟାୟ ଖର୍ଚ୍ଚ ହେଉଥିବାର ଦେଖିଲେ ମୋର ପରିଦର୍ଶନ କିମ୍ବା ପରାମର୍ଶରେ ସେଗୁଡିକୁ ସୁଧାରି ନିଆଯାଉଥିଲା । ଯେଉଁଠାରେ ଭାଗଚାଷ ହୁଏ ତାହା ମଧ୍ୟ ମୁଁ ପରିଦର୍ଶନ କରିଥାଏ । ଭାଗଚାଷୀ ଆଗ୍ରହ ସହକାରେ ଚାଷ କରୁଛି କି ନାହିଁ ଆମଦାନୀ ଠିକ ସମୟରେ ହେଉଛି କି ନାହିଁ ଜମିର ରକ୍ଷଣାବେକ୍ଷଣ କିପରି ଯତ୍ନ ନିଆଯାଉଛି ବର୍ଷ ହିସାବରେ ଫସଲ ଉତ୍ପାଦନ ବଢୁଛି କିମ୍ବା କମୁଛି ଏବଂ ତାର କାରଣ କଣ ଏ ସମସ୍ତ ବିଷୟ ଆଗ୍ରହ ଓ ବିଶ୍ୱାସ ରଖି ମୋ କାର୍ଯ୍ୟର ପରିସର ମଧ୍ୟରେ ମୁଁ ଜାଣିବାକୁ ଉଦ୍ୟମକରେ । ତେଣୁ ଭାଗଚାଷୀ ଠିକ୍ଭାବରେ ଜମି ଚାଷ କରି ତାର ପ୍ରାପ୍ୟ ଅର୍ଦ୍ଧେକ ରଖି ବାକି ଅର୍ଦ୍ଧେକ ଅନାୟାସରେ ଠାକୁରଙ୍କ ତହବିଲରେ

ପଇଠ କରନ୍ତି । ସଂଜ୍ଞା କ୍ଷେତ୍ରରେ ମଧ୍ୟ ସେହିଭଳି କାଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଥାଏ । ତେଣୁ କେତେବେଳେ ହେଲେ ସଂପତ୍ତି ରକ୍ଷା, ପରିଚାଳନା, ଭକ୍ତ ବା ଦର୍ଶକଙ୍କ ଦର୍ଶନ, ପୂଜାବିଧି ଏବଂ ଆଚରଣ ଆଦିରେ କୌଣସି ବ୍ୟତିକ୍ରମ ଘଟୁ ନଥିଲା । ପରମ ଶାନ୍ତିର ଆସ୍ଥାନ ଥିଲା ଏହି ଦେବାଦେବୀ ସ୍ଥାନଗୁଡିକ ଏବଂ ଧର୍ମ ଓ କର୍ମର ପୂଣ୍ୟପିଠ ହିସାବରେ ପ୍ରାଧାନ୍ୟ ଲାଭ କରିଥିଲା । ଦେବୋତ୍ତର ବିଭାଗରେ ମୋର କାର୍ଯ୍ୟସମସ୍ତଙ୍କୁ ସନ୍ତୁଷ୍ଟ କରିଥିଲା । ମୋର ଜାଣତରେ ଅଜାଣତରେ ମୋ କାର୍ଯ୍ୟ କରିବାର ପ୍ରଣାଳୀ ଉପରେ ତୀକ୍ଷ୍ଣ ନଜର ରଖି ଅତ୍ୟନ୍ତ ଆତ୍ମସନ୍ତୋଷ ଲାଭ କରୁଥିଲେ ମୋର ପୂଣ୍ୟ ସତୀର୍ଥ ରାଜା ଶଙ୍କର ପ୍ରତାପ । ସେ ଦେଇଥିବା ଦାୟିତ୍ୱ ମୁଁ ତ୍ରୁଟିହୀନ ଭାବରେ ନିପୂଣତାର ସହିତ ସମ୍ପାଦନ କରିଥିବାରୁ ସେ କେବଳ ଆନନ୍ଦ ଲାଭ କରି ନଥିଲେ ଅଧିକନ୍ତୁ ଗର୍ବ ଅନୁଭବ କରି ପ୍ରକାଶ କରି କହିଥିଲେ ଅନୁନ୍ନତ ଓ ପରାଧୀନ ଭାରତ ବର୍ଷରେ ପୁରୁଷ ପରିଚାଳିତ କଠୋର ସମାଜର ମୋ ପରି ଜଣେ ମହିଳା ଶାସନକାର୍ଯ୍ୟ ସଫଳତାର ସହିତ ସମ୍ପାଦନ କରିପାରିଛି ଓ ନିଜର ଅଦମନୀୟ ଶକ୍ତି, କୃତିତ୍ୱ ପୂର୍ଣ୍ଣଦକ୍ଷତା, କର୍ତ୍ତବ୍ୟ ପରାୟଣତା , ନିରପେକ୍ଷତା ଓ ନିର୍ଭିକତାକୁ ପ୍ରମାଣିତ କରି ଯଶସ୍ୱୀ ହେବାର ଗୌରବ ଅର୍ଜନ କରିଛନ୍ତି । ଏଥିରେ ମୁଁ ଗର୍ବ ଅନୁଭବ କରୁଥିଲେ ହେଁ ଏହା କିନ୍ତୁ ମୁଁ ସ୍ୱୀକାର କରେ ଯେ ତାଙ୍କ ସାହସରେ ମୁଁ ସାହସୀ, ତାଙ୍କ ବଳରେ ମୁଁ ବଳୀୟାନ, ତାଙ୍କ ଉତ୍ସାହରେ ମୁଁ ଉତ୍ସାହୀ, ତାଙ୍କ ବୁଦ୍ଧିରେ ମୁଁ ବୁଦ୍ଧିମତୀ ଏବଂ ତାଙ୍କରି ପାଥେୟରେ ମୁଁ ପଥିକ । ମୋର ସମସ୍ତ କାର୍ଯ୍ୟରେ ମୁଁ ନିଶ୍ଚୟ ସଫଳ ହୋଇଛି ଏବଂ ଏହି ସଫଳତା ହେଉଛି ସମ୍ପୂର୍ଣ୍ଣ ତାଙ୍କର, ମୋର ନୁହେଁ ।

ଆମର କୀର୍ତ୍ତିମାନ ବଂଶର ମର୍ଯ୍ୟାଦାବନ୍ତ ପୁରୁଷମାନେ ଭକ୍ତି ଓ ଭକ୍ତର ବିଶ୍ୱାସ ନେଇ ସର୍ବସାଧାରଣ ଅନୁଷ୍ଠାନ ଭାବରେ ଗଢିଥିଲେ ବିଭିନ୍ନ ସମୟରେ ଏହି ଦେବାଦେବୀ ପ୍ରତିଷ୍ଠାନ । ପରମୁଖାପେକ୍ଷୀ ନ ହେବାପାଇଁ କିମ୍ବା କାହାର ଦାନଦୟା ଉପରେ ନିର୍ଭର ନକରି ଓ ଏଗୁଡିକର ପରିଚାଳନା କ୍ଷେତ୍ରରେ ସଂକଟ ନ ଉପୁଜିବା ପାଇଁ ସ୍ଥାବର, ଅସ୍ଥାବର ସମ୍ପତ୍ତିର ବ୍ୟବସ୍ଥା କରିଥିଲେ । ଯାନି ଯାତ୍ରା ପର୍ବପର୍ବାଣୀ ଓ ପୂଜାବିଧି ଆଦି ସକଳ କାର୍ଯ୍ୟଭାର ସାର୍ବଜନୀନ ଅଧିକାର ସମସ୍ତଙ୍କର ରହିଥିଲା । ରାଜଶକ୍ତି ଏହାର ପୃଷ୍ଠପୋଷକତା କରିଥିଲେ ମଧ୍ୟ ସମସ୍ତ ଲୋକମାନଙ୍କର ଏହାଥିଲା ଏକମାତ୍ର ସର୍ବପୂଜ୍ୟ ପ୍ରତିଷ୍ଠାନ । ଏହା ଏପରି ଦିବ୍ୟ ଦେବସ୍ଥାନ ଭାବରେ ଗୃହୀତ ହୋଇଥିଲା ଯେଉଁଥିରେ କି ଏହାକୁ କେନ୍ଦ୍ରକରି ବିବାଦ ବା ସ୍ୱାର୍ଥଗତ ମନୋଭାବ ସୃଷ୍ଟି ହୋଇନଥିଲା । ବରଂ ଦେବଭକ୍ତି ସହିତ ସମାନ ଅଧିକାର ନେଇ ସାମାଜିକ, ଆଧ୍ୟତ୍ମିକ, ସାଂସ୍କୃତିକ ଏବଂ ଅନେକାଂଶରେ ଅର୍ଥନୈତିକ ଶକ୍ତିର ବିକାଶ

କେନ୍ଦ୍ର ହିସାବରେ ଏହି ଦେବାଦେବୀ ଅନୁଷ୍ଠାନକୁ ଜନମତ ନିର୍ବିଶେଷରେ ସମସ୍ତେ ଗ୍ରହଣ କରିଥିଲେ । ଏହାକୁ ଆଧାର କରି ମଣିଷ ମନର ସମସ୍ତ ବିଶ୍ୱାସ, ନିଷ୍ଠା ତଥା ସାମାଜିକ କ୍ରିୟା କର୍ମ ଏବଂ କୃଷିଭିତ୍ତିକ କାର୍ଯ୍ୟକ୍ରମ ଆଦି ସବୁକିଛି କରାଯାଉଥିଲା । ଆଜି ଯେଉଁ ଜାତୀୟତାର କଥା ଉଠୁଛି କିମ୍ବା ଐକ୍ୟ ଅଥବା ସଂହତିର କଥା ଉଠୁଛି ତାହା ସେତେବେଳେ ସ୍ୱତଃ ପ୍ରବୃତ୍ତି ଭାବରେ ଜାତି, ଧର୍ମ , ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ମଧ୍ୟରେ ଏହି ପବିତ୍ର ପ୍ରତିଷ୍ଠାନକୁ କେନ୍ଦ୍ରକରି ଗଢିଉଠିଥିଲା । ଜାତୀୟ ଐକ୍ୟ ସଂହତି ରକ୍ଷା କରିବାରେ କିମ୍ବା ଧର୍ମ ଧର୍ମ ମଧ୍ୟରେ ଓ ଭାଷା ଭାଷା ମଧ୍ୟରେ ଯେଉଁ ବିଭେଦ ସୃଷ୍ଟି ଆଦି ଲଗ୍ନ କଳଙ୍କ ଭାବରେ ଦେଖାଦେଇଛି ତାହା ସ୍ୱଚ୍ଛ ମାତ୍ର ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତି ସୃଷ୍ଟି କରନ୍ତି ଏବଂ ସେହିମାନେ ହିଁ କେବଳ ଅନ୍ୟାୟ ଭାବରେ ଗଳା ଫଟା ଗର୍ଜନ କରନ୍ତି ଜାତିଭେଦ ଦୂର କରିବାକୁ । ରାଜନୀତି ଏବଂ ଶାସନନୀତିର ଚରିତ୍ର ଆଜି ଏଇମାନଙ୍କ ଦ୍ୱରା ବଦଳିଯାଇଛି । ଅଶିକୋଟି ଲୋକଙ୍କର ଦେଶ ଭାରତ ବର୍ଷ ଆଜି ଅଶାନ୍ତିର ନିଆଁରେ ଜଳୁଛି । ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ରାଜା ମହାରାଜା ବା ନବାବ ଶାସିତ ରାଜ୍ୟମାନଙ୍କରେ ଧର୍ମ, ଜାତି ଓ ଭାଷା  ସାମାଜିକ ଚଳଣୀ ତଥା ଜୀବନ ବେଉଷାରେ ଉଗ୍ର ଭେଦଭାବ ଦେଖାଯାଉ ନଥିଲା । କେଉଁଠି କେତେବେଳେ ଘଟୁଥିଲେ ତାହା ବ୍ରିଟିଶ ଶାସକ ମାନଙ୍କ ସ୍ୱାର୍ଥଗତ ପ୍ରରୋଚନାରେ ଘଟୁଥିଲା ଭାରତୀୟ ପ୍ରଜା ବା ଶାସକ ମାନଙ୍କ ଦ୍ୱାରା ନୁହେଁ କିନ୍ତୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷର ସମସ୍ତ ସଂପ୍ରଦାୟର ଉଗ୍ରଜାତୀୟତା ପ୍ରଭାବରେ ଐକ୍ୟ ଓ ସଂହତିର ଆଦର୍ଶରେ ତାହାକୁ ପ୍ରତିହତ କରାଯାଉଥିଲା । ଓଡିଶାରେ ଏଭଳି ଘଟଣା ଆମ ସମୟରେ ଆଦୌ ଘଟିନଥିଲା । ଯେଉଁଠି ଉତ୍ତମ ବୁଝାମଣା ଅଛି ସ୍ନେହ, ଶ୍ରଦ୍ଧା ଅଛି ଓ ଜାତୀୟତା ଅଛି ସେହିଠି ଏହି ପ୍ରକାର କଳଙ୍କିତ ଘଟଣା ସୃଷ୍ଟି ହୁଏ ନାହିଁ । ଢ଼େଙ୍କାନାଳରେ ଦରବାର ଶାସନ ବେଳେ ମଣିଷ ମଣିଷ ଭିତରେ ଧର୍ମ, କର୍ମ ଓ ଭାଷା ନେଇ ବିଭେଦ୍ ସୃଷ୍ଟି ହେବା କଥା କେହିକେବେ ସ୍ୱପ୍ନରେ ବି ଭାବୁ ନଥିଲେ । ସମସ୍ତେ ସମସ୍ତଙ୍କ  ପର୍ବପର୍ବାଣୀ , ଯାନୀଯାତ୍ରାକୁ ମାନନ୍ତି । ସାହାଯ୍ୟ ସହଯୋଗ କରନ୍ତି । ତାଜିଆ ସାରା ସହର ପରିକ୍ରମା କରେ ସମସ୍ତଙ୍କ ସହଯୋଗରେ । ଏହା ପାଲେଶ୍ ପର୍ଯ୍ୟନ୍ତ ଆସେ । ଆମ୍ଭେମାନେ ଯଥାଯୋଗ୍ୟ ଉପଚାର କରୁ ପରବର୍ତ୍ତୀ ସମୟରେ ଲକ୍ଷ୍ମୀପୂଜାରେ ପ୍ରତ୍ୟେକ ସଂପ୍ରଦାୟ ସମାନଭାବରେ ଯଥାଯୋଗ୍ୟ ସାହାଯ୍ୟ ସହଯୋଗ କରୁଛନ୍ତି । ଆଜି ଯେଉଁ ସାମାଜିକ ବିଶୃଙ୍ଖଳା ଅର୍ଥନୈତିକ ସଂକଟ, ରାଜନୈତିକ ଅଧୋଗତି, ଜୀବନ ଚରିତ୍ରରେ ସ୍ଖଳନ, ଉତ୍ପାଦନ ହ୍ରାସ, ଶିକ୍ଷା ଓ ସଂସ୍କୃତିର ବିଲୋପ ଆଦି ଦେଖା ଦେଇଛି ତାହା ଦେବା ଦେବୀ ପ୍ରତିଷ୍ଠାନ ପ୍ରତି ଅବହେଳା ଓ ଅବିଚାର ଯୋଗୁଁ ହୋଇଛି

ବୋଲି କହିଲେ ଅନେକାଂଶରେ ଭୁଲ ହେବ ନାହିଁ ।

ଢେଙ୍କାନାଳ ଦେବୋତ୍ତର ବିଭାଗରେ ପରିଚାଳନା ମୋ ଦାୟିତ୍ୱରେ ଥିଲା । ସେତେବେଳର ପରିଚାଳନାଗତ ଅନୁଭୂତି ମୋର ଏବେ ସ୍ପଷ୍ଟଭାବେ ମନେ ପଡୁଛି । ଯେଉଁ ପରିସର ନେଇ ମୋର ଜୀବନ ଧାରା ଗତିକରି ଆସିଛି ସେଥିରେ ଆଜି ମଧ୍ୟ ମୋର ଦେବାଦେବୀ ଦର୍ଶନ କରିବାରେ ଆଗ୍ରହ ଟିକିଏ ହେଲେ ଊଣା ହୋଇନାହିଁ । ସମସ୍ତଙ୍କର ଯେଉଁ ବିଶ୍ୱାସ ମୋର ବି ସେହି ବିଶ୍ୱାସ, ଠାକୁର ଦର୍ଶନ ଓ ପୂଜନରେ ମଣିଷ ପରିପୂର୍ଣ୍ଣ ଜୀବନ ଯାପନ କରେ । କିନ୍ତୁ ମୁଁ ଆଜି ଯେତେବେଳେ ମନ୍ଦିର ଓ ଅନ୍ୟାନ୍ୟ ଦେବାଦେବୀ ପ୍ରତିଷ୍ଠାନଗୁଡିକ ଦର୍ଶନବେଳେ ଦେଖୁଛି ସେଥିରେ ମୁଁ ଅତ୍ୟନ୍ତ ଦୁଃଖ ପାଉଛି । ମନ ଓ ଦେହ ଭିତରେ ବିଷାଦର ଘୋର ପ୍ରତିକ୍ରିୟା ସୃଷ୍ଟି ହେଉଛି । ଯାହା ସବୁକାଳରେ ଥିଲା ଅଭୟ, ପବିତ୍ର ଓ ଶାନ୍ତିର ସ୍ଥାନ ଏବଂ ଯାହାଥିଲା ଆଶୀର୍ବାଦର ମହତ୍ତ୍ୱ ପୂର୍ଣ୍ଣ ସ୍ଥାନ ଆଜି ତାହା ଅଭିଶାପର ସ୍ଥାନ ରେ ପରିଣିତ ହୋଇଛି ।

କୃତଘ୍ନ ମଣିଷର କୁକର୍ମରେ ଆଜି ତାହା ଅପବିତ୍ର ହୋଇଛି । ଏହାର ସମସ୍ତ ପରିବେଶ ଅଶାନ୍ତ ହୋଇ ଉଠିଛି । ନିଜ ଛାଇ ଦେଖି ନିଜେ ଡରିଲା ଭଳି ନିଜର ଅବିଚାର ମୂଳକ ନିତିହୀନ ସ୍ୱାର୍ଥନ୍ୱେଷୀ କାର୍ଯ୍ୟ ଯୋଗୁଁ ଦର୍ଶନ ବେଳର ଦିଅଁ ଦେବତା ଭୟର କାରଣ ହୋଇଛନ୍ତି ।

ଢେଙ୍କାନାଳ ଦେବୋତ୍ତର ବିଭାଗର ବର୍ତ୍ତମାନ ପ୍ରଧାନ ଟ୍ରଷ୍ଟି ହେଉଛନ୍ତି ଜିଲ୍ଲାପାଳ । ତାଙ୍କର ସଙ୍କେତ ନାମାରେ ଦେବୋତ୍ତର ଅଫିସର ସମସ୍ତ ଦେବୋତ୍ତର କାର୍ଯ୍ୟ ପରିଚାଳନା କରନ୍ତି । ଦେବୋତ୍ତର ଜମିର ରକ୍ଷଣା ବେକ୍ଷଣ ତଥା କୃଷିକାର୍ଯ୍ୟ ସମ୍ପାଦନ କରିବା ପାଇଁ କୃଷି ବିଶେଷଜ୍ଞ ଓ କୃଷି କର୍ମୀ ନିଯୁକ୍ତ ହୋଇଛନ୍ତି । ଏହା ବ୍ୟତୀତ ଦେବୋତ୍ତର ପରିଦର୍ଶକ, ଅମୀନ, ଜିମାଦାର ଓ ଅନ୍ୟାନ୍ୟ ଅନେକ କର୍ମଚାରୀ ଏହାର ସୁପରିଚାଳନା ପାଇଁ ନିଯୁକ୍ତ ହୋଇଛନ୍ତି । ଆହୁରି ଅଧିକ ସୁବିଧା ପାଇଁ ଗୋଟିଏ ଗାଡି ମଧ୍ୟ କିଣାଯାଇଛି । ଏହାସତ୍ତ୍ୱେ ଢେଙ୍କାନାଳରେ ଯେତେସବୁ ଏହି ପ୍ରତିଷ୍ଠାନ ରହିଛି ଏହାର ହିସାବ ଏହି ବିଭାଗରେ ଅଛି ବୋଲି କେହି କହିପାରିବେ ନାହିଁ । ସମସ୍ତ ଜମିଜମାର ସ୍ଥିତି ବର୍ତ୍ତମାନ କଣ, ଏହା କେଉଁଠାରେ କିପରି ଅବସ୍ଥାରେ ରହିଛି, ରେକର୍ଡଭୁକ୍ତ ରହିଛି କି ବେବନ୍ଦୋବସ୍ତ ହୋଇ ପଡିଛି, କେହି ଜବର ଦଖଲ କରୁଛି କି ନାହିଁ କେଉଁ ଜମିର କେଉଁ ଫସଲ କେତେ ହୁଏ ଏବଂ ଏହାର ଭାଗ ଠାକୁରଙ୍କ ଜମାକୁ ଆସେ କି ନାହିଁ ଆଦି ଅନେକ କଥା ହୁଏତ କର୍ତ୍ତୃପକ୍ଷ ଗୋପନ ରଖିଛନ୍ତି କିମ୍ବା କର୍ତ୍ତୃପକ୍ଷ ନିଜେ ଜାଣନ୍ତି ନାହିଁ କି ଜାଣିବାକୁ ଉଦ୍ୟମ କରିନାହାନ୍ତି । ସେହିପରି ଗଛ, ପୋଖରୀ, ତୋଟା କେଉଁଠି କେତେ ଅଛି ଏହାର ବିନିଯୋଗ କିପରି ଓ କାହାଦ୍ୱରା ହେଉଛି

ଏବଂ ଠାକୁରଙ୍କ ତହବିଲକୁ ଏହା ଦ୍ୱାରା କେତେ ଓ କିପରି ଆସୁଛି କିମ୍ବା ଆସୁନାହିଁ ତାହା ମଧ୍ୟ କେହି ଜାଣନ୍ତି ନାହିଁ । ଅନେକ କ୍ଷେତ୍ରରେ ଦେବୋତ୍ତର ଜମି ଦଖଲ ସତ୍ତ୍ୱ ଦେଖାଇ କିମ୍ବା ଅନ୍ୟ ଉପାୟରେ ଅନେକ ଲୋକ ନିଜ ନିଜ ନାମରେ ପଟ୍ଟା କବଲା କରି ନେଇଛନ୍ତି ଏବଂ ଏବେ ମଧ୍ୟ କରିବା ପାଇଁ ଉଦ୍ୟମ କରୁଛନ୍ତି । ଏ ଦିଗରେ ଦେବୋତ୍ତର ବିଭାଗର ଧ୍ୟାନ ଧାରଣା ନାହିଁ କିମ୍ବା ସଂପତ୍ତିରୁ ସୁରକ୍ଷା ପାଇଁ ଉଚିତ ପଦକ୍ଷେପ ନେବାକୁ ଉଦ୍ୟମ ନାହିଁ । ମଠ, ଖମାର, ଜମି ଚାଷ ଆଦି ତନଖି କରିବାପାଇଁ ଗାଡିଟିର ବିନିଯୋଗ କରାଯାଉଛି ବୋଲି ମନେ ହେଉନାହିଁ । ଗାଡିଥାଇ ଦେବୋତ୍ତର ବିଭାଗ ଅନେକ ସମୟରେ ଭଡାଗାଡିର ସାହାଯ୍ୟ ନେଇଥାନ୍ତି । ବର୍ତ୍ତମାନ ଦେବୋତ୍ତର ସମ୍ପତ୍ତିର ଅଭିବୃଦ୍ଧି ପାଇଁ ବିଦ୍ଧିବଦ୍ଧ ପନ୍ଥାର ଯୋଜନା କରାଯାଉ ନାହିଁ । ପରିଚାଳନା ଗତ ତ୍ରୁଟି ନ ସୁଧାରି ଦାୟିତ୍ୱସବୁ ଏଡାଇ ନିଆଯାଉଛି । ମନେହୁଏ ଏହି ଦେବା ଦେବୀଙ୍କର ପୂଜା ଆରଧନା ଏବଂ ଏମାନଙ୍କର ସମସ୍ତ ସମ୍ପତ୍ତି କେବଳ ଦେବୋତ୍ତର ବିଭାଗ ଖିଆଲ ଉପରେ ହିଁ ତିଷ୍ଠି ରହିଛି । ଏହା କଣ ସମ୍ଭବ ? ସବୁ ନିଃଶେଷ ହେବାକୁ ବସିଲାଣି । କର୍ପୂରଭଳି ଉଡିଯାଉଛି । ଶେଷକୁ କନା ବି ରହିବ ନାହିଁ । ଏବେ ମଧ୍ୟ ସମୟ ଅଛି । ସୁଧାରି ନିଆଯାଇ ପାରିବ । ଉଦ୍ୟମ ଦରକାର । ପରିଶ୍ରମ ଲୋଡା । ସଂକୀର୍ଣ୍ଣତା ତ୍ୟାଗ କରିବାକୁ ହେବ । ସାର୍ବଜନୀନ ଈଶ୍ୱର ଚିନ୍ତାରେ ସେ ସବୁରି ହୃତ ଗୌରବ ଫେରାଇ ଆଣିହେବ । ଦେବତାର ଆଖିରୁ ଲୁହ ଝରିଲେ କାହାର ମଙ୍ଗଳ ହେବ ନାହିଁ । ମଣିଷ ସମାଜ ହିଁ କାନ୍ଦିବ । ଠାକୁରଙ୍କ ପେଟ ପୂରିଲେ ଦୁଃଖିରକିଙ୍କ ପେଟ ପୂରିବ । ମନ୍ଦିର ଭିତରେ ଦୀପ ଜଳିଲେ ଆପଣାଛାଏଁ ସମାଜର ଜ୍ଞାନର ଆଲୋକ ଜଳିବ । ଅନ୍ଧାର ଘୁଞ୍ଚିବ, କୁସଂସ୍କାର ଦୂରେଇଯିବ । ଦିଅଁ ଦେବତାଙ୍କ ନିକଟରେ ଧୂପ ଦେଲେ ତାହା ସୁଗନ୍ଧରେ ସମସ୍ତ ପରିବେଶ ପବିତ୍ର ହୋଇ ଉଠିବ । ଶିକ୍ଷିତ ବ୍ୟକ୍ତି ପ୍ରଶାସନରେ ଥାଇ ଦେବୋତ୍ତର ସମ୍ପତ୍ତି ନିଃଶେଷ ହେବା ଏବଂ ଦିଅଁଦେବତାଙ୍କ ପୂଜା ନୀତିରେ ବିଶୃଙ୍ଖଳାସୃଷ୍ଟି ହେବା ପ୍ରଳୟ ହେବା ଛଡା ଆଉ କଣ ହୋଇପାରେ । ଏମାନଙ୍କର ଠାକୁରଙ୍କ ସମ୍ପତ୍ତି ଅଭିବୃଦ୍ଧିପାଇଁ କଣା କଉଡିଟାକର ଅବଦାନ ନଥିଲା ବେଳେ ତାଙ୍କ ସମ୍ପତ୍ତି ସହ ଠାକୁରଙ୍କୁ ଉଜାଡକରି ଓ ଦୀନଦରିଦ୍ରତର କରିବା ଅଧିକାର ଆସିଲା କେଉଁଠୁ ? ନିକଟ ଅତୀତରେ ଯେଉଁ ମହାମନା ଶାସକ ପ୍ରଗତି ସଂସ୍କାର ନାମରେ ଠାକୁରଙ୍କ ସମ୍ପତ୍ତିକୁ ବରବାଦ କରିବା ପାଇଁ ଧର୍ମ ବିଚାରକୁ ଉପେକ୍ଷା କରି ସାଢ଼େ ଛଅଣିଆ ଲୋକ ପ୍ରିୟତା ଅର୍ଜନ ଉଦ୍ଦେଶ୍ୟରେ ଯେପରି ଆଇନ କରି ଚାଲିଗଲେ ତାହାର ପ୍ରତିଫଳନରେ ଠାକୁରମାନଙ୍କର ଏହିପରି ଦୟନୀୟ ଅବସ୍ଥା ହୋଇଛି । ସେମାନଙ୍କର ଅଭିପ୍ରାୟ ଆଜି ସମସ୍ତଙ୍କୁ ବିପଦଗ୍ରସ୍ତ କରିଛି । ଏଥିପାଇଁ ସମାଜ ଆଜି ଭାଙ୍ଗି

ପଡୁଛି । ଅଭାବ ଅନାଟନରେ ସମସ୍ତଙ୍କର ବିଦ୍ୟାବୁଦ୍ଧି ଲୁପ୍ତ ହୋଇଛି । ସବୁଆଡେ ଜରାଜୀର୍ଣ୍ଣ କଙ୍କାଳମାନଙ୍କର ଆର୍ତ୍ତନାଦ ଶୁଭୁଛି । ଆମ ଦେଶର ଧର୍ମ ବିଶ୍ୱାସ ନେଇ ଏହା ସମସ୍ତେ ସ୍ୱୀକାର କରନ୍ତି ଯେ ଠାକୁରମାନଙ୍କ ପ୍ରତି ଅବିଚାର ଯୋଗୁଁ ଦେଶର ଅବସ୍ଥା ଆଜି ଅନ୍ତଃସାର ଶୂନ୍ୟ ହୋଇଛି । ଗୋଡିମିଶା ବଗଡା ଚାଉଳର ପ୍ରସାଦ, ପାଣି ପେଜ ମିଶାଡାଲି, ଘିଅ ବଦଳରେ ଡାଲଡା ବ୍ୟବହାର କରି ବ୍ୟବସାୟ ସୂତ୍ରରେ ଠାକୁରମାନଙ୍କର ନୀତି ଚଳେଇ ନିଆଯାଉଛି । ସମୟ ନିର୍ଘଣ୍ଟ ରଖା ଯାଉ ନାହିଁ । ଖଇରାତି ଭୋଗ ଚଢା ଦାମରେ ବିକ୍ରି କରାଯାଉଛି ।

ପୂର୍ବ ପରିଚାଳନାରେ ଥିବା ଦେବୋତ୍ତର କାର୍ଯ୍ୟକ୍ରମ ଯେପରି ସମସ୍ତଙ୍କର ବିଶ୍ୱାସ ଭାଜନ ହୋଇଥିଲା, ଯେଉଁ କାର୍ଯ୍ୟକ୍ରମକୁ ଆମ୍ଭେମାନେ ପବିତ୍ରତାର ସହିତ ସଂପାଦନା କରୁଥିଲୁ, ଠାକୁରଙ୍କ ସମ୍ପତ୍ତିକୁ ଉଜାଡ କରିବା ଅଧର୍ମ ବୋଲି ମନେ କରୁଥିଲୁ, ତାହା ଆଜିର ବ୍ୟର୍ଥ ପ୍ରଶାସନ ଧର୍ମ ସଂକଟ ପ୍ରତି ଭୃକ୍ଷେପ ନ କରି ବରବାଦ୍ କରି ଚାଲିଛନ୍ତି । ସଦ୍‌ବୁଦ୍ଧି ଆସୁ, ଏହାର ସୁଷ୍ଠ ସମାଧାନ ହେଉ ନିତୀକାର୍ଯ୍ୟ ବିଧିବଦ୍ଧ ଭାବରେ କରାଯାଉ, ବ୍ୟଭିଚାର ଓ ସ୍ୱେଚ୍ଛାଚାର ବନ୍ଦ ହେଉ ଏବଂ ଶାନ୍ତି ସ୍ଥାପନ ହେଉ ଏହାହିଁ ଏକମାତ୍ର କାମନା ।

କେବଳ ଦେବୋତ୍ତର ବିଭାଗ ନୁହେଁ, ଷ୍ଟେଟର ସ୍ୱାସ୍ଥ୍ୟ ବିଭାଗ ସହିତ ମଧ୍ୟ ମୁଁ ସଂପୃକ୍ତ ଥିଲି । ସ୍ୱାସ୍ଥ୍ୟ ବିଭାଗର ମହିଳା ରୋଗୀଙ୍କର, ଚିକିତ୍ସା ଓ ଔଷଧ ମୋ ପରିଚାଳନାରେ ଅନ୍ତର୍ଭୁକ୍ତ ଥିଲା । ରାଜା ଶଙ୍କର ପ୍ରତାପ ମୋ ସହିତ ବିଚାର ଆଲୋଚନା କରି ପ୍ରଥମଥର ପାଇଁ ମହିଳା ଡାକ୍ତର ନିଯୁକ୍ତି କଲେ । ସ୍ୱତନ୍ତ୍ର ମହିଳା ଡାକ୍ତର ନିଯୁକ୍ତି ଯୋଗୁଁ ମହିଳା ରୋଗୀମାନେ ନିର୍ଭୟରେ ନିଜ ନିଜର ରୋଗ ଚିକିତ୍ସା ପାଇଁ ଆସିଲେ ଏବଂ ଯଥାର୍ଥରେ ଉପକୃତ ହେଲେ । ସ୍ୱତନ୍ତ୍ର ମହିଳା ୱାର୍ଡ ନିର୍ମିତ ହୋଇ କାର୍ଯ୍ୟକାରୀ ହେଲା । ଠିକ୍ ଚିକିତ୍ସା, ଔଷଧ ପତ୍ର ଦେବା, ଡାକ୍ତରଖାନା ପରିସର ପରିଷ୍କାର ପରିଚ୍ଛନ୍ନ ରଖିବା କାର୍ଯ୍ୟ ମୁଁ ଠିକ୍ ତଦାରଖ କରୁଥିଲି । ଏହାଦ୍ୱାରା ରୋଗୀମାନଙ୍କର ମାନସିକ ଦୁର୍ବଳତା ଆଦୌ ଦେଖାଯାଉନଥିଲା । ଡାକ୍ତରଖାନା କର୍ମଚାରୀମାନଙ୍କ ମଧ୍ୟରେ କର୍ତ୍ତବ୍ୟ ପରାୟଣତା ରହିଥିଲା ଏବଂ ସେମାନଙ୍କର ଲକ୍ଷ୍ୟଥିଲା ରୋଗୀ ସେବା । ଉପୁରି ରୋଜଗାର ରୋଗୀମାନଙ୍କଠାରୁ ଆଦାୟ କରିବା ସେତେବେଳେ ସ୍ୱପ୍ନରେ ନଥିଲା । ମୋର ନିର୍ଦ୍ଦିଷ୍ଟ କାର୍ଯ୍ୟ ବ୍ୟତୀତ ସାଧାରଣ ଶାସନନୀତି କାର୍ଯ୍ୟରେ ମୋ ସହିତ ଅନେକ ସମୟରେ ଆଲୋଚନା କରାଯାଇଥିଲା । ମୋର ପରାମର୍ଶ ଗ୍ରହଣ କରାଯାଉଥିଲା । ପ୍ରାୟତଃ ମୋର ପରାମର୍ଶ ନିର୍ଭୁଲ ବୋଲି ପ୍ରମାଣିତ ହେଉଥିଲା ଏବଂ ଏହା ସର୍ବେକ୍ଷଣ ହୋଇ ବିବାଦ ଶୂନ୍ୟ ବିବେଚିତ ହେଉଥିଲା ।

ରାଜା ଶଙ୍କର ପ୍ରତାପ ଅତୀତର ଘଟଣାବଳୀରୁ କିମ୍ବା ଇତିହାସରୁ ସ୍ମରଣକରି ଯେପରି ଶିକ୍ଷଣୀୟ ବିଷୟବସ୍ତୁକୁ ଗ୍ରହଣ କରି ପାରନ୍ତି ସେହିପରି ଅନାଗତ ଭବିଷ୍ୟତରେ କଣ ଘଟିବ ଏବଂ ତାର ଫଳାଫଳ କେତେ ଦୂର ସୁଦୂର ପ୍ରସାରି ହେବ ତାହା ସେ ନିର୍ଭୁଲ ଭାବରେ ଠିକ୍ କଳନା କରି କହି ପାରୁଥିଲେ । ଏହାଥିଲା ତାଙ୍କର ଜନ୍ମଜାତକର ଦୁର୍ଲଭ ଗୁଣ । ସେ ବହୁ ଆଗରୁ ପ୍ରକାଶ କରିଥିଲେ, ଭାରତ ଖୁବ୍ ଶୀଘ୍ର ତାର ସ୍ୱାଧୀନତା ପାଇବା ପାଇଁ ଭାରତବାସୀ ଯେତିକି ମୂଲ୍ୟ ଦେଇଛନ୍ତି ତାହା ସ୍ୱାଧୀନତା ପାଇବା ପରେ ଆହୁରି ଅଧିକ ମୂଲ୍ୟଦେଇ ଭାରତବାସୀଙ୍କୁ ଅକଥନୀୟ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିବ ବୋଲି ସେ ତଥ୍ୟ ଭିତ୍ତିକ ଆଲୋଚନା କରି କହିଥିଲେ । ଏହି ପ୍ରକାର ଆଲୋଚନା କଲାବେଳେ ସେ ଅତ୍ୟନ୍ତ ଦୁଃଖାଭିଭୂତ ହୋଇ ପଡୁଥିଲେ । ଧର୍ମ ଅଧର୍ମ ମଧ୍ୟରେ ବିଭେଦ ତଥା ତିକ୍ତତା ଏବଂ ଅବିଶ୍ୱାସ ଜାତି ଜାତି ଭିତରେ ଲଢେଇ, ପ୍ରଦେଶ ପ୍ରଦେଶ ମଧ୍ୟରେ ଓ ଭାଷା ଭାଷା ମଧ୍ୟରେ ବିଦ୍ୱେଷ ଆଜି ଭୟଙ୍କର ଭାବରେ ଦେଖାଦେବ ବୋଲି ସେ ବ୍ୟାକୁଳ ଭାବରେ ପ୍ରକାଶ କରୁଥିଲେ । ନେତାମାନଙ୍କ ମଧ୍ୟରେ ସ୍ୱାଧୀନତା ଏବଂ ସଂକୀର୍ଣ୍ଣତା ଯୋଗୁଁ ଏ ଦେଶର ବାତାବରଣ ଆହୁରି ଅଧିକ ବିଷାକ୍ତ ହୋଇ ଉଠିବ ବୋଲି ବାରମ୍ବାର ପ୍ରକାଶ କରୁଥିଲେ । ଫଳରେ ଦାରିଦ୍ରତାର ଉତ୍କଟତା, ରୋଗ, ଶୋକର ବିଭୀଷିକା ଜନସାଧାରଣଙ୍କ ଜୀବନ ନିର୍ବାହରେ ଯେଉଁ ଅନ୍ତରାୟ ସୃଷ୍ଟି କରିବ ତାଙ୍କ କହିବାନୁସାରେ ପ୍ରତ୍ୟେକ ଘଟଣା ଘଟିଯାଇଛି, ଯାହାର ଅଲିଭା ସ୍ୱାକ୍ଷର ଇତିହାସର କ୍ଷୟହୀନ ପୃଷ୍ଠାରେ ଲିପିବଦ୍ଧ ରହିଛି । ଏପର୍ଯ୍ୟନ୍ତ ତାର ସୁଷ୍ଠ ସମାଧାନ ହୋଇପାରୁ ନାହିଁ । ବରଂ ଅଧିକରୁ ଅଧିକ ଜଟିଳ ହୋଇଛି । ଏବଂ ଏକରୁ ଅନେକ ସମସ୍ୟା ଉଦ୍ଭବ ହୋଇଛି । ହିନ୍ଦୁ ମୁସଲମାନ ବିଭେଦରୁ ଅଯୋଧ୍ୟାର ରାମମନ୍ଦିର ନିର୍ମାଣ ପର୍ଯ୍ୟନ୍ତ, ପଞ୍ଜାବ, କାଶ୍ମୀର, ଆସାମ ଓ ନାଗା ସମସ୍ୟା ପ୍ରଭୃତି ଦେଶର ଏକ ପ୍ରାନ୍ତରରୁ ଅନ୍ୟ ପ୍ରାନ୍ତର ପର୍ଯ୍ୟନ୍ତ ସହସ୍ରାଧିକ ସମସ୍ୟା ସହିତ ରାଜନୈତିକ ଶତ୍ରୁତା ଏ ଦେଶର ଅର୍ଥନୈତିକ ଓ ସାମାଜିକ ପରିସ୍ଥିତିକୁ ବିପର୍ଯ୍ୟସ୍ତ କରିଛି, ବିଷାକ୍ତ କରୁଛି ପ୍ରତ୍ୟେକ କର୍ମକ୍ଷେତ୍ରରେ ଅରାଜକତା ସ୍ୱଦେବାତାର ଓ ସୌରାଚାର ମାତ୍ରାଧିକ ଭାବରେ ବଢିଚାଲିଥିବାରୁ ଏକ ସର୍ବଗୁଣ ସମ୍ପନ୍ନ ଦେଶଭାବରେ ଭାରତବର୍ଷ ଏବେମଧ୍ୟ ଗଢି ହେଲା ନାହିଁ । ନୀତିହୀନ ବିବେକହୀନ ସ୍ୱାର୍ଥପର ଓ ଚରିତ୍ରହୀନ ନେତାମାନେ ଉଦ୍ୟମ ଚଳାଇଛନ୍ତି ନିଜ ମୁହଁରେ ନିଜର ଜଶ ଗାନକରି ଛଳନାର ଚାତୁରିରେ ଦେଶବାସୀଙ୍କୁ ଭୁଲ ମାର୍ଗରେ ନର୍କ ପର୍ଯ୍ୟନ୍ତ ନେଇଯିବା ପାଇଁ ବିଧିବୋଧ କରୁନାହାନ୍ତି । ରାଜା ଶଙ୍କର ପ୍ରତାପ ଜଣେ ନିଃସ୍ୱାର୍ଥ ଦେଶ ଭକ୍ତ ନ୍ୟାୟୀ ଓ ନୀତି ନିପୁଣ ସୁଶାସକ, ଉତ୍ତମ ସଂଗଠକ, ଗଭୀରଜ୍ଞାନ

ସମ୍ପର୍ଣ୍ଣ ରାଜନୀତିଜ୍ଞ ଏବଂ ଦୂରଦ୍ରଷ୍ଟା ଥିଲେ । ନିଜସ୍ୱ ଚିନ୍ତାର ଅନୁଶିଳନରେ ଅନେକ ଘଟଣା ଉଲ୍ଲେଖ କରୁଥିଲେ ଏବଂ ସେହି ଅନୁସାରେ ପ୍ରାୟତଃ କାର୍ଯ୍ୟ କରୁଥିଲେ । ତେଣୁ ତାଙ୍କର ବିଚାର ନିଷ୍ପତି ନିର୍ଭୁଲ ଭାବରେ ହେଉଥିଲା । ଏହି କାରଣରୁ ସେ ଏବଂ ତାଙ୍କର କାର୍ଯ୍ୟ ଅନ୍ୟମାନଙ୍କ ପାଇଁ ଆଦର୍ଶନୀୟ ଥିଲା । ଅନେକ ଜଟିଳ ପ୍ରଶ୍ନ ଉପରେ ଅଥବା ରାଜନୈତିକ ନିଷ୍ପତି ନେବାରେ କିମ୍ୱା ପ୍ରଶାସନିକ କାର୍ଯ୍ୟକ୍ରମ କରିବାରେ ତାଙ୍କ ପରାମର୍ଶ ନିଆଯାଉଥିଲା । ସେ କୌଣସି କ୍ଷେତ୍ରରେ ପରାପର ନ ଭାବି ଉଚିତ୍ ପରାମର୍ଶନେଇ ଯେତେବଡ ସମସ୍ୟା ହେଉନା କାହିଁକି ତାର ସମାଧାନ କରିପାରୁଥିଲେ । ଏହାଦ୍ୱାରା ସମସ୍ତେ ସନ୍ତୁଷ୍ଟ ହେଉଥିଲେ । ସେ ଅନେକଙ୍କୁ ମରଣାନ୍ତକ ବିପଦରୁ ରକ୍ଷା କରି ନିଜର ବୁଦ୍ଧି ବିବେକ ପ୍ରସାରିତ ହୃଦୟର ପରିଚୟ ଦେଇଛନ୍ତି । ତାଙ୍କର ଜୀବନ କାଳଜୟୀ ।

ବ୍ରିଟିଶ ସରକାର ୧୯୪୭ ଅଗଷ୍ଟ ୧୫ ତାରଖଦିନ ଏ ଦେଶର ସ୍ୱାଧିନତା ଭାରତୀୟ ନେତୃବୃନ୍ଦଙ୍କ ହସ୍ତରେ ଅର୍ପଣ କଲେ । କିନ୍ତୁ ଦେଶର ଅଖଣ୍ଡତାକୁ ବିପନ୍ନ କରିବାର ଉଦ୍ଦେଶ୍ୟରେ ସେମାନେ ବହୁ ବିଦ୍ୱେଶର ମଞ୍ଜି ପୋତିଦେଇ ଚାଲିଗଲେ ତାହାର ବିଷ ସାରାଦେଶରେ ଭୟଙ୍କର ରୂପରେ ଆତ୍ମପ୍ରକାଶ କଲା । ଦେଶବାସୀଙ୍କ ପକ୍ଷରେ ତାହାଥିଲା ଏକ ଗଭୀର ବିଭୀଷିକାମୟ । ସେ ସବୁର ସମାଧାନ ଆଜିପର୍ଯ୍ୟନ୍ତ ମଧ ହୋଇପାରୁନାହିଁ । ଏହାର କୁଫଳ ସମସ୍ତଙ୍କୁ ଭୋଗିବାକୁ ପଡୁଛି ।

ସେହି ସମୟରେ ବ୍ରିଟିଶ ଗୃହୀତ ଶାସନ ଅନୁସାରେ ଯେତେଗୁଡିଏ ସାର୍ବଭୌମ୍ୟ ଦେଶୀୟ ରାଜା ମହାରାଜାଙ୍କର ନିଜସ୍ୱ ଶାସନ ଅନ୍ତର୍ଭୁକ୍ତ ଥିଲା ସେଗୁଡିକର ମିଶ୍ରଣ ପ୍ରସ୍ତାବ ଉଠିବା ସ୍ୱଭାବିକ । ଏକ ବିଶାଳ ସାର୍ବଭୌମ ଗଣତାନ୍ତ୍ରିକ ଦେଶଭାବରେ ଭାରତବର୍ଷ ଯେତେବେଳେ ତାର ସଂଗଠନର ମୂଳଦୁଆ ପକାଇବାକୁ ଆରମ୍ଭ କରୁଛି, ସେତେବେଳେ ଏକ ପୂର୍ଣ୍ଣାଙ୍ଗ ଭାରତ ବର୍ଷର ରୂପକୁ ବାସ୍ତବ ରୂପଦେବାର ଭୁଲ କିଛି ନାହିଁ । ସେତେବେଳର ଇତିହାସକୁ ବିଶ୍ଳେଷଣ କଲେ ଅନେକ ଅପ୍ରିୟ ସତ୍ୟ ଲୋକ ଲୋଚନକୁ ଆସିବାବେଳେ ନେତାମାନଙ୍କୁ ସୁହାଇଲାଭଳି କିମ୍ୱା ସେମାନଙ୍କର ସ୍ୱାର୍ଥକୁ ରକ୍ଷା କଲାଭଳି ବିଶ୍ଳେଷଣାତ୍ମକ ବିଚାର କଲେ, ତାହା ଇତିହାସର ଦଲୀଲ୍ ହିସାବରେ ଗ୍ରହଣଯୋଗ୍ୟ ହେବନାହିଁ । ୧୯୪୭ ମସିହା ଡିସେମ୍ବର ମାସ ୧୩ ତାରିଖରେ ଭାରତର ଉପପ୍ରଧାନମନ୍ତ୍ରୀ ଲୌହମାନବ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ କଟକଠାରେ ଓଡିଶାର ଗଡଜାତଗୁଡିକୁ ରାଜ୍ୟ ସହିତ ମିଶ୍ରଣ ପାଇଁ ଆଲୋଚନା ଓ ନିଷ୍ପତ୍ତି ନେବା ନିମନ୍ତେ ରାଜା ମହାରାଜା ମାନଙ୍କର ଏକ ବୈଠକ ଅନୁଷ୍ଠିତ କରାଇଥିଲେ । ଆଲୋଚନାରେ ଅନେକ ପ୍ରାସଙ୍ଗିକ ବିଷୟବସ୍ତୁ ଆଲୋଚନା ହୋଇଥିଲା ।

ଏହି ଆଲୋଚନା ବେଳେ କେତେକ ଆଇନ୍ ସଂଗତ ଅକାଟ୍ୟ ପ୍ରସ୍ତାବ ରାଜା ମହାରାଜାମାନଙ୍କ ତରଫରୁ ଉଠିଲା । ସେହି ପ୍ରସ୍ତାବକୁ କିପରି ଆଇନର ପରିସର ମଧ୍ୟକୁ ଆଣି କାର୍ଯ୍ୟକାରୀ କରିବାକୁ ହେବ ତାହା ସେତେବେଳ ଏକ ଜଟିଳ ପ୍ରଶ୍ନ ହୋଇ ଉଠିଲା । ସର୍ଦ୍ଦାର ପଟେଲ ଥିଲେ ମନରେ, କର୍ମରେ ଏବଂ ଚିନ୍ତାରେ ଜଣେ ସବଳ ବ୍ୟକ୍ତି । ସେ ଆଇନଜିବୀ ଥିଲେ । ତେଣୁ ସାଂବିଧାନିକ ଅଧିକାର ଓ ଆଇନ ପରିସରଭୁକ୍ତ କାର୍ଯ୍ୟ ବ୍ୟତିରେକ ଅଂଧାଧୁନିଆ ଗ୍ରହଣ କରୁନଥିଲେ । ସେହିଦିନ ବୈଠକର ମଧ୍ୟାହ୍ନ ବିରତିବେଳେ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ପୂର୍ବ ବଂଧୁତ୍ୱକୁ ସ୍ମରଣ କରି ରାଜା ଶଙ୍କର ପ୍ରତାପଙ୍କ ସହିତ ପରାମର୍ଶ କଲେ । ସର୍ଦ୍ଦାର ପଟେଲ ଆଲୋଚନା ପ୍ରସଙ୍ଗରେ ସେତେବେଳେ ପ୍ରକାଶ କରି କହିଥିଲେ, ଯଦି ଏହି ଅଚଳ ଅବସ୍ଥାକୁ କେହି ସମାଧାନ କରି ଏକ ସର୍ବସମ୍ମତି ନିଷ୍ପତ୍ତି ଆଣିପାରେ ସେ ହେଉଛନ୍ତି ରାଜା ଶଙ୍କର ପ୍ରତାପ । ତାହାହିଁ ସତ୍ୟରେ ପରିଣତ ହେଲା । ଦ୍ୱିତୀୟାର୍ଦ୍ଧ ବୈଠକରେ ଆଲୋଚନା ଚାଲିଥିଲା ବେଳେ ରାଜା ଶଙ୍କର ପ୍ରତାପ ତାଙ୍କ ସ୍ୱଭାବ ଗୁଣ ଅପୂର୍ବ ଦେଶ ଭକ୍ତିର ପରିଚୟ ଦେଇ ଆଲୋଚନା ପ୍ରସଙ୍ଗରେ ସୃଷ୍ଟି ହୋଇଥିବା ଜଟିଳ ପ୍ରଶ୍ନ ଗୁଡିକର ସମାଧାନ କଲେ ଏବଂ ଦେଶର ଓ ଜାତିର ବୃହତ୍ତର ସ୍ୱାର୍ଥ ପାଇଁ ସମସ୍ତେ କିଛି ଆତ୍ମତ୍ୟାଗ କରିବାକୁ ଆହ୍ୱାନ ଦେଲେ । ରାଜା ଶଙ୍କର ପ୍ରତାପଙ୍କର ଏହି ଆଲୋଚନା ଆଇନ୍ ସଂଗତ ଜଟିଳତାକୁ ସମ୍ପୂର୍ଣ୍ଣ ଭାବରେ ଭାଙ୍ଗି ନ ଥିଲେ ହେଁ ଅନେକାଂଶରେ ସମସ୍ତେ ଅନୁପ୍ରାଣିତ ହୋଇଥିଲେ । ନିଜେ ରାଜା ଶଙ୍କର ପ୍ରତାପ ପ୍ରଥମେ ମିଶ୍ରଣ ପ୍ରସ୍ତାବକୁ ଅନୁମୋଦନ କରି ଦସ୍ତଖତ ଦେଲେ । ଏହା କ୍ଷୟହୀନ ଇତିହାସର ଏକ ଉଜ୍ଜ୍ୱଳ ଅଧ୍ୟାୟ । ଭାରତ ସରକାରଙ୍କ ସଚିବ ଶ୍ରୀ ଭି.ପି.ମେନ୍‌ନ ତାଙ୍କ ଲିଖିତ ବହିରେ ଏ ସମ୍ପର୍କରେ ତଥ୍ୟ ସମ୍ବଳିତ ଏକ ସୁନ୍ଦର ଧାରା ବିବରଣୀ ଲିପିବଦ୍ଧ କରିଛନ୍ତି । ଏହାଠାରୁ ବଳି ରାଜା ଶଙ୍କର ପ୍ରତାପଙ୍କର ଆତ୍ମପରିଚୟ ଆଉ କ'ଣ ବେଶୀ ହୋଇପାରେ ? ଓଡିଶା ସହିତ ଗଡଜାତ ମିଶ୍ରଣ କାର୍ଯ୍ୟ ସେତେବେଳେ ସମ୍ଭବ ହୋଇଥିଲା କେବଳ ରାଜା ଶଙ୍କର ପ୍ରତାପଙ୍କ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ, ପ୍ରଚ୍ଛନ୍ନ ନେତୃତ୍ୱ ଯୋଗୁଁ ।

ସେତେବେଳେ ରାଜା ମହାରାଜାମାନଙ୍କର ମୌଳିକ ଅଧିକାର ସମ୍ପର୍କରେ ଯେଉଁ ଚୁକ୍ତିନାମା ହୋଇଥିଲା, ତାହା ଅସ୍ୱୀକାର ବା ବାତିଲ କରାଯାଇ ନ ଥିଲା । କାରଣ ସେତେବେଳ ପର୍ଯ୍ୟନ୍ତ ସାର୍ବଭୌମ ରାଷ୍ଟ୍ର ଭାବରେ ଦେଶର ସଂବିଧାନ ଗୃହୀତ ହୋଇ ନଥିଲା ଓ ନୂତନ ଆଇନ୍ ପ୍ରଣୟନ କରି କାହାକୁ ବାତିଲ୍ କରାଯିବ କିମ୍ୱା କାହାକୁ ଗ୍ରହଣ କରାଯିବ ତାହା ନିର୍ଣ୍ଣୟ ହୋଇ ନଥିଲା । ଜନସାଧାରଣଙ୍କ ମଧ୍ୟରୁ କେତେକ ନେତୃସ୍ଥାନୀୟ ବ୍ୟକ୍ତି

ଯେଉଁମାନଙ୍କର ପାଣ୍ଡିତ୍ୟ ଥିଲା, ବ୍ୟକ୍ତିତ୍ୱ ଥିଲା, ପ୍ରଭାବ ଥିଲା ସେମାନେ ଓ କେତେକ ରାଜା ମହାରାଜା 'ମହା କୋଶଳ' ନାମରେ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନ ପାଇଁ ପ୍ରସ୍ତାବ ଦେଇଥିଲେ । ତାହା ସେତେବେଳର ପରିସ୍ଥିତି ଓ ଇତିହାସ ଦୃଷ୍ଟିକୋଣରୁ ଏହା ଅପ୍ରାସଙ୍ଗିକ ନ ଥିଲା । ବୃହତ୍ତର ଓଡିଶା ଗଠନରେ ଏହା ବାଧା ସୃଷ୍ଟି କରିଥାନ୍ତା ବୋଲି କୁହାଗଲା । କିନ୍ତୁ 'ମହା କୋଶଳ' ରାଜ୍ୟ ସୃଷ୍ଟି ହୋଇଥିଲେ ଯେଉଁ ଓଡିଆ ଭାଷା ଭାଷୀ ଅଂଚଳ ବିହାର, ମଧ୍ୟପ୍ରଦେଶ, ଆନ୍ଧ୍ରପ୍ରଦେଶ ଓ ବଙ୍ଗ ପ୍ରଦେଶ ମଧ୍ୟରେ ରହିଥିଲା ତାହା ଏହାର ଅନ୍ତର୍ଭୁକ୍ତ ହୋଇ ପାରିଥାନ୍ତା ଏବଂ ସେମାନେ ନିଜର ଭାଷାଭାଷୀ ଅଞ୍ଚଳରେ ସ୍ୱାଧିକାର ନେଇ ବସବାସ କରିବାର ସୁଯୋଗ ପାଇଥାନ୍ତେ । ଆଜି ମଧ୍ୟ ଅନେକ ଓଡିଆ ଅଞ୍ଚଳ ବିଭିନ୍ନ ପ୍ରଦେଶରେ ଯୋରଜବରଦସ୍ତ ଭାବରେ ରହିଛନ୍ତି ଏବଂ ନିଜର ଆତ୍ମ ଅଧିକାରରୁ ସେମାନଙ୍କୁ ବଂଚିତ କରି ରଖାଯାଇଛି ।

ଅନ୍ୟ ଏକ କାରଣ ହେଲା ସମ୍ବଲପୁର ସହିତ ସମସ୍ତ ଗଡଜାତ ଅଂଚଳ ବହୁ ପ୍ରାକୃତିକ ଓ ବନ୍ୟ ସମ୍ପଦରେ ପରିପୂର୍ଣ୍ଣ ହୋଇ ରହିଥିଲେ ହେଁ ମୋଗଲ ବନ୍ଦୀ ତୁଳନାରେ ଅତ୍ୟନ୍ତ ଅନଗ୍ରସର । କର୍ମଶକ୍ତି ପ୍ରଚୁର ଥିଲେ ହେଁ ସୁବିଧା ସୁଯୋଗ ନଥିବାରୁ ପ୍ରତ୍ୟେକ କ୍ଷେତ୍ରରେ ଦୁର୍ବଳ । ରାଜା ମହାରାଜା ଶାସିତ ଅଂଚଳରୁ ସବୁବେଳେ ସେତେବେଳେ ବ୍ରିଟିଶ୍ ଶାସକମାନେ ତାଙ୍କର ପେଶ୍‌କସ ନେଇଯିବାପରେ ବିକାଶ ମୂଳକ କାର୍ଯ୍ୟପାଇଁ ବସ୍ତୁତଃ ଅର୍ଥ ଅକୁଳାଣ ହୁଏ । ବ୍ରିଟିଶ୍ ଶାସକମାନେ ବିଭିନ୍ନ ଉପାୟରେ ଅର୍ଥ ଆଦାୟକରି ନେଇ ଯାନ୍ତି । ଅଥଚ ରାଜ୍ୟର ବିକାଶ ପାଇଁ କୌଣସି ଅନୁଦାନ ଦିଅନ୍ତି ନାହିଁ । ବରଂ ରାଜା ମହାରାଜାମାନଙ୍କଠାରୁ ବିଭିନ୍ନ ଆଳରେ ଅର୍ଥ ଆଦାୟକରି ସେମାନଙ୍କ ପ୍ରତ୍ୟକ୍ଷ ଶାସିତ ମୋଗଲ ବନ୍ଦୀ ଅଂଚଳର ଉନ୍ନତି ପାଇଁ ତାହା ଖର୍ଚ୍ଚ କରୁଥିଲେ । ସ୍କୁଲ, କଲେଜ, ଡାକ୍ତରଖାନା ଆଦି ବହୁ ଅନୁଷ୍ଠାନ ସେତେବେଳେ ମୋଗଲ ବନ୍ଦୀ ଅଂଚଳରେ ଗଡଜାତ ଗୁଡିକର ଅର୍ଥରେ ଗଢି ଉଠିଥିଲା । ତେଣୁ ସମତୁଳ ଭାବରେ ଗଡଜାତ ଗୁଡିକ ଆହୁରି ଅଧିକା ପଛରେ ପଡିରହିଥିଲା । ମୋଗଲ ବନ୍ଦୀ ତୁଳନାରେ ଏହି କାରଣରୁ ଲୋକମାନଙ୍କର ଅବସ୍ଥାକୁ ଚାହିଁ ପ୍ରାକୃତିକ ଓ ବନ୍ୟସମ୍ପଦକୁ ଯଥାଯୋଗ୍ୟ ଭାବରେ ବିନିଯୋଗ କରି ସାମୁହିକ ବିକାଶ କରାଯାଇ ପାରିବ ବୋଲି ଲକ୍ଷ୍ୟ ରଖାଯାଇ ମହାକୋଶଳ ରାଜ୍ୟର ଦାବୀ ଉଠିଥିଲା । ଏହାର ଉପଯୋଗିତା ବର୍ତ୍ତମାନ ଉପଲବ୍ଧି କରାଯାଉ ଅଛି, ଏହି ଅଂଚଳର ଲୋକମାନଙ୍କ ଦ୍ୱାରା । କିନ୍ତୁ ରାଜା ଶଙ୍କର ପ୍ରତାପ ସେତେବେଳେ ଗୁରୁଗମ୍ଭୀର ଭାବରେ ନିଜର ସ୍ୱର ଉତ୍ତୋଳନ କରି ପ୍ରସ୍ତାବ ଦେଇ କହିଥିଲେ ଯେ ବାହାରେ ରହିଥିବା ସମସ୍ତ ଓଡିଆ ଭାଷା

ଭାଷି ଅଂଚଳକୁ ନେଇ ଏକ ପୂର୍ଣ୍ଣାଙ୍ଗ ଓଡିଶା ଆମ୍ଭମାନଙ୍କର ଏକାନ୍ତ କାମ୍ୟ । ଏଥିପାଇଁ ଆମ୍ଭମାନଙ୍କର ମିଳିତ ଉଦ୍ୟମ ଏକାନ୍ତ ଭାବରେ ଆବଶ୍ୟକ । ଅବଶୋଷ ଯେ ତାଙ୍କରି ପରିକଳ୍ପନା ଅନୁଯାୟୀ ବାହାରେ ରହିଥିବା ଓଡିଆ ଭାଷାଭାଷି ଅଂଚଳ ଆସି ପାରିଲା ନାହିଁ । ଗଡଜାତ ଗୁଡିକର ମିଶ୍ରଣ ପରେ ଓଡିଶା ଗଠନ ଆବଶ୍ୟକ ହେଲା । ବୃହତ୍ତର ଓଡିଶା ଗଠନ ହୋଇ ପାରିଲା ନାହିଁ କେବଳ ନେତାମାନଙ୍କ ଦୁର୍ବଳ ନେତୃତ୍ୱ ଯୋଗୁଁ । ସବୁ କ୍ଷେତ୍ରରେ ରାଜାଶଙ୍କର ପ୍ରତାପଙ୍କର ମୌଳିକ ପ୍ରତିଭା ସର୍ବସମ୍ମତି କ୍ରମେ ସ୍ୱୀକୃତ ହୋଇଛି । ସେ ନୀଚ କଥା ପ୍ରତି କର୍ଣ୍ଣପାତ କରୁନଥିଲେ । ନୀଚ ମନୋବୃତ୍ତିର ଲୋକଙ୍କଠାରୁ ଦୂରରେ ରହୁଥିଲେ । ନିଜର ଆତ୍ମ ବଡିମା କେଉଁଠି କେତେବେଳ ହେଲେ ପ୍ରଦର୍ଶନ କରୁନଥିଲେ ।

୧୯୪୭ ମସିହାରୁ ୧୯୫୧ ମସିହା ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ କରାଯାଇଥିଲା । କେନ୍ଦ୍ରରେ ପ୍ରଧାନମନ୍ତ୍ରୀଥିଲେ ଜବାହାରଲାଲ ନେହେରୁ । ଓଡିଶାରେ ଡକ୍ଟର ହରେକୃଷ୍ଣ ମହତାବ ମୂଖ୍ୟମନ୍ତ୍ରୀଥିଲେ । ୧୯୫୦ ମସିହା ଜାନୁୟାରୀ ୨୬ ତାରିଖ ଦିନ ଭାରତବର୍ଷ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ର ହିସାବରେ ବିଦ୍ଧିବଦ୍ଧ ଘୋଷଣା ନାମା ପରେ ଜନ୍ମ ଲାଭ କଲା । ୧୯୫୭ ମସିହାରେ ଦେଶରେ ୨ୟ ସାଧାରଣ ନିର୍ବାଚନ ହେଲା । ରାଜା ଶଙ୍କର ପ୍ରତାପ ଏବଂ ମୁଁ ସାଧାରଣ ନିର୍ବାଚନରେ ଭାଗ ନେଲୁ ଗଣତନ୍ତ୍ର ପରିଷଦ ତରଫରୁ ଯଥାକ୍ରମେ ଢ଼େଙ୍କାନାଳ ଓ କାମାକ୍ଷାନଗର ନିର୍ବାଚନ ମଣ୍ଡଳୀରୁ । ଢ଼େଙ୍କାନାଳ ମତଦାତା ଭାଇଭଉଣୀ ମାନଙ୍କର ଗଭୀର ବିଶ୍ୱାସ ଓ ଆସ୍ଥା ଆମ୍ଭମାନଙ୍କ ଉପରେ ଥିବାରୁ ରାଜାଶଙ୍କର ପ୍ରତାପ ୨୯୯୭୦ ଓ ମୁଁ ୨୦୭୮୪ ଭୋଟ ପାଇ ନିର୍ବାଚିତ ହେଲୁ । ସେହିପରି ୧୯୬୧ ମସିହାରେ ଅନୁଷ୍ଠିତ ୩ୟ ମଧ୍ୟବର୍ତ୍ତି ନିର୍ବାଚନରେ ମୁଁ ଢ଼େଙ୍କାନାଳ ନିର୍ବାଚନମଣ୍ଡଳୀରୁ ବିଜୁ ପଟ୍ଟନାୟକଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ୫ ହଜାର ଅଧିକ ଭୋଟରେ ନିର୍ବାଚିତ ହୋଇଥିଲି ।

୧୯୬୧ ମସିହାରେ ଗଣତନ୍ତ୍ର ପରିଷଦ ଗୋଟିଏ ରାଜ୍ୟସ୍ତରୀୟ ଦଳଥିଲା । ସେହିବର୍ଷ ଏକ ସର୍ବଭାରତୀୟ ଦଳ ସ୍ୱତନ୍ତ୍ର ପାର୍ଟିରେ ଏହାର ମିଶ୍ରଣ ହେଲା । ରାଜା ଶଙ୍କର ପ୍ରତାପ ସିଂହଦେଓ ମହୀନ୍ଦ୍ର ବାହାଦୁର ସ୍ୱତନ୍ତ୍ର ପାର୍ଟିର ମନୋନୀତ ପାର୍ଥୀ ହିସାବରେ ୧୯୬୨ ମସିହାରୁ ପାର୍ଲିଆମେଣ୍ଟକୁ ପ୍ରତିଦୋନ୍ଦିତା କରିଥିଲେ ଏବଂ ତାଙ୍କୁ ଏହି ନିର୍ବାଚନରେ ଶ୍ରୀ ବୈଷ୍ଣବ ଚରଣ ପଟ୍ଟନାୟକ ବହୁ ଭୋଟରେ ହରାଇ ନିର୍ବାଚିତ ହୋଇଥିଲେ । ତାପରେ ୧୯୬୪ ମସିହାରେ ମୋ ସ୍ୱାମୀ ଭାରତର ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ ଏବଂ ୩ ଅଗଷ୍ଟ ୧୯୬୫ ମସିହାରେ ଆମର କଲିକତା ନିବାସ ୧୪ କାମାକ ଷ୍ଟ୍ରିଟ୍‌ରେ ତାଙ୍କର ବିୟୋଗ ଘଟିଥିଲା । ସେ ମୋତେ ଓ ପିଲା ମାନଙ୍କୁ ଶୋକ ସାଗରରେ ଛାଡି

ଚାଲିଗଲେ । ସେହି ସମୟରେ 'ସମାଜ ଓ ହିନ୍ଦୁସ୍ଥାନ ଷ୍ଟାଣ୍ଡାଡରେ ବାହାରିଥିବା ତାଙ୍କ ବିୟୋଗ କାହାଣୀ ଓ ଡକ୍ଟର ହରେକୃଷ୍ଣ ମହତାବଙ୍କର ଶୋକ ବାର୍ତ୍ତା ତଥା ମୋର ସାନ ପୁଅ ପଟ୍ଟାୟତ ମାତୃପ୍ରସାଦ ସିଂହ ଦେଓଙ୍କ ଲିଖିତ 'ପିତୃ ସ୍ମରଣେ' AnnexureIII ରେ ଉଦ୍ଧୃତ ହେଲା ।

୧୯୬୫ ମସିହାରେ ଓଡିଶାରେ ଭୟାଭହ ମରୁଡି ଦେଖାଦେଇଥିଲା ଏବଂ ସେତେବେଳେ ବହୁ ବିରୋଧୀ ଦଳର ନେତା ବିକ୍ଷୋଭ ଆନ୍ଦୋଳନ କରିଥିଲେ । ବିଧାନ ସଭାରେ ବିରୋଧୀ ଦଳର ନେତା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ପାର୍ଲିଆମେଣ୍ଟରେ କଳାହାଣ୍ଡି ମହାରାଜା ଏବଂ ଲୋକସଭା ସଦସ୍ୟ ଶ୍ରୀ ପ୍ରତାପ କେଶରୀ ଦେଓ, ଯଥାକ୍ରମେ ରାଜ୍ୟ ବିଧାନ ସଭା ଓ ଲୋକସଭାରେ ପ୍ରସ୍ତାବ ଆଗତ କରିଥିଲେ ଏବଂ ବହୁ ମରୁଡି ପ୍ରତିକାର କାର୍ଯ୍ୟମାନ କରାଇଥିଲେ ।

୪ର୍ଥ ସାଧାରଣ ନିର୍ବାଚନ ମାର୍ଚ୍ଚ ୧୯୬୭ ମସିହାରେ ହେଲା ଯେଉଁଥିରେ ବିଧାନସଭା ଓ ଲୋକସଭା ନିର୍ବାଚନ ହୋଇଥିଲା । ସେହି ସମୟରେ ମୋ ଇଛା ବିରୁଦ୍ଧ ସତ୍ତ୍ୱେ ମୋର ଭାଇ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଯେକି ଓଡିଶା ବିଧାନସଭାରେ ବିରୋଧି ଦଳର ନେତା ଥିଲେ ମୋତେ ବୁଝାଇଥିଲେ ଯେ ମୋର ସ୍ୱର୍ଗତ ସ୍ୱାମୀଙ୍କର କର୍ତ୍ତବ୍ୟ ନିଷ୍ଠାକୁ ମନେରଖି ଢ଼େଙ୍କାନାଳ ଲୋକଙ୍କ ସେବା କରିବା ପାଇଁ ଓ ରାଜା ଶଙ୍କର ପ୍ରତାପ ସିଂହଦେଓ ମହୀନ୍ଦ୍ର ବାହାଦୁରଙ୍କର ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ପୂର୍ଣ୍ଣ କରିବାକୁ ଆଉଥରେ ପ୍ରତିଦ୍ୱନ୍ଦିତା କରିବାପାଇଁ । ୧୯୬୭ ମସିହାରେ ମୋତେ ସାତ ଜଣ ପ୍ରତିଦ୍ୱନ୍ଦୀ ପ୍ରତିଦ୍ୱନ୍ଦିତା କରୁଥିଲେ । ତା ମଧ୍ୟରେ ଆମ ଢ଼େଙ୍କାନାଳ ପାର୍ଲିଆମେଣ୍ଟ constituency ର ଶ୍ରୀ ବୈଷ୍ଣବ ଚରଣ ପଟ୍ଟନାୟକ ମଧ୍ୟ ଥିଲେ । ଢ଼େଙ୍କାନାଳର ଭାଇଭଉଣୀ ମାନେ ମୋତେ ବହୁ ଭୋଟରେ ନିର୍ବାଚିତ କରିଥିଲେ ଓ ଅନ୍ୟ ସାତ ଜଣ ପ୍ରତିଦ୍ୱନ୍ଦି ନିଜର ଅମାନତ ହରାଇଥିଲେ । ମୋ ସଙ୍ଗେ ସଙ୍ଗେ ମୋର ଜ୍ୟେଷ୍ଠ ପୁତ୍ର ଶ୍ରୀ କାମାକ୍ଷା ପ୍ରସାଦ ସିଂହଦେଓ ମଧ୍ୟ ଏମ.ପି. ନିର୍ବାଚିତ ହୋଇଥିଲେ ଢ଼େଙ୍କାନାଳ ନିର୍ବାଚନ ମଣ୍ଡଳୀରୁ । ଓଡିଶାରେ ପ୍ରଥମ ଥର ପାଇଁ ଏକ ଅଣ କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠନ ହେଲା ଓ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ହେଲେ ।

ରାଜା ଶଙ୍କର ପ୍ରତାପ ଜଣେ ଲୋକ ପ୍ରତିନିଧି ଭାବରେ ବିଧାନସଭା ଓ ରାଜ୍ୟସଭାରେ ତାଙ୍କର ପ୍ରୀତିପୂର୍ଣ୍ଣ ଓ ବହୁମୁଖୀ ପ୍ରତିଭାକୁ ପ୍ରମାଣିତ କରିପାରିଥିଲେ । ଅକାଟ୍ୟ ଯୁକ୍ତି ସହ ଲୋକ ହିତକର କାର୍ଯ୍ୟକ୍ରମ ଗୁଡିକୁ ଦୂରଦୃଷ୍ଟି ସହିତ ସଂପାଦନ କରିବାକୁ ସରକାରଙ୍କୁ ଅନୁପ୍ରାଣିତ କରୁଥିଲେ । ଉଦାହରଣ ସ୍ୱରୂପ ଓଡିଶାର ଶିକ୍ଷିତ ବେକାର ଯୁବକ ମାନଙ୍କୁ ରାଉରକେଲା ଇସ୍ପାତ କରଖାନାରେ ନିଯୁକ୍ତି ଦିଆଯିବା ସକାଶେ ରାଜା ଶଙ୍କର

ପ୍ରତାପ ବିଧାନ ସଭାରେ ପ୍ରାଇଭେଟ୍ ମେମ୍ବରର୍ସ ବିଲ ଆଗତ କରିଥିଲେ ଏବଂ ତାହା ସର୍ବସମ୍ମତ ଭାବରେ ଅନୁମୋଦିତ ହୋଇଥିଲା । ଏହା ସଂସଦୀୟ ପ୍ରଣାଳୀର ଏକ ଐତିହାସିକ ପଦକ୍ଷେପ ଥିଲା ।

୧୯୫୮ - ୫୯ ମସିହାରେ ରାଜା ସାହେବ, ମୁଁ ଏବଂ ବେଲଟିକିରି ଗ୍ରାମପଞ୍ଚାୟତ ର ତତ୍‌କାଳୀନ ସରପଞ୍ଚ ତଥା ଓଡିଶା ବିଧାନ ସଭାର ପୂର୍ବତନ ସଦସ୍ୟ ଶ୍ରୀ ହଳଧର ମିଶ୍ର, ଭାରତ ସରକାରଙ୍କର ମାନ୍ୟବର ମନ୍ତ୍ରୀ ଶ୍ରୀ ଏସ.କେ. ଦେଙ୍କର ନିମନ୍ତ୍ରଣରେ ମଶୁରିଠାରେ ଅନୁଷ୍ଠିତ ସର୍ବଭାରତ ସ୍ଥରୀୟ ଗୋଷ୍ଠି ଉନ୍ନୟନ ଶିବିରରେ ଓରିଏଣ୍ଟେସନ୍ କୋର୍ସରେ ଅଂଶ ଗ୍ରହଣ କରିବା ପାଇଁ ଯାଇଥିଲୁ । ଫେରିଆସି, ଆମେ ବିଶେଷ କରି ରାଜା ଶଙ୍କର ପ୍ରତାପ ଓ ମୁଁ ଓଡିଶାର ପ୍ରତ୍ୟେକ ପୁରପଲ୍ଲି, ଆଦିବାସୀ ଅଂଚଳ ପାର୍ବତୀୟ ଅଂଚଳ ଓ ଜଙ୍ଗଲ ଅଂଚଳ ପରିଭ୍ରମଣ ଓ ପରିଦର୍ଶନ କରିବାକୁ ଯାଇଥିଲୁ । ରାଜା ଶଙ୍କର ପ୍ରତାପ, ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଏହି ଗୋଷ୍ଠୀ ଉନ୍ନୟନ କାର୍ଯ୍ୟକ୍ରମ କିପରି ଭାବରେ କାର୍ଯ୍ୟକାରୀ ହେଉଛି, ଏବିଷୟରେ ସେ ରାଜ୍ୟସଭାର ସଦସ୍ୟଥାଇ, ସରକାରୀ କର୍ମଚାରୀ ଏବଂ ସ୍ଥାନୀୟ ପ୍ରତିନିଧିଙ୍କ ସଙ୍ଗରେ ତାଙ୍କ ଅଂଚଳକୁ ଯାଇ ଆଲୋଚନା କରୁଥିଲେ ଏବଂ ପରାମର୍ଶ ଦେଉଥିଲେ । ବରୋଧୀ ଦଳରେ ଥିଲେ ମଧ ତାଙ୍କ ପ୍ରସ୍ତାବକୁ ସହଜରେ କେହି ଏଡାଇ ପାରୁନଥିଲେ । ଢ଼େଙ୍କାନାଳରେ ଆଜି ଯେତେଗୁଡିଏ କାର୍ଯ୍ୟ ହୋଇଛି ତହିଁର ମୂଳଦୂଆ ସେ ପକାଇଥିଲେ । ପରବର୍ତ୍ତୀ ସମୟରେ ତାଙ୍କର ପ୍ରାଥମିକ ଉଦ୍ୟମ ଯୋଗୁଁ ସେଗୁଡିକୁ କାର୍ଯ୍ୟକାରୀ କରାଇବା ସମ୍ଭବ ହୋଇଥିଲା । ଲୋକମାନଙ୍କର ସମସ୍ୟା ସେ ଅତି ନିଖୁଣ ଭାବରେ ଉତ୍‌ଥାପିତ କରୁଥିଲେ । ପ୍ରାଚୀନ କଳିଙ୍ଗ, ଉତ୍କଳ ବା ଆଜିର ଓଡିଶା କହିଲେ ଯାହା ବୁଝାଏ ତାହାର ଇତିହାସ, କଳା, କୃଷି, ଧର୍ମ, କର୍ମ, ସାହିତ୍ୟ, ସଂସ୍କୃତି, ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଆଦି ସକଳ କାର୍ଯ୍ୟକ୍ରମର କେନ୍ଦ୍ରବିନ୍ଦୁ ହେଉଛନ୍ତି ଶ୍ରୀକ୍ଷେତ୍ର ପୁରୀର ପ୍ରଭୁ ଜଗନ୍ନାଥ, ଜଗନ୍ନାଥ ସଂସ୍କୃତି ଏବଂ ଗଜପତି ମହାରାଜା । ଏହାଙ୍କର ସୁଦୂର ପ୍ରସାରୀ ପ୍ରଭାବ ସମଗ୍ର ଭାରତ ବର୍ଷର ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ଉପରେ ଯୁଗ ଯୁଗ ଧରି ପଡି ଆସିଅଛି । ପ୍ରାଚୀନ କଳିଙ୍ଗ, ଉତ୍କଳ ବା ଆଜିର ଓଡିଶାର ଉତ୍‌ଥାନ ପତନ ଜଗତର ନାଥ ଜଗନ୍ନାଥ ଓ ଏହାର ସଂସ୍କୃତିକୁ କେନ୍ଦ୍ରକରି ହେଉଥିଲା, ତାହା ନୁହେଁ, ସମଗ୍ର ଭାରତ ବର୍ଷର ଉତ୍‌ଥାନ ପତନ ମଧ ଏହାକୁ କେନ୍ଦ୍ରକରି ହେଉଥିଲା । ଏହା କେତେବେଳେ ହେଲେ ଅସ୍ୱୀକାର କରାଯାଇ ନାହିଁ । କେବଳ ପ୍ରଭୁ ଜଗନ୍ନାଥ ଓ ଜଗନ୍ନାଥ ସଂସ୍କୃତି ଉପରେ ଗଭୀର ଭାବରେ ଆତ୍ମ ବିଶ୍ୱାସ ରଖି ଏବଂ ଏକ ସାର୍ବଜନୀନ ଜଗନ୍ନାଥ

ଧର୍ମରେ ଅନୁପ୍ରାଣିତ ହୋଇ ତାଙ୍କର ପ୍ରଧାନ ସେବକ, ପୂଜକ, ରକ୍ଷକ ଏବଂ ଭକ୍ତ ଗଜପତି ମହାରାଜାଙ୍କ ନେତୃତ୍ୱରେ ଏହି ରାଜ୍ୟକୁ ଏକ ସର୍ବମାନ୍ୟତାର ଅଂଚଳ ଭାବରେ ଗଢି ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖି ପାରିଥିଲେ । ଏହାରି ଭିତରେ ଉତ୍‌ଥାନ ପତନ ଅବଶ୍ୟ ଘଟିଛି । କିନ୍ତୁ ନିଜର ମୌଳିକତା ସେହି ଉତ୍‌ଥାନ ପତନ ମଧ୍ୟରେ ସେମାନେ ହରାଇନଥିଲେ ଏବଂ କାହାର ଅଧୀନତା ସହଜରେ କେବେ ସ୍ୱୀକାର କରିନଥିଲେ । ସ୍ୱାଧୀନ ଜାତି ହିସାବରେ ସ୍ୱାଧୀନ ଚିନ୍ତା କର୍ମ ଭିତରେ ନିଜର ଶ୍ରେଷ୍ଠତ୍ୱ ପ୍ରତି କ୍ଷେତ୍ରରେ ପ୍ରତିପାଦନ କରିଥିଲେ । ପ୍ରଭୁ ଜଗନ୍ନାଥ ଆଶୀର୍ବାଦ ପାଇ କଳିଙ୍ଗ ବା ଉତ୍କଳ ସୈନ୍ୟ ବାହିନୀ ଗଜପତି ମହାରାଜାଙ୍କ ନେତୃତ୍ୱରେ ଏକ ସମୟରେ ଗଙ୍ଗାଠାରୁ ଗୋଦାବରୀ ଯାଏ ରାଜ୍ୟ ବିସ୍ତାର କରିଥିଲେ । ଏହି ଅତୁଳନୀୟ ଶକ୍ତିର ପରାକ୍ରମ ବହୁକାଳ ଯାଏ ଏ ଦେଶ ମାଟିରେ ତିଷ୍ଠି ରହିଥିଲା । କେବଳ ଏହି କାରଣ ଯୋଗୁଁ ଆଧୁନିକ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ବ୍ରିଟିଶ୍ ସରକାର ଚେଷ୍ଟାକରି ପାରିନଥିଲା ଓଡିଶା ଅଧିକାର କରିବାପାଇଁ । କାଳାନ୍ତକ ଉଦ୍ୟମ, ସେମାନଙ୍କର ବହୁଶକ୍ତି ଅପଚୟ ଓ ଅବକ୍ଷୟ ପରେ ଏଇ ଓଡିଆଜାତିକୁ ବଳରେ, ବୁଦ୍ଧିରେ, କୌଶଳରେ ସେମାନେ ପାରିନଥିଲେ । କୁଟକପଟକୁ ଆଲେଖ୍ୟ କରି ବ୍ରିଟିଶ ନୀଚ, ହୀନ ଓ ଚିନ୍ତାବୃଳକ ବୁଦ୍ଧି ନେଇ ଦେଶଦ୍ରୋହୀ ଓ କୁଳହୀନ ମଲାଙ୍ଗବାହୀ କେତେଜଣ ମାତ୍ର ସ୍ୱଦେଶୀ ଲୋକଙ୍କ ସହାୟତାରେ ବ୍ରିଟିଶ୍ ଅଧିକାର କରିଥିଲେ କଳିଙ୍ଗ ବା ଉତ୍କଳ କିମ୍ବା ଆଜିର ଓଡିଶାକୁ । ଏହି ଗୌରବ ନିଶ୍ଚୟ ଓଡିଶାବାସୀଙ୍କର ବୀରତ୍ୱପୂର୍ଣ୍ଣ କାହାଣୀରେ ଯୋଦ୍ଧା ଓଡିଆ ଜାତିର ଉତ୍‌କର୍ଷତା ଇତିହାସର ବହୁ ପୃଷ୍ଠାରେ ଲିପିବଦ୍ଧ ହୋଇଛି ।

ଏହିପରି ଏକ ସର୍ବୋଚ୍ଚ ଗୌରବଦୀପ୍ତ ପ୍ରାଚୀନ କଳିଙ୍ଗ, ଉତ୍କଳ ବା ଓଡିଶାର ଆଧ୍ୟତ୍ମିକ, ରାଜନୈତିକ ଓ ସାମାଜିକ ନେତୃତ୍ୱ ପ୍ରତି ଭାରତ ବର୍ଷର ବିଭିନ୍ନ ରାଜା ବା ଅଞ୍ଚଳର ଶାସକ ଅଥବା ବ୍ୟକ୍ତିବିଶେଷଙ୍କର ପ୍ରଚୁର ଆନୁଗତ୍ୟ ପୂର୍ଣ୍ଣ ସ୍ୱୀକୃତି ରହିଥିଲା । ଭାରତର ପ୍ରତ୍ୟେକ ଅଞ୍ଚଳର ଲୋକମାନଙ୍କର ପ୍ରଭୁ ଜଗନ୍ନାଥ, ଜଗନ୍ନାଥ ସଂସ୍କୃତି ପ୍ରତି ଭକ୍ତି ଏବଂ ବିଶ୍ୱାସ ଓ ସ୍ନେହ ମିଶ୍ରିତ ମାନ୍ୟତାଥିଲା ଗଜପତି ମହାରାଜାଙ୍କ ପ୍ରତି । ଏହି କାରଣ ନେଇ ଦେଶର ବିଭିନ୍ନ ଅଞ୍ଚଳରୁ ଜଗନ୍ନାଥ ଦର୍ଶନ ପାଇଁ ଅଥବା ଜଗନ୍ନାଥ ସଂସ୍କୃତି ସହିତ ପରିଚୟ ପାଇଁ କିମ୍ବା ଗଜପତିଙ୍କ ଦର୍ଶନରେ ଭାଗ୍ୟ ନିର୍ଦ୍ଧାରଣ ପାଇଁ ବହୁ ସାଧୁସନ୍ଥଙ୍କ ସହିତ ତତ୍‌କାଳୀନ ଶାସକ ଗଣ ଓ ସାଧାରଣ ଯାତ୍ରୀମାନେ ଶ୍ରୀକ୍ଷେତ୍ର ପରିଦର୍ଶନରେ ଆସୁଥିଲେ । ଏହା ସୁଦୁର ଅତୀତ କାହାଣୀ ହେଲେ ମଧ ଏଥିରେ ଐତିହାସିକ ସତ୍ୟ ନିହିତ ରହିଛି ବୋଲି ନିଃସନ୍ଦେହରେ କୁହାଯାଇପାରେ ।

ଗଡଜାତ କହିଲେ ଆଜି ଯାହା ବୁଝାପଡେ ତାହା ସେ କାଳରେ ଝାଡଖଣ୍ଡ ଅଞ୍ଚଳ ବା ଝାଡଖଣ୍ଡ ମୂଳକ ଭାବରେ ପରିଚିତ ଥିଲା । ଅଝାଲ ଜଙ୍ଗଲରେ ପରିପୂର୍ଣ୍ଣ ପାହାଡ ପର୍ବତ ଘେରା ଏହି ଅଞ୍ଚଳଥିଲା ଅତ୍ୟନ୍ତ ଅଗମ୍ୟ ଓ ଅବୋଧ । ଜନବସତିଥିଲା କମ୍ ! ହିଂସ୍ରଜନ୍ତୁ ପରିପୂର୍ଣ୍ଣଥିଲା ଏହି ଅଞ୍ଚଳ । ଲୋକମାନେ ଥିଲେ ଶକ୍ତିବାନ୍, ନିର୍ଭୀକ ଏବଂ ଚରମ ଭାବରେ ସ୍ୱାଧୀନଚେତା । ଶିକ୍ଷାଦୀକ୍ଷାରେ ସେମାନେ ଥିଲେ ପ୍ରାୟତଃ ପ୍ରାଚୀନ ପନ୍ଥୀ । କିନ୍ତୁ ସ୍ୱାଧୀନ ଭାବରେ ଶଙ୍କାହୀନ ଜୀବନଯାପନ କରି ପରମୁଖାପେକ୍ଷୀ ନ ହୋଇ ନିଜେ ଖଟିଖଟି ନିଜସ୍ୱ କୃଷିଜାତ ଦ୍ରବ୍ୟ ଉପରେ କିମ୍ବା ଜଙ୍ଗଲ ଜାତ ଦ୍ରବ୍ୟ ଉପରେ ନିର୍ଭର କରି ସ୍ୱଚ୍ଛନ୍ଦରେ ଚଳିଯାଉଥିଲେ । ସେମାନଙ୍କ ମଧରେ ଅଳ୍ପକିଛି ଛୋଟ ଛୋଟ ରାଜଶକ୍ତିର ପ୍ରଚଳନ ଥିଲେ ମଧ ପ୍ରଭୁ ଜଗନ୍ନାଥ ଓ ଗଜପତି ମହାରାଜାଙ୍କୁ ସେମାନେ ଜୀବନପଣ କରି ମାନ୍ୟତା ଦେଉଥିଲେ ଏବଂ ସ୍ୱୀକାର କରୁଥିଲେ । ଅନେକ କ୍ଷେତ୍ରରେ ନିଜ ଛଡା ଅନ୍ୟ କାହାକୁ ସେମାନେ ମାନ୍ୟତା ଦେଉନଥିଲେ । ଅଜ୍ଞତା ପରିପୂର୍ଣ୍ଣ ଝାଡଖଣ୍ଡ ମୂଳକର ଲୋକମାନେ ଅନେକ ସମୟରେ ଗଜପତି ମହାରାଜାଙ୍କର ସହାୟତା ଦରକାର କରୁଥିଲେ ।

ଅଧିକାଂଶ ସମୟରେ ଶ୍ରୀକ୍ଷେତ୍ରକୁ ଜଗନ୍ନାଥ ଦର୍ଶନରେ ଆସି ବାହାରର ବହୁଯୋଗ୍ୟ ବ୍ୟକ୍ତ ନିଜ ର ଶକ୍ତି, ସାମର୍ଥ୍ୟ, ଜ୍ଞାନ, ଭକ୍ତି ଓ ଅନ୍ୟାନ୍ୟ ଉପାଦେୟତା ପୂର୍ବକ ସମ୍ମାନ ଜନକ ଭାବରେ ପ୍ରଦର୍ଶନ ଇତିହାସ ଅସ୍ୱୀକାର କରେନାହିଁ ଗଜପତି ମହାରାଜାଙ୍କ ଅନୁଗ୍ରହ ଲାଭକରି ପ୍ରତିଷ୍ଠିତ ହେବାକଥା ।

ଢ଼େଙ୍କାନାଳ ସହିତ ମୋର ଯେଉଁ ଆଜିବନ ନିବୀଡ ସଂପର୍କ ରହିଛି, ତାହା ଅସଂପୂର୍ଣ୍ଣ ରହିଯିବ ଯଦି ମୁଁ ଢ଼େଙ୍କାନାଳ ରାଜବଂଶର ଇତିହାସ ବିଷୟରେ ଦୁଇପଦ ନଲେଖେ । କିନ୍ତୁ ଏହା ଲେଖିବା ପୂର୍ବରୁ ଉଚିତ୍ ମନେକଲି କେତେକ ଅଭିଜ୍ଞ ଲେଖକ, ସାହିତ୍ୟିକ ଓଐତିହାସିକ ମାନଙ୍କ ସହିତ ପରାମର୍ଶ କରିବାକୁ । ସେମାନଙ୍କ ମଧରେ ମୋର ଦିଅର ନିନିଭାଇ ରାଜକୁମାର ଶ୍ରୀଶେଷ ପ୍ରତାପ ସିଂହଦେଓ, ଶ୍ରୀ ରୁଦ୍ରନାରାୟଣ ମିଶ୍ର, ଶ୍ରୀ ରଣେନ୍ଦ୍ର ପ୍ରତାପ ସିଂହଦେଓ, ଶ୍ରୀ ରାଜୀବ ଲୋଚନ ସିଂହଦେଓ, ଶ୍ରୀ କୃଷ୍ଣଚନ୍ଦ୍ର ହରିଚନ୍ଦନ ସିଂ, ଶ୍ରୀ ସୁରେନ୍ଦ୍ର ମିଶ୍ର ଏବଂ ଶ୍ରୀ ଚନ୍ଦ୍ର ମୋହନ ସ୍ୱାଇଁ ଅନ୍ୟତମ । ଏହା ସହିତ ମୋର ଏହି ଉଦ୍ୟମରେ ଶ୍ରୀ ରାମଚନ୍ଦ୍ର ନନ୍ଦ ଭକ୍ତି ବିନୋଦଙ୍କ ଲିଖିତ ''ଢ଼େଙ୍କାନାଳ ଇତିହାସ'' ବିଶେଷ ସହାୟକ ହୋଇଥିଲା ।

## ଢେଙ୍କାନାଳ ରାଜବଂଶ ପରିଚୟ ଓ ଶାସନ ପ୍ରଣାଳୀ :

ଆମ୍ଭ ଢେଙ୍କାନାଳ ରାଜବଂଶ ପ୍ରତିଷ୍ଠିତ ହେଲା ପ୍ରାୟ ୧୫୩୦ ବେଳକୁ । ପ୍ରତିଷ୍ଠା କରିଥିଲେ ଏହି ବଂଶର ଆଦିପୁରୁଷ ହରି ସିଂହ ବିଦ୍ୟାଧର । ଉଚ୍ଚ କ୍ଷତ୍ରିୟ ରାଜବଂଶ ସମ୍ଭୁତ ହରି ସିଂହ ବିଦ୍ୟାଧର ଶ୍ରୀକ୍ଷେତ୍ର ପୁରୀ ଦର୍ଶନରେ ଆସିଥିବାବେଳେ ଜାଣିବାକୁ ପାଇଲେ ଯେ ଗଜପତି ମହାରାଜା ଦାକ୍ଷିଣାତ୍ୟ ଅଧିକାର କରିବା ଉଦ୍ଦେଶ୍ୟରେ ଯୁଦ୍ଧରତ ଅଛନ୍ତି । ଏହାର ସୁଯୋଗ ନେଲେ ହରି ସିଂହ ବିଦ୍ୟାଧର । ଗଜପତି ମହାରାଜା ପ୍ରତାପ ରୁଦ୍ରଦେବଙ୍କ ତରଫରୁ ନିଜ ଜୀବନକୁ ପାଣିଛଡାଇ ଦାକ୍ଷିଣାତ୍ୟର ରାଜାଙ୍କ ସହିତ ଯୁଦ୍ଧକଲେ ଏବଂ ତାଙ୍କୁ ପରାସ୍ତକରି ତାଙ୍କର ପଗଡି , କଟାରୀ ଓ ମୀନକେତନ ବିଜୟର ସ୍ମାରକୀ ହିସାବରେ ନେଇ ଆସି ଗଜପତି ମହାରାଜାଙ୍କ ନିକଟରେ ଉପଢୌକନ ହିସାବରେ ଉପସ୍ଥାପନ କଲେ । ଗଜପତି ମହାରାଜା ପ୍ରତାପରୁଦ୍ର ଦେବ ତେଜସ୍ୱୀ ହରିସିଂହଙ୍କ ବୀରତ୍ୱକୁ ସ୍ମରଣ କରି ଆମ୍ଭ ବିସ୍ମିତ ହେଲେ ଏବଂ ତାଙ୍କୁ ଯଥାଯୋଗ୍ୟ ଭାବରେ ସମ୍ମାନ ଦେବାକୁ ଏକ ସ୍ୱତନ୍ତ୍ର ଦରବାରର ଆୟୋଜନ କଲେ । ସେ ଏହି ଦରବାରରେ ହରିସିଂ ବିଦ୍ୟାଧରଙ୍କୁ ରାଜୋଚିତ ସମ୍ମାନ ଜଣାଇ ଝାଡଖଣ୍ଡ ମୂଳକର କରମୂଳ ପାଟଣା ପ୍ରଦାନ କଲେ ଏବଂ ସେଠାରେ ରାଜତ୍ୱ କରିବାକୁ ସମ୍ମତି ଦେଲେ । ଯେଉଁ ସଂକେତମାନ ସେ ଦାକ୍ଷିଣାତ୍ୟ ବିଜୟ ବେଳେ ନେଇ ଆସିଥିଲେ ଗଜପତିଙ୍କୁ ଅର୍ପଣ କରିଥିଲେ । ସେହି ପଗଡି, କଟାରୀ ଓ ମୀନକେତନକୁ ନିଜର ରାଜକୀୟ ସଂକେତ ହିସାବରେ ଗ୍ରହଣ କରିବାକୁ ଗଜପତି ମହାରାଜା ହରିସିଂ ବିଦ୍ୟାଧରଙ୍କ ରାଜ୍ୟାଭିଷେକ ବେଳେ ଅର୍ପଣ କଲେ । ଏହି କରମୂଳ ଅଧୁନା ମହିମା ଧର୍ମପୀଠ ଯୋରନ୍ଦା ନିକଟ କରମୂଳ ପଞ୍ଚାୟତ ମଧରେ ବ୍ରାହ୍ମଣୀ ନଦୀକୂଳରେ ଓ ଅଶ୍ୱଖୋଲା ପର୍ବତମାଳାର ପାଦଦେଶରେ ଅବସ୍ଥିତ । ଏବେ ମଧ ଏହାର ଅନେକ ଭଗ୍ନାବଶେଷ ରହିଛି ଏବଂ ସୁନ୍ଦର କାରୁକାର୍ଯ୍ୟ ଖଚିତ ବିରାଟ ଗଣେଶ ମୂର୍ତ୍ତି ଏବେ ମଧ ପୂଜାପାଉଛନ୍ତି ।

ସାତକୋଷ ପରିମିତ ଅଞ୍ଚଳ କରମୂଳ ପାଟଣାର ରାଜା ହରି ସିଂ ବିଦ୍ୟାଧର ନିଜକୁ ଜଣେ ପରାକ୍ରମଶାଳୀ ରାଜା ହିସାବରେ ପ୍ରତିଷ୍ଠା କରିବା ସମସ୍ତ ଉଦ୍ୟୋଗ ପର୍ବ ତାଙ୍କର ଅଭିଷେକ ପରେ ପରେ ଆରମ୍ଭ କଲେ । ରାଜକୀୟ ସଂଗଠନର ବିଭିନ୍ନ କାର୍ଯ୍ୟକ୍ରମ ନିଜ ରାଜ୍ୟରେ ଆରମ୍ଭ କଲେ । ଏହା ମଧରେ ଥିଲା ନିଜ ରାଜ୍ୟର ସୈନ୍ୟ ବାହିନୀ ଗଠନ ଓ ସେମାନଙ୍କୁ ତାଲିମ ଦେବା । ସମସ୍ତଙ୍କର ମନ ଜିଣିବାପାଇଁ ଆକର୍ଷଣୀୟ ଭାବରେ ବହୁ ପ୍ରଜାରଞ୍ଜନ କାର୍ଯ୍ୟ ମଧ ଆରମ୍ଭ କଲେ । ସରଳଭାବରେ ଓ ଉଦାର ଚିତ୍ତରେ ପ୍ରଜାମାନେ

ରାଜା ହରିସିଂ ବିଦ୍ୟାଧରଙ୍କୁ ପରିପୂର୍ଣ୍ଣ ମନରେ ଆପଣାର ରାଜା ଭାବରେ ଗ୍ରହଣ କଲେ । ତାଙ୍କ ପ୍ରତି ପ୍ରଜାମାନଙ୍କର ଭକ୍ତି, ଅନୁରକ୍ତି ଓ ସମ୍ମାନ ତଥା ବିଶ୍ୱାସ କ୍ରମଶଃ ବଢ଼ିଲା । ଏହାର ପୂର୍ଣ୍ଣ ସୁଯୋଗ ନେଲେ ରାଜା ହରିସିଂ ବିଦ୍ୟାଧର ଶାସନ ଦେଇ । ସେତେବେଳେର ସ୍ୱଳ୍ପ ସୀମା ପରିହିତ ଛୋଟ ଛୋଟ ରାଜ୍ୟ ଗୁଡ଼ିକୁ ରାଜା ହରିସିଂହ ନିଜର ଶକ୍ତି, ବୁଦ୍ଧି ଓ ଆକର୍ଷଣୀୟସୁଶାସନର କ୍ରମ ବର୍ଦ୍ଧିତ କାର୍ଯ୍ୟକ୍ରମ ଯୋଗୁଁ ଅଧିକାର କରିନେବାରେ ସମସ୍ୟା ଉପୁଜିଲା ନାହିଁ । ଏହାଦ୍ୱାରା ନିଜ ରାଜ୍ୟର ସୀମା ପରିବର୍ଦ୍ଧିତ ହେଲା ଏବଂ ସେ ନିଜକୁ ଜଣେ ପରାକ୍ରମଶାଳୀ ରାଜା ହିସାବରେ ପ୍ରତିପାଦିତ କଲେ । ଏହା ସହିତ ସୁଶାସନ ଦେଇ ଲୋକପ୍ରିୟତା ଅର୍ଜନ କଲେ । ଏହିକ୍ରମରେ ସେ ଦକ୍ଷିଣାଭିମୁଖୀ ହୋଇ ଅଧୁନା ଢ଼େଙ୍କାନାଳ ଗଡ ନିକଟ ବେଶାଳିଆ ଗଡ ଭଂଜ ବଂଶୀୟ ରାଜାଙ୍କୁ ପରାସ୍ତ କଲେ ଏବଂ ଢ଼େଙ୍କାନାଳ ଅଧିକାର କରିବା ପରେ ଏହି ସ୍ଥାନର ମହତ୍ତ୍ୱ ଉପଲବ୍ଧି କରି ପ୍ରତ୍ୟେକ ଦିଗରୁ ଏହି ସ୍ଥାନ ସମ୍ପୂର୍ଣ୍ଣ ନିରାପଦ ହେବ ବୋଲି ବିଶ୍ୱାସ ହେବାରୁ ପାଣି ଓହଳା ପାହାଡର ପାଦଦେଶରେ ଗଡ ସ୍ଥାପନ କଲେ । ଅବଶ୍ୟ ବେଶାଳିଆ ଭଂଜ ବଂଶ ରାଜା ଯୁଦ୍ଧରେ ପରାସ୍ତ ହୋଇ ମୃତ୍ୟୁବରଣ କଲାବେଳେ, ''ଢ଼େଙ୍କାଶବରର'' ଅଭିଶାପ କଥା ପ୍ରକାଶ କରିଥିଲେ । ଢ଼େଙ୍କାଶବର ସହିତ ମାତ୍ର କେତୋଟି ନାଳୀର କ୍ଷୁଦ୍ର ରାଜ୍ୟକୁ ଢ଼େଙ୍କାନାଳ ନାମରେ ନାମିତ କରିବାକୁ ଭଂଜ ରାଜାଙ୍କୁ ଢ଼େଙ୍କାଶବରର ରାଜା ଅନୁରୋଧ କରିଛନ୍ତି ବୋଲି କହିବାରୁ ତାହା ରାଜା ହରିସିଂ ବିଦ୍ୟାଧର ଗ୍ରହଣ କରି ନେଇଥିଲେ । ଢ଼େଙ୍କାଶବରର ମୁଣ୍ଡନାମରେ ନାମିତ ଏବେ ମଧ୍ୟ ଏକ ପଥର ଖଣ୍ଡକୁ ଶବର ରୀତିରେ ବର୍ଷର ଏକ ନିର୍ଦ୍ଦିଷ୍ଟ ଦିନରେ ସାଧାରଣ ଭାବରେ ପୂଜାକରାଯାଏ ।

୧୫୩୦ ରୁ ରାଜା ହରିସିଂ ବିଦ୍ୟାଧର ନିଜ ରାଜ୍ୟର ସୀମା ପରିବର୍ଦ୍ଧିତ କରିବା ଉଦ୍ଦେଶ୍ୟରେ ବିଭିନ୍ନ ଛୋଟ ଛୋଟ ରାଜ୍ୟର ରାଜାମାନଙ୍କ ସହିତ ଯୁଦ୍ଧରେ ବ୍ୟାପୃତ ରହିଥିଲେ । ବିଭିନ୍ନ ରାଜ୍ୟ ଜୟ ପରେ ନିଜ ରାଜ୍ୟର ଶାସନ କାର୍ଯ୍ୟରେ ନିୟୋଜିତ ରହିଲେ । ତେଣୁ ୧୫୯୪ ପର୍ଯ୍ୟନ୍ତ ଶ୍ରୀକ୍ଷେତ୍ର ପୁରୀ ଦର୍ଶନରେ ଯିବାକୁ ସମୟ ପାଇନଥିଲେ । ଗଜପତି ମହାରାଜାଙ୍କ ସହିତ ସାକ୍ଷାତ କରବାକୁ ମଧ୍ୟ ସମୟ ପାଇନଥିଲେ । ଏତେ ବର୍ଷ ଅତିବାହିତ ହୋଇ ଯାଇଥିଲେ ମଧ୍ୟ ଗଜପତି ମହାରାଜାଙ୍କ ପ୍ରତି ଆନୁଗତ୍ୟ ବା ଅନୁରାଗ ତାଙ୍କର ଊଣା ହୋଇନଥିଲା । ପ୍ରଭୁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପ୍ରତି ତାଙ୍କର ଭକ୍ତିଭାବ ଅଧିକରୁ ଅଧିକ ବଳବତ୍ତର ହୋଇଥିଲା । ତେଣୁ ୧୫୯୪ ମସିହାରେ ରାଜା ହରି ସିଂ ବିଦ୍ୟାଧର ପୁରୀ ଦର୍ଶନ କରିବାକୁ ଗଲେ । ଢ଼େଙ୍କାନାଳର ଏହି ରାଜାଙ୍କୁ ଯଥୋଚିତ ସମ୍ମାନର ସହିତ

ଜଗନ୍ନାଥ ଦର୍ଶନ ନିମନ୍ତେ ସ୍ୱତନ୍ତ୍ର ବିଧି ବିଧାନର ବ୍ୟବସ୍ଥା କରିଥିଲେ ଗଜପତି ମହାରାଜା । ସେହି ସମୟଠାରୁ ଆଜିପର୍ଯ୍ୟନ୍ତ ପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କରିବାର ସୁବିଧା ସୁଯୋଗ ଢେଙ୍କାନାଳ ରାଜପରିବାର ପାଇବାର ସୁଯୋଗ ପାଇ ଆସୁଛନ୍ତି ।

ରାଜା ହରି ସିଂ ବିଦ୍ୟାଧର ଢେଙ୍କାନାଳଠାରେ ନିଜ ଗଡ ବା ନଅର ନିର୍ମାଣ କରିଥିଲେ । ବଳରାମ ଦେଉଳ ନିର୍ମାଣ ହେଉଛି ତାଙ୍କର କୀର୍ତ୍ତି । କପିଳାସ ଚନ୍ଦ୍ରଶେଖରଙ୍କ ପୀଠସ୍ଥଳୀକୁ ଏକ ସର୍ବଶ୍ରେଷ୍ଠ ତୀର୍ଥସ୍ଥାନ ଭାବରେ ଗଢିବାପାଇଁ ଉଦ୍ୟମ କରିଥିଲେ । ପୁରୀ ଶ୍ରୀକ୍ଷେତ୍ରରୁ କୁଳଗୁରୁ ଓ କୁଳପୁରୋହିତ ପ୍ରମୁଖଙ୍କୁ ଆଣି ଏଠାରେ ଭୂମି ଆଦି ସମ୍ପତ୍ତି ଦାନ କରି ଅଧିଷ୍ଠିତ କରାଇଥିଲେ । ରାଜା ହରି ସିଂ ବିଦ୍ୟାଧର ଯେପରି ପ୍ରଜାମାନଙ୍କର ମନଜିଣିପାରୁଥିଲେ ସେହିପରି ଧର୍ମବନ୍ତ, ଜ୍ଞାନବନ୍ତ ଓ ଦୟାବନ୍ତ ରାଜା ହିସାବରେ ପ୍ରତିଷ୍ଠା ଅର୍ଜ୍ଜନ କରିଥିଲେ । ତାଙ୍କର ତଥାକଥିତ ଢେଙ୍କାନାଳ ରାଜ୍ୟ ସେତେବେଳେ ଐଶ୍ୱର୍ଯ୍ୟପୂର୍ଣ୍ଣ ଥିଲା । ସମସ୍ତେ ନିର୍ଭୟରେ ଓ ସୁଖ ଶାନ୍ତିରେ ବାସକରୁଥିଲେ ।

ଏହାପରେ ତାଙ୍କ ପୁତ୍ର ଲୋକନାଥ ରାୟ ସିଂହ ଭ୍ରମରବର ରାୟ ୧୫୯୪ ରୁ ୧୬୧୫ ପର୍ଯ୍ୟନ୍ତ ଢେଙ୍କାନାଳ ସିଂହାସନ ଆରୋହଣ କରି ରାଜ୍ୟ ଶାସନ କରିଥିଲେ । ପୂର୍ବ ସମ୍ପର୍କ ତଥା ଏହାଙ୍କ ଅମଳର ସମ୍ପର୍କ ଅତ୍ୟନ୍ତ ପରମ ଶ୍ରଦ୍ଧାସ୍ପଦ ଥିବାରୁ ଗଜପତି ମହାରାଜା ଏହାଙ୍କୁ ରାୟ ସିଂହ ଭ୍ରମରବର ରାୟ ଉପାଧି ପ୍ରଦାନ କରିଥିଲେ । ରାଜା ଲୋକନାଥ ରାୟ ସିଂ ଭ୍ରମରବର ରାୟ ଗାଦିସୀନ ହେବାପରେ ନିଜ ରାଜ୍ୟର ସୀମା ପରିବର୍ତ୍ତନ କରିବା ଉଦ୍ଦେଶ୍ୟରେ କଳକଳା, ଡାଳିଯୋଡା, ଦର୍ପଣୀ, ମଧୁପୁର ପ୍ରମୁଖ ରାଜ୍ୟର ରାଜାମାନଙ୍କୁ ଯୁଦ୍ଧରେ ପରାସ୍ତ କରି ଅନେକ ଅଂଚଳ ନିଜରାଜ୍ୟ ଢେଙ୍କାନାଳ ସହିତ ଅନ୍ତର୍ଭୁକ୍ତ କରିଥିଲେ । ବ୍ରାହ୍ମଣୀ ଓ ରାମିଆଳ ନଦୀର ମଧ୍ୟବର୍ତ୍ତୀ ଅଂଚଳକୁ ଢେଙ୍କାନାଳ ରାଜ୍ୟରେ ମିଶାଇଥିଲେ ସେହିପରି ଯୁଦ୍ଧ କରିବାପରେ । ରାଜା ଲୋକନାଥ ଯେପରି ପରାକ୍ରମୀ ଥିଲେ ସେହିପରି ଅତ୍ୟନ୍ତ ଲୋକପ୍ରିୟ ମଧ୍ୟ ଥିଲେ । ତାଙ୍କ ଶାସନ କାଳରେ ସମସ୍ତ ପ୍ରଜା ସାଧାରଣ ସୁଖ ଶାନ୍ତିରେ ବାସ କରୁଥିଲେ ।

ଏହି ରାଜା ମଧ୍ୟ ଗଜପତି ମହାରାଜାଙ୍କଠାରୁ ତାଙ୍କର ପୁରୀ ଦର୍ଶନ ବେଳେ ସ୍ୱତନ୍ତ୍ର ସମ୍ମାନ ପ୍ରାପ୍ତ ହୋଇଥିଲେ । ସେ କେଉଁ ପର୍ଯ୍ୟନ୍ତ ପାଲିଙ୍କିରେ ଯିବେ, ମଶାଲ କିପରି ଯିବ, ଚାମର ସେବା କରିବା ଆଦି ବିଭିନ୍ନ ବିଧି ବ୍ୟବସ୍ଥା ସ୍ୱତନ୍ତ୍ର ଭାବରେ ତାଙ୍କ ପାଇଁ କରାଯାଇଥିଲା । ଏପରି ମାନ୍ୟତା ଖୁବ୍ କମ୍ ବ୍ୟକ୍ତି ପାଉଥିଲେ । ଏହାଦ୍ୱାରା ଢେଙ୍କାନାଳ ରାଜବଂଶର ଭକ୍ତିଭାବ ଓ ରାଜକୀୟ ଶ୍ରେଷ୍ଠତା ପ୍ରତିପାଦିତ ହୋଇଥିଲା ।

ଏହାଙ୍କପରେ ତାଙ୍କ ପୁତ୍ର ରାଜା ବଳଭଦ୍ର ରାୟସିଂହ ଭ୍ରମରବର ୧୬୧୫ରୁ ୧୬୪୧ ପର୍ଯ୍ୟନ୍ତ ଏବଂ ଏହାଙ୍କ ପୁତ୍ର ନୀଳାମ୍ବର ରାୟସିଂହ ଭ୍ରମରବର ୧୬୪୧ରୁ ୧୬୮୦ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ । ଏହାଙ୍କ ଅମଳରେ ପରଜଙ୍ଗ ଓ ବଣିଆପଡା ଅଂଚଳ ଅଧିକୃତ ହୋଇ ଢେଙ୍କାନାଳ ସହିତ ଅନ୍ତର୍ଭୁକ୍ତ ହୋଇଥିଲା । ଏମାନଙ୍କ ଅମଳରେ କୃଷି କାର୍ଯ୍ୟରେ ଉନ୍ନତି ଘଟିଥିଲା ଏବଂ ଏଥିଯୋଗୁଁ ପ୍ରଜାମାନେ ସୁଖ ଶାନ୍ତିରେ ବାସକରୁଥିଲେ ।

୧୬୮୦ରୁ ୧୭୦୮ ପର୍ଯ୍ୟନ୍ତ ନୃସିଂହ ଭ୍ରମରବର ଢେଙ୍କାନାଳ ରାଜଗାଦି ଆରୋହଣ କରି ଶାସନ କରିଥିଲେ । ଏହି ରାଜା ମଧ ନିଜ ରାଜ୍ୟର ସୀମା ବିସ୍ତାର କରିଥିଲେ । ଅଧୁନା କାମାକ୍ଷାନଗର ସବ୍‌ଡିଭିଜନର ଗଡ ନୃସିଂହ ପ୍ରସାଦ, ଗଡ଼ଗଁପୁର, ଢେନାଦେଶ ଓ ମଧୁପୁର ଅଞ୍ଚଳର କେତେକ ଅଂଚଳ ସେ ଯୁଦ୍ଧରେ ଜୟଲାଭକରି ଢେଙ୍କାନାଳ ସହିତ ଅନ୍ତର୍ଭୁକ୍ତ କରିଥିଲେ । ବଳରାମ ମନ୍ଦିର ରାଜା ହରି ସିଂ ବିଦ୍ୟାଧର ନିର୍ମାଣ କରିଥିଲେ ହେଁ ଏହାର ବହୁ ଅସଂପୂର୍ଣ୍ଣ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରିଥିଲେ ରାଜା ନୃସିଂହ ଭ୍ରମରବର । ଯାଉଁଳୀ ପୋଖରୀ ତାଙ୍କର କୀର୍ତ୍ତି ଗୁଡ଼ିକ ମଧରୁ ଅନ୍ୟତମ । ଅନ୍ନକୋଟିଶ୍ୱର ମହାଦେବ ମନ୍ଦିର ନିର୍ମାଣ ଜଗନ୍ନାଥ ମହାପ୍ରଭୁଙ୍କ ପାଇଁ ଯମୁନାକୋଟ ଗ୍ରାମରେ ଜମି ବ୍ୟବସ୍ଥା, ଖୋକ୍‌ସା, ବାଲିବୋ, ଯକିଆ, ରିଆ, ମଠତେନ୍ତୁଳିଆ, ଜିରିଡାମାଳି ଓ ଖୁଣ୍ଟ ଝରିଠାରେ ଜମିଜମା ଖଞ୍ଜି ମଠ ସ୍ଥାପନ ହେଉଛି ତାଙ୍କର ଅମର କୀର୍ତ୍ତି । ଏହାଙ୍କ ରାଜତ୍ୱ କାଳରେ ବହୁ ପଣ୍ଡିତ, ମହାଜ୍ଞାନୀ, ସାଧୁସନ୍ଥ ତଥା ପରମଶକ୍ତି ବିଶିଷ୍ଟ ବୈଷ୍ଣବଗୁରୁ ପ୍ରମୁଖ ରାଜ ଦରବାରରେ ଉପସ୍ଥିତ ରହି ବରାବର ଧର୍ମ ଓ ଜ୍ଞାନ ଚର୍ଚ୍ଚାକରୁଥିଲେ । ଏହାଙ୍କ ସୁଶାସନରେ ପ୍ରଜା ସାଧାରଣ ଯେପରି ସୁଖଶାନ୍ତିରେ ଥିଲେ ସେହିପରି ଦିଅଁ ଦେବତାମାନଙ୍କର ଯଥାବିଧି ପୂଜା ଅର୍ଚ୍ଚନା ଦ୍ୱାରା ନିତ୍ୟ ପୂଜା ଆଦି ପବିତ୍ରତାର ସହିତ କରାଯାଉଥିଲା ।

ରାଜା ନୃସିଂହ ଭ୍ରମରବରଙ୍କ ପରେ ତାଙ୍କ ପୁତ୍ର କୁଞ୍ଜ ବିହାରୀ ରାଜତ୍ୱ କଲେ ୧୭୦୮ ରୁ ୧୭୨୮ ପର୍ଯ୍ୟନ୍ତ । ରାଜା କୁଞ୍ଜ ବିହାରୀ ଅତ୍ୟନ୍ତ ଧର୍ମପରାୟଣ ଥିଲେ । ଅନେକ ସମୟରେ ଜ୍ଞାନବନ୍ତ ସାଧୁ, ସନ୍ଥ , ବୈଷ୍ଣବମାନଙ୍କୁ ଡକାଇ ଆଧ୍ୟାତ୍ମିକ ଆଲୋଚନାମାନ କରୁଥିଲେ । କୃଷ୍ଣ ଭକ୍ତିରେ ସେ ଅନୁପ୍ରାଣିତ ହୋଇ ରାଧାକୃଷ୍ଣ ଆଧାରିତ ପ୍ରେମରସ ସମ୍ପର୍କରେ ପ୍ରେମଶୀଳ ନାମକ ଏକ ପୁସ୍ତକ ରଚନା କରିଥିଲେ । ସେ ଅନୁଗୁଳ ରାଜାଙ୍କ ସହିତ ଯୁଦ୍ଧକରି ଅନୁଗୁଳର କେତେକ ଅଂଚଳ ନିଜ ରାଜ୍ୟ ଢେଙ୍କାନାଳ ସହିତ ଯୋଗ କରିଥିଲେ । ''ମା' ରାମଚଣ୍ଡି'' ଠାକୁରାଣୀଙ୍କ ଧଣ୍ଡାମାଳ ଓ ଖଡ୍‌ଗ ଧାରଣ କରି ସେ ଏହି ଯୁଦ୍ଧରେ ଜୟଲାଭ କରିଥିବାରୁ ଖଡ୍‌ଗ ପ୍ରସାଦ ଗ୍ରାମ ସ୍ଥାପନ କରିଥିଲେ । ''ମା' ରାମଚଣ୍ଡି''ଙ୍କ ଉପରେ ମଧ

ତାଙ୍କର ଗଭୀର ବିଶ୍ୱାସ ଥିଲା । ମନ୍ଦିର, ମଠଗୁଡିକର ସୁପରିଚାଳନା ଓ ଠାକୁର ପୂଜନରେ ତାଙ୍କର ଅତ୍ୟନ୍ତ ଆଗ୍ରହ ରହିଥିଲା । ରାଜା ହିସାବରେ ସେ ସୁଶାସନ ଦେଇ ନିଜରାଜ୍ୟର ପ୍ରଜାମାନଙ୍କୁ ସୁଖଶାନ୍ତିରେ ରଖିଥିଲେ ।

୧୭୨୮ରୁ ୧୭୪୧ ପର୍ଯ୍ୟନ୍ତ ଢ଼େଙ୍କାନାଳ ରାଜସିଂହାସନ ଆରୋହଣ କରିଥିଲେ କୁଞ୍ଜ ବିହାରୀଙ୍କ ପୁତ୍ର ବ୍ରଜବିହାରୀ ରାୟ ସିଂହ ଭ୍ରମରବର । ବ୍ରଜ ବିହାରୀଙ୍କ ମଝିଆଁ ଭାଇ ବେଣୁଧର ହରିଚନ୍ଦନ ସିଂହ ରାଜ ପରିବାରର ସୁଖ ସୌଖୀନ୍‌କୁ ତ୍ୟାଗ କରି ସନ୍ୟାସୀ ହୋଇଯାଇଥିଲେ । ସନ୍ୟାସ ବ୍ରତ ଆଚରଣ କଲେ ହିନ୍ଦୁଧର୍ମ ଅନୁସାରେ ପାରିବାରିକ ଧର୍ମ ଉଜ୍ଜ୍ୱଳ ହୁଏ ବୋଲି କଥିତ ଅଛି । ରାଜ ପରିବାରର ପ୍ରାଚୁର୍ଯ୍ୟ ତଥା ସୁଖ ସମ୍ଭୋଗ ପ୍ରତି ବିତସ୍ପୃହ ହୋଇ କୁଳ ଉଦ୍ଧାର ନିମନ୍ତେ ରାଜପୁତ୍ର ବେଣୁଧର ସନ୍ୟାସୀଜୀବନ ଯାପନରେ ପରିବାରର ମହତ୍ତ୍ୱ ପ୍ରତିପାଦନ କରିଥିଲେ । ରାଜା କୁଂଜ ବିହାରୀଙ୍କ ରାଜତ୍ୱକାଳରେ ମୋଗଲ, ପଠାଣ ଓ ବର୍ଗୀ ମରହଟ୍ଟାମାନେ ରାଜ୍ୟ ଭିତରକୁ ପଶିଆସି ଧନରତ୍ନ ଲୁଣ୍ଠନ କରିବାପାଇଁ ଅତି ନୃଶଂସ ଭାବରେ ଅତ୍ୟାଚାର କରୁଥିଲେ । ରାଜା ବ୍ରଜ ବିହାରୀ ପ୍ରଜାମାନଙ୍କୁ ଏହି ଅତ୍ୟାଚାରରୁ ରକ୍ଷା କରିବା ପାଇଁ ନିଜର ସୈନ୍ୟ ସାମନ୍ତଙ୍କ ସହ ସର୍ବଦା ସଜାଗ ରହୁଥିଲେ ଏବଂ ପ୍ରତ୍ୟେକ ସମୟରେ ସେମାନଙ୍କୁ ପ୍ରତିହତ କରୁଥିଲେ । ଏହାଙ୍କ ସମୟରେ ଅନୁଗୁଳ ରାଜା ଢ଼େଙ୍କାନାଳ ଅନୁଗୁଳ ସୀମାନ୍ତ ଅଂଚଳରେ ଯୁଦ୍ଧକରି କେତେକ ଅଞ୍ଚଳ ଦଖଲ କରିନେବାରୁ ରାଜା ବ୍ରଜବିହାରୀ ବୀରତ୍ୱର ସହ ପୁନର୍ବାର ଯୁଦ୍ଧକରି ଢ଼େଙ୍କାନାଳ ଅଂଚଳ ଫେରାଇ ଆଣିଥିଲେ । ଏତିକିରେ ସନ୍ତୁଷ୍ଟ ନ ରହି ସେ ବୁଢା ପଙ୍କ ପର୍ଯ୍ୟନ୍ତ ନିଜ ରାଜ୍ୟରେ ପରିସର ବର୍ଦ୍ଧିତ କରି ଢ଼େଙ୍କାନାଳ ରାଜବଂଶର ପୂର୍ବ ଗାରିମାକୁ ବଜାୟ ରଖିଥିଲେ । ତିଗିରିଆ ରାଜାଙ୍କୁ ଯୁଦ୍ଧରେ ପରାସ୍ତକରି କିଛି ଅଂଚଳ ନିଜ ରାଜ୍ୟ ଢ଼େଙ୍କାନାଳ ସହିତ ଅନ୍ତର୍ଭୁକ୍ତ କରିଥିଲେ । ରାଜା ବ୍ରଜବିହାରୀ କୃଷ୍ଣଭକ୍ତ ଥିଲେ ଏବଂ ସେ ମଧ୍ୟ ଭକ୍ତି ରସାତ୍ମକ ପଦ୍ୟରଚନା କରୁଥିଲେ । ତାଙ୍କର ଶାସନକାଳରେ ଶୃଙ୍ଖଳିତ ଭାବରେ ଶାନ୍ତିରେ ଜୀବନ କାଟିଥିଲେ ମଧ୍ୟ ଦସ୍ୟୁ ଭାବାପନ୍ନ ମୋଗଲ, ପଠାଣ ଓ ବର୍ଗୀ ମରହଟ୍ଟାମାନଙ୍କ ଅତର୍କିତ ଆକ୍ରମଣ ଅନେକ ସମୟରେ ଅଶାନ୍ତିସୃଷ୍ଟି କରିଥିଲା ।

ରାଜା ବ୍ରଜବିହାରୀଙ୍କ ପରେ ତାଙ୍କ ପୁତ୍ର ଦାମୋଦର ରାୟସିଂହ ଭ୍ରମରବର ମାତ୍ର ୧୭୪୧ ରୁ ୧୭୪୩ ପର୍ଯ୍ୟନ୍ତ ଗାଦିସୀନ ହୋଇ ରାଜତ୍ୱ କରିଥିଲେ । ଢ଼େଙ୍କାନାଳ ପୂର୍ବ ସୀମା କଳକଳା ରାଜ୍ୟ ସହିତ ସଂଘର୍ଷ ଉପୁଜିବାରୁ ରାଜା ଦାମୋଦର କଳକଳା ରାଜାଙ୍କୁ ଯୁଦ୍ଧରେ ପରାସ୍ତ କଲେ । ଏଥିରେ କଳକଳା ରାଜା ଅପମାନିତ ବୋଧ କରିବାରୁ ଢ଼େଙ୍କାନାଳ

ରାଜା ଦାମୋଦର ସହିତ ପୁର୍ନବାର ଯୁଦ୍ଧ କରିବାପାଇଁ ତାଙ୍କର ପର୍ଯ୍ୟାପ୍ତ ଶକ୍ତି ନଥିବାରୁ ସେ ଲୁଣ୍ଠନକାରୀ ନୃଶଂସ ବର୍ଗୀ ଶକ୍ତିର ସାହାଯ୍ୟ ଓ ଆଶ୍ରୟ ଲୋଡିଲେ । ପାହାଡ ପର୍ବତ ଓ ନିଘଞ୍ଚ ଅରଣ୍ୟାନୀ ଘେରା ଢ଼େଙ୍କାନାଳ ରାଜ୍ୟ ଭିତରକୁ ପ୍ରବେଶ କରିବା ଯେକୌଣସି ଶକ୍ତି ପକ୍ଷରେ ସେତେବେଳେ ସହଜ ନଥିଲା । ଏହା ବ୍ୟତୀତ ଢ଼େଙ୍କାନାଳର ସୁଶାସନ, ବିପୁଳ ସେନାବାହିନୀର ଅଦମ୍ୟ ଶକ୍ତି ଏବଂ ସର୍ବୋପରି ଦେବାଶୀର୍ବାଦ ଢ଼େଙ୍କାନାଳ ରାଜ୍ୟର ସୁରକ୍ଷାରେ କୌଣସି ବ୍ୟତିକ୍ରମ ଘଟିନେଥିଲା । ସମଗ୍ର ଦେଶରେ ଯେତେବେଳେ ମୋଗଲ, ପଠାଣ, ବର୍ଗୀ ଓ ମରହଟ୍ଟା ମାନଙ୍କ ପ୍ରତି ବିଦ୍ୱେଷ ସୃଷ୍ଟି ହେଉଥିଲା, ଘୃଣାଭାବ ଜାତ ହେଉଥିଲା ଏବଂ ସେମାନଙ୍କର ନାରକୀୟ ଓ ଘୃଣ୍ୟ ଅତ୍ୟାଚାରରେ ଯେତେବେଳେ ସମସ୍ତେ ଆତଙ୍କିତ ହେଉଥିଲେ ସେତେବେଳେ ଅନ୍ୟାୟ, ଅତ୍ୟାଚାର , ପ୍ରତାରଣା ଓ ଲୁଣ୍ଠନ ଦ୍ୱାରା ପ୍ରତିହୀନ ଆଚରଣ କରୁଥିବା ବର୍ଗୀ ମରହଟ୍ଟାମାନଙ୍କୁ ନିମନ୍ତ୍ରଣ କରି ଆଣିବା ଓ ସେମାନଙ୍କଠାରୁ ସାହାଯ୍ୟ ଭିକ୍ଷା କରିବା କଳକଳା ରାଜାଙ୍କ ପକ୍ଷରେ କେବଳ ଅଶୋଭନୀୟ ନଥିଲା ଥିଲା ହୀନମନ୍ୟତା ଓ ଦୁର୍ବଳ ଚିନ୍ତାଧାରା । ଏହି ସମୟଠାରୁ ଢ଼େଙ୍କାନାଳ ରାଜ୍ୟରେ ବର୍ଗୀ ଉତ୍‌ପାତ ଆରମ୍ଭ ହେଲା ।

ଅପୁତ୍ରିକ ଥିବାରୁ ରାଜା ଦାମୋଦରଙ୍କ ପରେ ଜଗନ୍ନାଥ ଭ୍ରମରବର ରାଜାହେଲେ । ଜଗନ୍ନାଥ ଭ୍ରମରବର, ରାଜା ଦାମୋଦରଙ୍କ କକା ବେଣୁଧରଙ୍କ ପୁତ୍ରଥିଲେ । ରାଜା ଜଗନ୍ନାଥ ଅଳ୍ପ ବୟସରୁ ରାଜଗାଦିରେ ବସିଲେ । ରାଜା ଜଗନ୍ନାଥ ଭ୍ରମରବର ୧୭୪୩ରୁ ୧୭୪୪ ମାତ୍ର ବର୍ଷଟିଏ ଶାସନ କରିଥିଲେ । ରାଜା ଜଗନ୍ନାଥଙ୍କ ଦୁଇପୁତ୍ର ମଧ୍ୟରୁ ବଡ ପୁତ୍ରଥିଲେ ଶାରୀରିକ ଅକ୍ଷମ ଓ ଦୁର୍ବଳ ଏବଂ ସାନପୁତ୍ର ଥିଲେ ନାଁ ବାଳକ । ଏହି ସମୟ ବେଳକୁ ବର୍ଗୀ ମରହଟ୍ଟାମାନେ ଦେଶର ବିଭିନ୍ନ ଅଂଚଳରୁ ନାନାପ୍ରକାର ଅତ୍ୟାଚାର କରି ବହୁ ଅନ୍ୟାୟ କର ଆଦାୟ କରୁଥିଲେ । ଅତି ନିର୍ମମ ଭାବରେ ଲୁଟ୍ ପାଟ୍ କରୁଥିଲେ , ଘରଦ୍ୱାର ପୋଡି ଦେଉଥିଲେ । ଢ଼େଙ୍କାନାଳ ରାଜ୍ୟରୁ କର ଆଦାୟ କରିବାପାଇଁ ପ୍ରାୟତଃ ସେମାନଙ୍କର ଜୁଲମ ବଢିଚାଲୁଥିଲା । ତେଣୁ ସର୍ବବାଦୀ ସମ୍ମତ ଭାବରେ ରାଜ୍ୟରେ ସୁଶାସନ ଦେଇ ବିଭିନ୍ନ ପ୍ରକାର ବିଶୃଙ୍ଖଳ ତଥା ବାହ୍ୟ ଆକ୍ରମଣ ଓ ଗଣ୍ଡଗୋଳକୁ ବ୍ୟାହତ କରିବାପାଇଁ ରାଜା ବ୍ରଜବିହାରୀଙ୍କ ୩ୟ ଭ୍ରାତା ଘନଶ୍ୟାମଙ୍କ ପୁତ୍ର ତ୍ରିଲୋଚନଙ୍କୁ ଗାଦିସୀନ କରାଗଲା । ୧୭୪୫/୪୬ ମସିହାରେ । ୧୭୮୫ ପର୍ଯ୍ୟନ୍ତ ଗର୍ବ ଓ ଗୌରବପୂର୍ଣ୍ଣ ଅଧ୍ୟାୟ ସୃଷ୍ଟି କରି ରାଜତ୍ୱ କରିଯାଇଛନ୍ତି ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁର । ଏହା ଚିରଦିନ ପାଇଁ ଢେଙ୍କାନାଳ ଇତିହାସରେ ଅମଳିନ ରହିବ । ତାଙ୍କ ଦୀର୍ଘ ରାଜତ୍ୱ କାଳରେ ନ୍ୟାୟ,

ସତ୍ୟ, କର୍ମ, ଧର୍ମ, ତଥା ବିରତ୍ୱର କାହାଣୀ ଏପରି ଲିପିବଦ୍ଧ ହୋଇଛି ଯାହାର କେବେହେଲେ ବିସ୍ମୃତି ଘଟିନାହିଁ କି ଘଟିବ ନାହିଁ । ରାଜା ତ୍ରିଲୋଚନ ନିଜେ ଥିଲେ ଜଣେ ସାହସିକ ଯୋଦ୍ଧା । କୌଶଳପୂର୍ଣ୍ଣ ଥିଲା ତାଙ୍କର ଯୁଦ୍ଧ ସାଜସଜ୍ଜା ଏବଂ ଯୁଦ୍ଧ କ୍ଷେତ୍ରରେ ସେ ଧୀର ସ୍ଥିର ଚିତ୍ତରେ ବୁଦ୍ଧିମତ୍ତାର ପରିଚୟ ଦେଇ ସବୁବେଳେ ବିଜୟଲାଭ କରୁଥିଲେ । ତାଙ୍କର ବିରାଟ ସୈନବହିନୀରେ ଥିଲେ ବହୁ ଶିକ୍ଷିତ ତାଲିମ ପ୍ରାପ୍ତ, ରଣଜୟୀ, ଗଜାରୋହୀ, ଅଶ୍ୱାରୋହୀ ତେଲେଙ୍ଗା ଓ ନାଗାସୈନ୍ୟ । ଏମାନଙ୍କ ବ୍ୟତୀତ ରଣକୌଶଳୀ ପାଇକ ଓ ଖଣ୍ଡାୟତ । ଯୋଦ୍ଧାବାହିନୀ ପାରମ୍ପରିକ ଭାବରେ ଦେଶର ନିରାପତ୍ତା ରକ୍ଷାପାଇଁ ପ୍ରତ୍ୟେକ ସ୍ଥାନରେ ଏବଂ ସବୁ ମୁହୂର୍ତ୍ତରେ ସଜାଗ ହୋଇ ରହୁଥିଲେ । ଏହାଥିଲା ସେମାନଙ୍କର ବୃତ୍ତି ଏବଂ ଏହା ସହିତ ସେମାନେ ନିଜର କୃଷି କାର୍ଯ୍ୟକରୁଥିଲେ । ସାମାନ୍ୟ ଡାକରାପାଇଲେ କିମ୍ବା ନିଜେ ଏହାର ଆବଶ୍ୟକତା ଉପଲବ୍ଧିକଲେ ନିଜର ଦଳପତି, ଦଳ ବେହେରା ପ୍ରମୁଖଙ୍କ ନେତୃତ୍ୱରେ ଅମାପ ଶକ୍ତି ଦେଇ ଶତୃଦମନ କାର୍ଯ୍ୟ କରୁଥିଲେ । ଯୋଦ୍ଧା, ଖଣ୍ଡାୟତମାନେ ଆଜି ସେମାନଙ୍କର କୁଳ ପରମ୍ପରା ଅନେକାଂଶରେ ଅକ୍ଷୁର୍ଣ୍ଣ ରଖିଥିଲେ ହେଁ ସମୟ, ପରିସ୍ଥିତି ଅବସ୍ଥା ଓ କାଳର ସଂଘାତ ଯୋଗୁଁ ଏବଂ ଉଚ୍ଚ ଗୋଷ୍ଠୀର ସ୍ୱାର୍ଥ ସାଧନ ପାଇଁ ସେମାନେ ଆଜି ଜୀବନ ଥାଇ ବି ନିର୍ଜୀବ । ବହୁ ଦଳ ଉପଦଳରେ ବିଭକ୍ତ ହୋଇ ସେମାନେ ଆଜି ସଂଘବଦ୍ଧ ଶକ୍ତିର ଉପାଦେୟତା ବା ଆବଶ୍ୟକତା ଭୁଲି ଯାଇଛନ୍ତି । ଏକ ବିରାଟ ଶକ୍ତିର ରଣ କୁଶଳୀ ଖଣ୍ଡାୟତ ଜାତି ନିଜର ଜାତୀୟ ମୌଳିକତା ହରାଇ ସଂକୀର୍ଣ୍ଣ ପରିସର ମଧ୍ୟରେ ଅଶିକ୍ଷା ଓ କୁସଂସ୍କାର ଭିତରେ ଜୀବନ ସଂଗ୍ରାମରେ ଭାରାକ୍ରାନ୍ତ ହୋଇ ଛିନ୍ନ ଛତ୍ର ହୋଇପଡିଛନ୍ତି ।

ରାଜା ତ୍ରିଲୋଚନ ପର୍ଯ୍ୟାୟ କ୍ରମରେ ତଥାକଥିତ ଆଠଗଡ, ତିଗିରିଆ, ହିନ୍ଦୋଳ, ପାଲଲହଡା ଓ କେଉଁଝର ରାଜ୍ୟର କେତେକ ଅଂଶର ରାଜାମାନଙ୍କ ସହିତ ଯୁଦ୍ଧକରି ଢ଼େଙ୍କାନାଳର ସୀମା ପରିବର୍ଦ୍ଧିତ କରିଥିଲେ । ଫଳରେ ଏହି ପରାଜିତ ରାଜ୍ୟର ରାଜାମାନେ ପ୍ରତିଶୋଧ ନେବାପାଇଁ ମରହଟ୍ଟା ଶାସନ କର୍ତ୍ତୃପକ୍ଷଙ୍କ ସାହାଯ୍ୟ ଭିକ୍ଷାକରିଥିଲେ । ଏହା ପୂର୍ବରୁ ରାଜା ଜଗନ୍ନାଥ ଭ୍ରମରବରଙ୍କ ସମୟରେ ବର୍ଗୀ ଅତ୍ୟାଚାର ଓ ଲୁଣ୍ଠନ ଉଦ୍ୟମ ହୋଇଥିଲା । ଢ଼େଙ୍କାନାଳକୁ ସମ୍ପୂର୍ଣ୍ଣଭାବରେ କରଗତ କରିବାକୁ ବର୍ଗୀ ମରହଟ୍ଟାମାନେ ବିଶେଷ ସୁଯୋଗ ନେବା ଉଦ୍ଦେଶ୍ୟରେ ଉଦ୍ୟମ ଆରମ୍ଭ କଲେ । କିନ୍ତୁ ରାଜା ତ୍ରିଲୋଚନ ଦୃଢ ହସ୍ତରେ ବର୍ଗୀମାନଙ୍କର ଏହି ଅତ୍ୟାଚାର ଓ ଲୁଣ୍ଠନକୁ ପ୍ରତିରୋଧ କରି ନିଜ ଶକ୍ତିର ପରିଚୟ ଦେଲେ । ସେମାନଙ୍କର ଅତ୍ୟାଚାର ଏହାଦ୍ୱାରା ବନ୍ଦହେଲା । ରାଜା ତ୍ରିଲୋଚନ କିନ୍ତୁ ନିଜର ବିଚାର ବଳରେ ଅକାରଣ ଓ ଅନ୍ୟାୟ ଭାବରେ ମରହଟ୍ଟା ମାନେ ଆଦାୟ

କରୁଥିବା ଯୌଥ ଦେବାକୁ ସ୍ପଷ୍ଟ ଭାବରେ ମନାକରିଦେଲେ । କାରଣ ଢ଼େଙ୍କାନାଳ ମରହଟ୍ଟାମାନଙ୍କର ବିଜିତ ରାଜ୍ୟ ବା କରଦ ରାଜ୍ୟ ନଥିଲା । ଏକ ସ୍ୱାଧୀନ ରାଜ୍ୟ ହିସାବରେ ମରହଟ୍ଟା ଶାସକଙ୍କୁ ଯୌଥ ଦେବାର ଆବଶ୍ୟକତା ଆଦୌ ନଥିଲା । ରାଜା ତ୍ରିଲୋଚନ ମରହଟ୍ଟା ମାନଙ୍କୁ କେବଳ ସେମାନଙ୍କ ମୌଖିକ ଆଦେଶରେ କିମ୍ବା ଉପରୋଧରେ ଅନ୍ୟାୟ ଓ ଅଯଥା ଯୌଥ ଦେଇ ନିଜ ତଥା ନିଜ ରାଜ୍ୟ ସୈନିକ ମାନଙ୍କର ଦୁର୍ବଳତା ପ୍ରକାଶ କରିବେ ଏବଂ ଢ଼େଙ୍କାନାଳ ଭଳି ଏକ ଐଶ୍ୱର୍ଯ୍ୟଶାଳୀ ତଥା ସ୍ୱାଧୀନ ରାଜ୍ୟର ଅସହାୟତା ଲୁଣ୍ଠନକାରୀ ଅଥବା ଅତ୍ୟାଚାରୀଙ୍କ ନିକଟରେ ପ୍ରକାଶ କରିବେ, ତାହାଥିଲା ତାଙ୍କ ପକ୍ଷରେ ସମ୍ପୂର୍ଣ୍ଣ ଅବାସ୍ତବ, ଅସମ୍ଭବ କଳ୍ପନାତୀତ ଏବଂ ନିଜ ସ୍ୱଭୀମାନର ବାହାରେ । ରାଜୋଚିତ ଗର୍ବ ଓ ଗୌରବର ମୁକୁଟ ପିନ୍ଧି ଏକ ସ୍ୱାଧୀନ ରାଜ୍ୟର ନରପତି ଭାବରେ ରାଜା ତ୍ରିଲୋଚନ ନିଜର ବାହୁବଳ ତଥା ନିଜ ସୈନ୍ୟମାନଙ୍କର ଅମୀତ ଶକ୍ତିରେ ଗଭୀର ଭାବରେ ଆତ୍ମ ବିଶ୍ୱାସ ରଖି ନିକଟବର୍ତ୍ତୀ ପରାଜିତ ରାଜ୍ୟର ରାଜା ଏବଂ ଲୁଣ୍ଠନକାରୀ ବର୍ଗୀମାନଙ୍କ ସହିତ ମୁକାବିଲା କରିବା ନିମନ୍ତେ ଧୀରସ୍ଥିର ଭାବରେ ଏକ କଠୋର ନିଷ୍ପତ୍ତି ନେଲେ । ମରହଟ୍ଟାମାନଙ୍କୁ ବାରମ୍ବାର ପ୍ରତିରୋଧ କରୁଥିବାରୁ ଏବଂ ସେମାନଙ୍କୁ ଯୌଥ ଦେବା ବନ୍ଦ କରିଦେବାରୁ ୧୭୭୯ ମସିହାରେ ଥରେ ଏବଂ ୧୭୮୧ରେ ଆଉଥରେ ଢ଼େଙ୍କାନାଳ ରାଜ୍ୟ ସେମାନଙ୍କ ଅଧୀନତା ସ୍ୱୀକାର କରିବା ନିମନ୍ତେ ଓ ପ୍ରତିଶୋଧ ନେବା ନିମନ୍ତେ ମରହଟ୍ଟା ଶାସନର ଅସୁମାରୀ ସୈନ୍ୟ ଢ଼େଙ୍କାନାଳ ମୋଟରୀ ତଥା ଷାଠିଏ ବାଟିଆଠାରେ ଯୁଦ୍ଧ କରିଥିଲେ । ଏହି ଯୁଦ୍ଧରେ ମରହଟ୍ଟା ବାହିନୀ ୧୮ ଦିନ କାଳ ଯୁଦ୍ଧ କରି ଶୋଚନୀୟ ପରାଜୟ ସ୍ୱୀକାର କରିଥିଲା । ଢ଼େଙ୍କାନାଳର ଅପରାଜେୟ ଶକ୍ତି ନିକଟରେ ବିଶାଳ ମରହଟ୍ଟା ବାହିନୀର ଔଦ୍ଧତ୍ୟ ଚରମ ଭାବରେ ଚୂର୍ଣ୍ଣୀଭୂତ ହୋଇଥିଲା । ଏହି ଯୁଦ୍ଧର ପ୍ରତ୍ୟକ୍ଷ ବିବରଣୀ ଏବଂ ଏହାର ସତ୍ୟ କାହାଣୀ ସେ କାଳର ପ୍ରସିଦ୍ଧ କବି ବ୍ରଜନାଥ ବଡଜେନା ତାଙ୍କର ''ସମର ତରଙ୍ଗ'' କାବ୍ୟରେ ଉଚ୍ଚକୋଟୀର ଭାଷାଦେଇ ଏକ ଇତିହାସର ରୂପ ଦେଇଯାଇଛନ୍ତି । ଢ଼େଙ୍କାନାଳର କାଳଜୟୀ ଲେଖକ କବି ବ୍ରଜନାଥ ବଡଜେନା ସମଗ୍ର ଓଡିଆ ସାହିତ୍ୟର ସ୍ୱାଭିମାନର ପ୍ରତୀକ ଭାବରେ ଗୃହୀତ ହୋଇଛନ୍ତି ଏବଂ ତାଙ୍କ ଜନ୍ମସ୍ଥାନ କାବେରା, ଢ଼େଙ୍କାନାଳ ପ୍ରତି ସମୁଚୀତ କର୍ତ୍ତବ୍ୟ ସଂପାଦନ କରି ଯାଇଛନ୍ତି ଷାଠିଆବାଟୀଠାରେ ହୋଇଥିବା ଯୁଦ୍ଧର ପ୍ରାଞ୍ଜଳ ବର୍ଣ୍ଣନା ଦେଇ । ଏହା ସାହିତ୍ୟ ଏବଂ ଇତିହାସ ଭାବରେ ଗୃହୀତ ହୋଇଛି । ଏହି ସମୟରେ ମୋଗଲ ଶାସନ ଦୁର୍ବଳ ହୋଇ ଆସୁଥାଏ । ବ୍ୟବସାୟୀ ଇଂରେଜ ଦଳ ଧୀରେ ଧୀରେ କୁଟବୁଦ୍ଧି ପ୍ରୟୋଗ କରି ଏକ ଏକ ଅଞ୍ଚଳ ଦଖଲ କରୁଥାନ୍ତି । ମରହଟ୍ଟାଙ୍କ

ପରି ଆଞ୍ଚଳିକ ଶକ୍ତି ଗୁଡିକ ସେମାନଙ୍କ ଦୁଷ୍କୃତିମୂଳକ କାର୍ଯ୍ୟଯୋଗୁ କ୍ରମଶରୁ କ୍ରମଶଃ ଦୁର୍ବଳ ହେଉଥାଏ ଏବଂ ସେମାନେ ଆଭ୍ୟନ୍ତରୀଣ ସବଳ ଓ ସଚଳ ଶକ୍ତି ମାନଙ୍କଠାରୁ ପରାଜୟ ଆଶାକରୁ ନଥାନ୍ତି । ନିଜ ଦେଶର ଏହି ପାରଗଂମ ଶକ୍ତିକୁ ହରାଇବାପାଇଁ ସେମାନେ ଯେ କୌଣସି ପନ୍ଥା ଗ୍ରହଣ କରିବା ନିମନ୍ତେ ସର୍ବଦା ଉଦ୍ୟମ କରୁଥାନ୍ତି । ଏହି ପରିପ୍ରେକ୍ଷୀରେ ଅତ୍ୟାଚାରୀ ବର୍ଗୀ ମରହଟ୍ଟା ଶାସକ ଗୋଷ୍ଠୀ ଧୀରେ ଧୀରେ ଶକ୍ତିଶାଳୀ ହୋଇଉଠୁଥିବା ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଥିବା ଏବଂ କୁଟକପଟର ବେଶପୋଷାକରେ ନିଜର ଅସଲ ସ୍ୱରୂପକୁ ଲୁଚାଇ ରଖିଥିବା ବ୍ରିଟିଶ ବେପାରୀମାନଙ୍କ ଠାରୁ ସାହାଯ୍ୟ ଲୋଡି ଢ଼େଙ୍କାନାଳ ପରି ଅନେକ ଏ ଦେଶର ଶତୃଜୟୀ ପ୍ରଜାରଞ୍ଜକ ସ୍ୱାଧୀନତା ପ୍ରିୟ ଓ ସାହସୀ ରାଜାମାନଙ୍କୁ ପରାସ୍ତ କରିବାପାଇଁ ଉଦ୍ୟମ ଆରମ୍ଭ କଲେ । ବ୍ରିଟିଶ ବେପାରୀଦଳ ଏହାର ଅପୂର୍ବ ସୁଯୋଗ ନେଲେ ଦେଶୀୟ ଅତ୍ୟାଚାରୀ ଗୋଷ୍ଠୀଙ୍କୁ ସାମୟିକ ସାହାଯ୍ୟ ଦେଇ । ଏହି ଦୃଷ୍ଟିରୁ ଦେଖିବାକୁ ଗଲେ ଢ଼େଙ୍କାନାଳଠରେ ଯେଉଁ ଯୁଦ୍ଧ ହେଲା ତାହା ସ୍ୱାଧୀନତା ସଂଗ୍ରାମର ଏକ ଅଙ୍ଗ ବୋଲି ନିଃସନ୍ଦେହରେ କୁହାଯାଇପାରେ । ଅନ୍ୟାୟ ଅନୀତି ଆଚରଣ କରୁଥିବା ଲୁଣ୍ଠନକାରୀ ଦେଶୀୟ ଶାସକ କୁଟକପଟର ଖଳନାୟକ ପ୍ରଥମେ ବେପାରୀ ଓ ପରେ ଶାସକ ବ୍ରିଟିଶଙ୍କୁ ସପକ୍ଷକୁ ନେଇ ଯୁଦ୍ଧରେ ପ୍ରବୃତ୍ତ ହେବାରୁ ଏହାର ଭବିଷ୍ୟତ କଣ ହେବ ତାହା ସେମାନଙ୍କୁ ଦେଖାଯାଇନଥିଲା । ସେମାନେ ଏହାର ଭୟାବହ ପରିଣତି କଣ ହେବ ତାହା କଳନା କରିପାରିନଥିଲେ । ସେ ଅନୁଭବ ଶକ୍ତି ତାଙ୍କର ନଥିଲା । କେବଳ ଏତିକି କୁହାଯାଇପାରେ ଯେ ସେତେବେଳେ ଗଜପତି ମହାରାଜା ଢ଼େଙ୍କାନାଳ ପରି ଅନ୍ୟ ଅଳ୍ପ କେତେକ ରାଜ୍ୟର ଶାସକ ଯେଉଁମାନଙ୍କର ସ୍ୱଦେଶ ପ୍ରୀତି ଥିଲା, ଯେଉଁମାନେ ଏକ ସ୍ୱାଧୀନ ଭାରତର ଅଖଣ୍ଡ ସ୍ୱରୂପର ବାସ୍ତବ ଚିତ୍ର କଳ୍ପନା କରୁଥିଲେ, ଯେଉଁମାନେ କେବଳ ମାତ୍ର ସ୍ୱାର୍ଥପାଇଁ ତାର ପଦାନତ ନ ହୋଇ ରଣ ହୁଙ୍କାର ଦେଉଥିଲେ ଏବଂ ଯେଉଁମାନେ ବିଶ୍ୱାସ ଘାତକଙ୍କୁ କଠୋର ଭାବରେ ପଦାନତ ବା ଦମନ କରୁଥିଲେ ସେମାନଙ୍କୁ ଇତିହାସ ତାର ଅଲିଭାପୃଷ୍ଠାରେ ଉପଯୁକ୍ତ ସ୍ଥାନ ଦେଇଛି । ଚିରସ୍ମରଣୀୟ କରି ରଖିବାପାଇଁ ରାଜା ତ୍ରିଲୋଚନ ଇତିହାସର ଏହି ସ୍ମରଣୀୟ ଅଲିଭାପୃଷ୍ଠାରେ ନିଜକୁ ଅଧିଷ୍ଠିତ କରି ଯାଇଛନ୍ତି ୧୮ ଦିନ କାଳ ଯୁଦ୍ଧପରେ ଜୟଲାଭ କରି । ପରବର୍ତ୍ତୀ ସମୟରେ କୁହାଯାଇଛିଏହା ଅନ୍ୟାୟ ଅନୀତି ବିରୁଦ୍ଧରେ ଏକ ଧର୍ମର ଯୁଦ୍ଧ । ଲୁଣ୍ଠନକାରୀ ଓ ଅତ୍ୟାଚାରୀ ବର୍ଗୀମାନଙ୍କୁ ପଦନତ କରିବା ପାଇଁ ଏକ ଶକ୍ତିର ଯୁଦ୍ଧ, ବିଦେଶୀ ବେପାରୀ ଦଳ ତଥା କୁଟକ୍ରୋନ୍ତକାରୀ ବ୍ରିଟିଶ୍ ମାନଙ୍କ ବିରୁଦ୍ଧରେ ଏକ ଅଧିକାରରଯୁଦ୍ଧ ଏବଂ ନିଜର ସ୍ୱାଧୀକାର ତଥା ସ୍ୱାଭିମାନକୁ ବଜାୟ ରଖିବାପାଇଁ ଏକ ମାନବିକ ଯୁଦ୍ଧ ।

୧୭୪୫ରୁ ୧୭୮୫ ବେଳକୁ ଏହି ସମୟ ଅବସ୍ଥା ଦୃଷ୍ଟିରୁ କିଛି କମ୍ କଥା ନଥିଲା । ଅବଶ୍ୟ ମରହଟ୍ଟାମାନଙ୍କ ପ୍ରସ୍ତାବ ଅନୁସାରେ ଦୁଇପକ୍ଷରେ ସନ୍ଧିହୋଇ ଯୁଦ୍ଧର ଅବସାନ ଘଟିଥିଲା । ମରହଟ୍ଟାମାନେ ରାଜା ତ୍ରିଲୋଚନଙ୍କୁ ସମ୍ମାନ ଜଣାଇବା ପାଇଁ ଏବଂ ତାଙ୍କର ଅସୀମ ଶକ୍ତିକୁ ସ୍ୱୀକୃତି ଜଣାଇବାପାଇଁ ''ମହୀନ୍ଦ୍ର ବାହାଦୂର'' ପଦବୀ ପ୍ରଦାନ କରିଥିଲେ । ଗଜପତି ମହାରାଜା ଏହାକୁ ପରେ ଅନୁମୋଦନ କରିଥିଲେ । ରାଜା ତ୍ରିଲୋଚନଙ୍କ ପରେ ତାଙ୍କ ପୁତ୍ର ଦୟାନିଧି ମହିନ୍ଦ୍ର ବାହାଦୂର ୧୭୮୫ରୁ ୧୭୯୫ ପର୍ଯ୍ୟନ୍ତ ଢେଙ୍କାନାଳ ରାଜଗାଦି ଅଧିକାର କରିଥିଲେ । ଯୁଦ୍ଧ ବିଗ୍ରହ କରି ରାଜ୍ୟବିସ୍ତାର କରିବା ତାଙ୍କର ପ୍ରବୃତ୍ତି ନଥିଲା । ସେ ରାଜ୍ୟର ପ୍ରଜା ସାଧାରଣଙ୍କୁ ସୁଖ ଶାନ୍ତିରେ ଶାସନ ଦେଇ ପାଳନ କରିଥିଲେ । ରାଜା ଦୟାନିଧି ନିଃସନ୍ତାନ ଥିଲେ । ତାଙ୍କ ମୃତ୍ୟୁପରେ ତାଙ୍କ ଭାଇଙ୍କ ପୁଅ ରାଜା ମାନସିଂହ ୧୭୯୫ରୁ୧୭୯୬ ପର୍ଯ୍ୟନ୍ତ ମାତ୍ର ଏକ ବର୍ଷ ଶାସନ କରିଥିଲେ । ରାଜା ମାନସିଂହ ଅପୁତ୍ରିକ ଥିବାରୁ ତାଙ୍କପରେ ବୀର ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ଅନ୍ୟତମ ପୁତ୍ର ରାମଚନ୍ଦ୍ର ସିଂହ ମହୀନ୍ଦ୍ର ବାହାଦୂର ୧୭୯୬ରୁ ୧୮୦୭ ପର୍ଯ୍ୟନ୍ତ ରାଜଗାଦି ଅଧିକାର କରି ଢେଙ୍କାନାଳ ରାଜ୍ୟ ଶାସନ କରୁଥିଲେ । ଏହାଙ୍କର ରାଜ୍ୟ ବିସ୍ତାର ଲିପ୍ସା ନଥିଲା । ଆଭ୍ୟନ୍ତରୀଣ ସଂଗଠନରେ ସେ ଆତ୍ମନିୟୋଗ କରିଥିଲେ । ଆଧାତ୍ମିକ ଜୀବନ ଯାପନରେ ସେ ଶାନ୍ତି ଶୃଙ୍ଖଳାରେ ରାଜକାର୍ଯ୍ୟ ସମାହିତ କରୁଥିଲେ । ରାଜା ରାମଚନ୍ଦ୍ରଙ୍କ ଅମଳରେ ବଳରାମ ଦେଉଳର ପାଚେରୀ ନିର୍ମିତ ହୋଇଥିଲା । ନଅରର ସିଂହମୂର୍ତ୍ତି ନିର୍ମିତ ହୋଇଥିଲା । ମାଣ୍ଡପାସାହି ଦୋଳମଣ୍ଡପ ଆଦି ନିର୍ମାଣ କାର୍ଯ୍ୟ ହୋଇଥିଲା । ଏତେବେଳକୁ ବ୍ରିଟିଶ୍ ବିଦେଶୀ ଦଳ ଶାସକ ହିସାବରେ ସମଗ୍ର ଭାରତ ବର୍ଷକୁ ପ୍ରାୟ ସେମାନଙ୍କର ଦଖଲର ଅନ୍ତର୍ଭୁକ୍ତ କରିସାରିଲେଣି । କିନ୍ତୁ ତଥା କଥିତ କଳିଙ୍ଗ ବା ଉତ୍କଳ ଅଥବା ଓଡିଶା ବ୍ରିଟିଶ ଅନ୍ତର୍ଭୁକ୍ତ ହୋଇନଥିଲା ।

ରାଜା ରାମଚନ୍ଦ୍ର ଅପୁତ୍ରିକ ଥିଲେ । ଏହାଙ୍କ ପରେ ରାଜା କୃଷ୍ଣଚନ୍ଦ୍ର ମହୀନ୍ଦ୍ର ବାହାଦୂର ରାଜଗାଦି ଆରେହଣ କରି ୧୮୦୭ରୁ ୧୮୨୨ ପର୍ଯ୍ୟନ୍ତ ରାଜ୍ୟଶାସନ କରିଥିଲେ । ରାଜା କୃଷ୍ଣଚନ୍ଦ୍ର ଏକ ପରାକ୍ରମଶାଳୀ ରାଜାଥିଲେ ହେଁ ରାଜ୍ୟବିସ୍ତାର ପାଇଁ ମନଯୋଗ ଦେଇନଥିଲେ । ବରଂ ଢେଙ୍କାନାଳ ରାଜ୍ୟର ସୀମା ସୁରକ୍ଷା ଦିଗରେ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲେ । ସେ ନିଜ ରାଜ୍ୟରେ ଜଳାଶୟ ଆଦି ପ୍ରତିଷ୍ଠା କରଥିଲେ ଏବଂ ଶ୍ରୀକ୍ଷେତ୍ର ପୁରୀ, ଯାଜପୁର, ଉତ୍ତର ଭାରତର ବିଭିନ୍ନ ତୀର୍ଥସ୍ଥାନ ପରିଦର୍ଶନ କରିଥିଲେ । ସେ ଆଧାତ୍ମିକ ଜୀବନଯାପନରୁ ଅଧିକ ଆନନ୍ଦ ଅନୁଭବ କରୁଥିଲେ । ତାଙ୍କର ଏହି ଜୀବନ ଧାରାର ପ୍ରଭାବ ଢେଙ୍କାନାଳ

ପ୍ରଜାସାଧାରଣଙ୍କ ଉପରେ ପଡିଥିଲା । ଏହିଭଳି ଶାସନଗତ ସ୍ୱାଭାବିକ କାରଣରୁ ଢେଙ୍କାନାଳର ଜନସାଧାରଣ ପ୍ରାୟତଃ ଧର୍ମ ଓ କର୍ମ ଉପରେ ଅଧିକ ବିଶ୍ୱାସ ଭାଜନ ଥିଲେ ।

ରାଜା କୃଷ୍ଣଚନ୍ଦ୍ର ନିଃସନ୍ତାନ ଥିଲେ । ତେଣୁ ତାଙ୍କପରେ ରାଜା ତ୍ରିଲୋଚନ ସିଂହ ମହୀନ୍ଦ ବାହାଦୂରଙ୍କ ଦାଦା ପୁଅଭାଇ ରାଜା ଜଗନ୍ନାଥ ଭ୍ରମରବରଙ୍କ ନାତି ଶ୍ୟାମସୁନ୍ଦର ମହୀନ୍ଦ୍ର ବାହାଦୂର ୧୮୨୨ରୁ ୧୮୩୦ ପର୍ଯ୍ୟନ୍ତ ଗାଦିସୀନ ହୋଇ ରାଜତ୍ୱ କରିଥିଲେ । ରାଜା ଶ୍ୟାମସୁନ୍ଦର ଅତ୍ୟନ୍ତ ସାହସୀ ଏବଂ ଯୋଦ୍ଧା ଥିଲେ । ଏହାଙ୍କ ସମୟରେ ଅନୁଗୁଳ ରାଜା ସୋମନାଥ ସିଂହ ଜଗଦେବଙ୍କ ସହିତ ବୁଢାପଙ୍କଠାରେ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ବୁଢାପଙ୍କ ପର୍ଯ୍ୟନ୍ତ ଢେଙ୍କାନାଳ ରାଜ୍ୟର ସୀମା ବିସ୍ତୃତ ଲାଭ କରିଥିଲା । ଏହା ବ୍ୟତୀତ ରାଜା ଶ୍ୟାମସୁନ୍ଦର ବଡମ୍ବା ରାଜ୍ୟର ଝୁମ୍ପୁଡିଆ ଓ କାଳିକା ପ୍ରସାଦ ଦୁଇଟି ଗ୍ରାମକୁ ଢେଙ୍କାନାଳ ରାଜ୍ୟରେ ଅନ୍ତର୍ଭୁକ୍ତ କରିଥିଲେ ତାଙ୍କ ସହିତ ଯୁଦ୍ଧରେ ଜୟଲାଭ କରି ଏହି ପ୍ରକାର ପାରମ୍ପରିକ ଓ କୌଳିକ ଯୁଦ୍ଧକରି ରାଜ୍ୟବିସ୍ତାର କରିବାର ଉଦ୍ୟମ ଏହିଠାରୁ ବୋଧହୁଏ ଶେଷ ହୋଇଥିଲା । ଇଂରେଜ ଶାସନ ସେତେବେଳକୁ ସାରା ଭାରତ ବର୍ଷରେ ଚାଲୁ ହୋଇଯାଇଥିଲା । ରାଜା ଶ୍ୟାମସୁନ୍ଦରଙ୍କ ବୀରତ୍ୱର ଜୟମାଲ୍ୟରେ ଏବଂ ନ୍ୟାୟନୀତି ଶାସନର ମହତ୍ୱପୂର୍ଣ୍ଣ ଗୌରବରେ ଅନୁଗୁଳ, ତାଳଚେର, ବଡମ୍ବା, ତିଗିରିଆ ପ୍ରମୁଖ ନିକଟବର୍ତ୍ତୀ ରାଜ୍ୟର ରାଜାମାନେ ପ୍ରତିଶୋଧ ପରାୟଣ ହୋଇ ଅନେକ ମିଥ୍ୟା ଏବଂ କପୋଳକଳ୍ପିତ ଅଭିଯୋଗମାନ ସେତେବେଳର ଗଡଜାତ ମାହାଲ୍ୟ ନିକଟରେ କରିଥିଲେ । କିନ୍ତୁ ସଦାଚାରୀ ଓ ଲୋକପ୍ରିୟ ରାଜା ଶ୍ୟାମସୁନ୍ଦରଙ୍କର ଏଥିରେ କୌଣସି କ୍ଷୟକ୍ଷତି ଘଟିନଥିଲା । ଯୁଦ୍ଧ ବିଜୟୀ ନରପତି ହିସାବରେ ସେ ସମସ୍ତଙ୍କ ନିକଟରେ ସମ୍ମାନର ପାତ୍ରଥିଲେ ।

ରାଜା ଶ୍ୟାମସୁନ୍ଦର ମହୀନ୍ଦ୍ର ବାହାଦୂର ନିଃସନ୍ତାନ ଥିଲେ । ଏହାଙ୍କ ପୋଷ୍ୟପୁତ୍ର ନାବାଳକ ରାଜା ଭାଗୀରଥ ମହୀନ୍ଦ ବାହାଦୂର ୧୮୩୦ରେ ଗାଦିସୀନ ହୋଇଥିଲେହେଁ ତାଙ୍କ ତରଫରୁ ତାଙ୍କ ମା ଏବଂ ନିଯୁକ୍ତ ଅଧିକର୍ତ୍ତାମାନେ ଶାସନ ଦାୟିତ୍ୱ ଚଳାଇ ଥାଆନ୍ତି । ସେ ୧୮୪୨ରୁ ନିର୍ବିବାଦରେ ଶାସନଭାର ଗ୍ରହଣ ପୂର୍ବକ ୧୮୭୭ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ । ରାଜା ଭଗୀରଥ ଥିଲେ ସୁଶାସକ, ନୀତିବାନ, ଦୟାବାନ, ଶୃଙ୍ଖଳିତ, ଧର୍ମପରାୟଣ, ଜ୍ଞାନବାନ ଏବଂ ଧର୍ମବନ୍ତ ସୁପୁରୁଷ । ରାଜା ଭଗୀରଥ ଯେକୌଣସି କାର୍ଯ୍ୟ କଲାବେଳେ କିମ୍ବା କରିବାକୁ ଚିନ୍ତାକଲାବେଳେ ତାହା ଗୀତା, ଭାଗବତ, ରାମାୟଣ ଆଦି ବିଭିନ୍ନ ଧର୍ମଗ୍ରନ୍ଥ ଅନୁମୋଦିତ ନୀତି ନିୟମ ଭିତରେ ପଡୁଛି କି ନାହିଁ ତାହା ବିଚାର କରିସାରିବା ପରେ ସେ ସେହି କାର୍ଯ୍ୟରେ ହାତ ଦିଅନ୍ତି । ନୀତି ଶାସ୍ତ୍ର ବିରୁଦ୍ଧ କାର୍ଯ୍ୟ ସେ କରନ୍ତି ନାହିଁ ।

ତାଙ୍କର ଆଧ୍ୟାତ୍ମିକ ଜୀବନର ପରିପ୍ରକାଶ ଏପରି ଘଟିଥିଲା ଯେଉଁଥିରେ କି ଅନ୍ୟାୟ କାର୍ଯ୍ୟ, ଅନ୍ୟାୟ ବା ଅସତ୍ ଚିନ୍ତା ତାଙ୍କୁ ଆଦୌ ସ୍ପର୍ଶ କରିନଥିଲା । ରାଜ କର୍ମଚାରୀମାନଙ୍କୁ ସତ୍‌ପଥରେ ରହି ଉଚିତ୍ ସତ୍‌କାର୍ଯ୍ୟ ଓ ପରୋପକାର ତଥା ସେବାମୂଳକ କାର୍ଯ୍ୟ କରିବାକୁ ସେ ସର୍ବଦା ପରାମର୍ଶ ଦେଉଥିଲେ ଏବଂ ତାଙ୍କର ଏଇ ପ୍ରେରଣାମୂଳକ ଆଦର୍ଶବାଦୀ କାର୍ଯ୍ୟଧାରା ପାଇଁ ପ୍ରଜା ତଥା ରାଜକର୍ମଚାରୀମାନେ ତାଙ୍କୁ ଏକ ସ୍ୱତନ୍ତ୍ର ଆସନରେ ଅଧିଷ୍ଠିତ କରାଇଥିଲେ । ରାଜକୀୟ ସମ୍ମାନଠାରୁ ତାହା ଥିଲା ଅଧିକ ଗରୀୟାନ, ମହତ୍ ଓ ଶ୍ରେଷ୍ଠ ।

ତାଙ୍କ ସମୟରେ ସେ ଢେଙ୍କାନାଳ ରାଜ୍ୟ ଜମିର ବନ୍ଦୋବସ୍ତ କରାଇଥିଲେ । ଏହାଦ୍ୱାରା ସମସ୍ତେ ଅର୍ଥାତ୍ ପ୍ରଜା ଏବଂ ରାଜା ଜମିଜମାର ହିସାବ ପାଇଲେ ଏବଂ ନିଜର ସତ୍ତ୍ୱ ସଂପର୍କରେ ଆସ୍ଥାବାନ ହେଲେ । ସେହି ଅନୁସାରେ ସମସ୍ତଙ୍କୁ ସୁହାଇଲା ପରି ଖଜଣା ଓ ଅନ୍ୟାନ୍ୟ ଟିକସ ସ୍ଥିର ହୋଇଥିଲା । ରାଜା ଭଗୀରଥ ଜଙ୍ଗଲ ସଫା କରିବା ପରେ ଚାଷ ଜମିରେ ଏହାକୁ ପରିଣତ କରିବା ପାଇଁ ଅନୁମତି ଦେଇଥିଲେ । ସେ କୃଷି, ଶିକ୍ଷା ଓ ସ୍ୱାସ୍ଥ୍ୟ ରକ୍ଷା ପାଇଁ ସେତେବେଳର ପରିସ୍ଥିତିକୁ ଚାହିଁ ବିଶେଷ ଧ୍ୟାନ ଦେଇଥିଲେ । ସେ ଅନୁପାତିକ ଭାବରେ ଅଧିକ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ ଏବଂ ନିଜଗଡଠାରେ ଗୋଟିଏ ମାଇନର ସ୍କୁଲ ସ୍ଥାପନ କରିଥିଲେ । ସେ ନିଜେ ଜଣେ ପଣ୍ଡିତମାନ୍ୟ ରାଜା ହୋଇଥିବାରୁ ନିଜ ଦରବାରକୁ ବହୁ ପଣ୍ଡିତ, କବି ଓ ଲେଖକମାନଙ୍କୁ ଆଣି ଶାସ୍ତ୍ର ଓ ରାଜକୀୟ କାର୍ଯ୍ୟ ସମ୍ପର୍କରେ ବିଚାର ଆଲୋଚନା କରୁଥିଲେ । ଏକ ସଂସ୍କୃତ ବିଦ୍ୟାଳୟ ତାଂକ ନାମରେ ସେ ସ୍ଥାପନ କରିଥିଲେ । ଯାଉଁଳୀ ପୋଖରୀ ମଠ ଓ ତତ୍ ସଂଲଗ୍ନ ନୃସିଂହ ସାଗର ପୋଖରୀ ନିର୍ମାଣ କରି ତାହାର ପରିଚାଳନା ପାଇଁ ପର୍ଯ୍ୟାପ୍ତ ପରିମାଣର ଜମିଜମା ନିଷ୍କର ଭାବରେ ଖଞ୍ଜି ଦେଇଥିଲେ । ଅନ୍ଧମୂକ, ସାଧୁସନ୍ଥ, ଅତିଥି ଅଭ୍ୟାଗତ ଢେଙ୍କାନାଳ ଆସିଲେ ଏହି ମଠରେ ସମୟ ସମୟ ପାଇଁ ଏହାଙ୍କୁ ଯଥାବିଧି ଭାବରେ ସାତ୍ତ୍ୱିକ ଖାଦ୍ୟ ଦ୍ୱାରା ଅତିଥି ସତ୍କାର କରାଯାଉଥିଲା । କପିଳାସଠାରେ କାରୁକାର୍ଯ୍ୟ ଖଚିତ କାର୍ଯ୍ୟ ନିର୍ମିତ ଜଗମୋହନ, ପାକଶାଳା ଓ ଜଳମଣ୍ଡପ ନିର୍ମାଣ କରିଥିଲେ । ଦେଓଗାଁଠାରେ ବଳରାମଙ୍କ ମୁଖଶାଳା, ପର୍ଣ୍ଣିମେଶ୍ୱର ଦେଉଳର ମୁଖଶାଳା, ନିଜିଗଡ ବଳରାମ ମନ୍ଦିରର ପ୍ରାଚୀର ଓ ଏହାର ଜଗମୋହନ, ଶଙ୍କରପୁର, ଭାପୁର, ବଉଳପୁର ରାସ୍ତା ଆଦି ଅନେକ କାର୍ଯ୍ୟ ହେଉଛି ଏହାଙ୍କର ଅକ୍ଷୟ କୀର୍ତ୍ତି । ନିରକ୍ଷର, ନିରୀହ, ସରଳ ଆଦିବାସୀମାନଙ୍କ ପାଇଁ ଅନେକ କାର୍ଯ୍ୟ ସେ କରୁଥିଲେ । ତାଂଙ୍କ ଶାସନକାଳରେ ମୁଖ୍ୟତଃ ସେ ଓଡିଆ ଭାଷାରେ କୋର୍ଟ୍

କଚେରୀ କାର୍ଯ୍ୟ ସଂପାଦନ କରିବା ପାଇଁ ଆଦେଶ ଦେଇଥିଲେ ଓ ନିଜେ ଏଥିପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଅଭାବ ଅନ ଟନ ସମୟରେ ସେ ପ୍ରଜାମାନଙ୍କୁ ନିଜ ଶସ୍ୟାଗାରରୁ ଧାନପ୍ରଦାନ କରୁଥିଲେ । ସେଥିପାଇଁ ନିଜେ କୌଣସି କଠିନ ସର୍ତ୍ତ ଆରୋପ କରୁନଥିଲେ । ଆଗାମୀ ବର୍ଷ ଧାନ ଅମଳପରେ ପ୍ରଜାମାନେ ନେଇଥିବା ଧାନ ପରିଶୋଧ କରୁଥିଲେ । ଏହାଦ୍ୱରା ପ୍ରଜାମାନେ ମହାଜନମାନଙ୍କର ଶୀକାର ହେଉ ନଥିଲେ ଓ ଅଭାବ ଅନ ଟନ ବେଳେ ନିଜର ଅସୁବିଧା ଦୂର କରି ପାରୁଥିଲେ ।  ଦୁର୍ଭିକ୍ଷ ବେଳେ କେବଳ ଢେଙ୍କାନାଳର ପ୍ରଜାମାନଙ୍କୁ ନହେଁ, ସମଗ୍ର ଓଡିଶାର ଦୁର୍ଭିକ୍ଷ ଗ୍ରସ୍ତ ଲୋକମାନଙ୍କୁ  ବହୁ ଅର୍ଥ, ନିଜ ଶସ୍ୟାଗାରରୁ ବହୁ ପରିମାଣରେ ଧାନ ଚାଉଳ ଦେଇଥିଲେ  ଏବଂ ଲୋକମାନଙ୍କୁ ମୃତ୍ୟୁମୁଖରୁ ରକ୍ଷା କରିବାର ବିପୁଳ ଗୌରବ ଅର୍ଜନ କରିଥିଲେ । ରାଜା ଭାଗୀରଥି ମହୀନ୍ଦ୍ର ବାହାଦୂର । ବଢି ମରୁଡି ଅଥବା ଦୈବୀ ଦୁର୍ଘଟଣାରେ ରାଜା ଭାଗୀରଥି ମଧ୍ୟ ଅନୁରୂପ ଭାବରେ ସାହାଯ୍ୟ କରୁଥିଲେ । ତାଙ୍କର ଏହି ମହନୀୟ ସଦ୍‌ଗୁଣ ଯୋଗୁଁ ଏବଂ ନିଜର ପ୍ରଶାସନିକ କଳା କୌଶଳରେ ମାନବିକ ସେବାକୁ ପ୍ରାଧାନ୍ୟ ଦେଉଥିବାରୁ ତାହାଙ୍କୁ ମହାରାଜା ପଦବୀ ଅର୍ପଣ କରାଯାଇଥିଲା ।

ଓଡିଶାର ପ୍ରଥମ ଛାପାକଳ ପ୍ରତିଷ୍ଠା ପାଇଁ ମହାରାଜା ଭଗୀରଥ ଟ୍ରେଡିଂ କଂପାନୀକୁ ଆର୍ଥିକ ସାହାଯ୍ୟ ଦେଇଥିଲେ । ଶିକ୍ଷାର ପ୍ରସାର ପାଇଁ ଏବଂ ଉଚ୍ଚ ଇଂରାଜୀ ପର୍ଯ୍ୟନ୍ତ ପାଠ୍ୟ ପୁସ୍ତକ ରଚନା ପାଇଁ ସେ ପ୍ରଭୂତ ପରିମାଣର ଅର୍ଥ ପ୍ରଦାନ କରିଥିଲେ । ଶିକ୍ଷା ବିସ୍ତାର କାର୍ଯ୍ୟକ୍ରମ ପାଇଁ ସେ ପ୍ରତିଯୋଗିତା ମୂଳକ ଉଦ୍ୟମ ସୃଷ୍ଟି ସକାଶେ ସେ ଆର୍ଥୀକ ପୁରସ୍କାରର ବ୍ୟବସ୍ଥା କରିଥିଲେ । ଓଡିଆ ଭାଷାର ମର୍ଯ୍ୟାଦା ରକ୍ଷାପାଇଁ ଓ ଏହାର ଦ୍ରୁତ ଉନ୍ନତି ସକାଶେ ସେ ଯେପରି ପଦକ୍ଷେପ ନେଇଥିଲେ, ତାହା ଥିଲା ନିଶ୍ଚୟ ଯୁଗାନ୍ତକାରୀ ଏବଂ ସମସ୍ତଙ୍କ ପକ୍ଷରେ ଦୃଷ୍ଟାନ୍ତ ମୂଳକ ଅଥବା ଅନୁକରଣୀୟ ।

ମହାରାଜା ଭଗୀରଥ ମହୀନ୍ଦ୍ର ବାହାଦୂର ମହିମାଧର୍ମର ଆଦିସ୍ରଷ୍ଟା ମହିମା ଗୋସେଇଁଙ୍କୁ ପ୍ରତ୍ୟହ ଦୁଗ୍ଧ ପାନ କରାଇବା ସକାଶେ ନଜେ ବ୍ୟବସ୍ଥା କରି ଏହି ଧର୍ମର ଆଦି ପୀଠ ଯୋରନ୍ଦାଠାରେ ଆବଶ୍ୟକ ପରମାଣର ଜମିଜମାର ବନ୍ଦୋବସ୍ତ କରିାଇଥିଲେ । ସେତେବେଳର ବ୍ରିଟିଶ କମିଶନର ଅନେକ ସମୟରେ ବହୁ ଜଟିଳ ସମସ୍ୟା ସମାଧାନ କରିବା ପାଇଁ କିମ୍ବା ଆପୋଷ ଭାବରେ ବିଭିନ୍ନ ମକଦ୍ଦମା ନିଜେ ଫଇସଲା କରିବା ପାଇଁ ବିଚାରବନ୍ତ ମହାରାଜାଙ୍କ ନିକଟକୁ ପଠାଉଥିଲେ । ମହାରାଜା ଭାଗୀରଥ ସମସ୍ତଙ୍କର ଆମ୍ବ

ବିଶ୍ୱାସ ପ୍ରତି ଆସ୍ଥା ରଖି ଏହାର ଉଚିତ୍ ବିଚାର ପରେ ନିରପେକ୍ଷ ନିଷ୍ପତ୍ତି ନେଉଥିଲେ । ପୁରୀର ଗଜପତି ମହାରାଜାଙ୍କ ସହିତ ବଂଶାନୁଚଳିତ ଧାରା ଅନୁସାରେ ଏହାଙ୍କ ସଂପର୍କ ସେହିପରି ଅନେକ ଥିଲା । ଶ୍ରୀକ୍ଷେତ୍ର ଦର୍ଶନ ବେଳର ବିଧିବିଧାନ ତାଙ୍କ ପାଇଁ ପୂର୍ବ ସ୍ୱୀକୃତ ଥିଲା ।

ମହାରାଜା ଭାଗୀରଥ ନିଃସନ୍ତାନ ଥିଲେ । ତାଙ୍କର ମୃତ୍ୟୁ ବେଳକୁ ତାଙ୍କର ପୋଷ୍ୟପୁତ୍ର ରାଜା ଦୀନବନ୍ଧୁ ମହୀନ୍ଦ୍ର ବାହାଦୁର ନାଁ ବାଳକ ଥିବାରୁ ତାଙ୍କ ନାମରେ ଶାସନ କାର୍ଯ୍ୟ ଚାଲିଲା । ୧୮୭୭ ମସିହାରୁ ନାଁ ବାଳକ ରାଜା ଦୀନବନ୍ଧୁ ମହୀନ୍ଦ୍ର ବାହାଦୂର ତରଫରୁ ବନମାଳୀ ସିଂହ ବ୍ରିଟିଶ ସରକାରୀ କୋର୍ଟ ଅଫ ୱାର୍ଡର ବ୍ୟବସ୍ଥାରେ ପରିଚାୟକ ନିଯୁକ୍ତ ହୋଇ ଶାସନ କାର୍ଯ୍ୟ ତୁଲାଇଲେ । ଓଡିଆ ସାହିତ୍ୟର ଅନ୍ୟତମ ରଥି ତଥା ଓଡିଆ ଭାଷାର ଅନ୍ୟତମ ସାରଥି ଫକିର ମୋହନ ଏହି ସମୟ ବେଳକୁ ସହକାରୀ ପରିଚାଳକ ନିଯୁକ୍ତ ହୋଇ ଢେଙ୍କାନାଳ ଶାସନ ସହିତ ସଂପୃକ୍ତ ହୋଇଥିଲେ । କେତେକ ଯୁଗାନ୍ତକାରୀ ସୃଷ୍ଟି ସହିତ ଫକୀର ମୋହନ ଢେଙ୍କାନାଳ ଅବସ୍ଥାନ କାଳରେ ହିନ୍ଦୀ ଭାଷାରେ ରାମାୟଣକୁ ଓଡିଆ ଭାଷାରେ ରୂପାନ୍ତରିତ କରିଥିଲେ । ରାଜା ଦୀନବଂଧୁ ମହୀନ୍ଦ୍ର ବାହାଦୁର ୧୮୮୫ ମସିହା ପର୍ଯ୍ୟନ୍ତ ଶାସନ କରିଥିଲେ ।

ଉତ୍ତମ ରାଜା ଦୀନବନ୍ଧୁ ଥିଲେ ପରୋପକାରୀ ପ୍ରଜାବତ୍ସଳ, ଦୟାଶୀଳ, ସୁବିଚାରିକ, ଈଶ୍ୱର ବିଶ୍ୱସୀ ଏବଂ ନ୍ୟାୟପରାୟଣ । ସେ ନିଜ ରାଜ୍ୟର ଶିକ୍ଷା ସ୍ୱାସ୍ଥ୍ୟରେ ଉନ୍ନତି କାର୍ଯ୍ୟକ୍ରମ ପ୍ରଚଳନ କରାଇଥିଲେ । କପିଳାସ କ୍ଷେତ୍ରରେ ସେ ଅନେକ କାର୍ଯ୍ୟ କରାଇଥିଲେ । ତାଙ୍କ ଧର୍ମପତ୍ନୀ ବଣେଇ ରାଜାଙ୍କ କନ୍ୟା ଅନ୍ନପୂର୍ଣ୍ଣା ଥିଲେ ଯଥାର୍ଥରେ ସମସ୍ତଙ୍କ ନିକଟରେ 'ମା ଅନ୍ନପୂର୍ଣ୍ଣା' । କପିଳାସର ନାରାୟଣ ମୂର୍ତ୍ତିର ନିର୍ମାଣ କୌଶଳ ଓ ତାଙ୍କର ପ୍ରତିଷ୍ଠା ସ୍ୱଧର୍ମର ପରାକାଷ୍ଠାରେ କରାଇ କାଳକାଳକୁ ସୁନାମ ଅର୍ଜନ କରିଛନ୍ତି ।

ରାଜା ଦୀନବନ୍ଧୁଙ୍କ ଅନ୍ତେ ତାଙ୍କ ପୁତ୍ର ରାଜର୍ଷି ସୁର ପ୍ରତାପ ୧୮୮୫ରୁ ୧୯୧୮ ପର୍ଯ୍ୟନ୍ତ ରାଜଗାଦୀ ଅଧିକାର କରିଥିଲେ ହେଁ ତାଙ୍କ ପିତାଙ୍କ ମୃତ୍ୟୁବେଳକୁ ମାତ୍ର ୫/୬ମାସର ଶିଶୁ ହେଇଥିବାରୁ କୋର୍ଟ ଅଫ ୱାର୍ଡର ପଦ୍ଧତିରେ ତାଙ୍କ ତରଫରୁ ପରିଚାଳକ ନିଯୁକ୍ତି ହୋଇ ଶାସନ କାର୍ଯ୍ୟ ସମାପନ କରାଯାଇଥିଲା ।

ପ୍ରତ୍ୟକ୍ଷ ଭାବରେ ସେ ୧୯୦୬ ମସିହାଠାରୁ ଶାସନ ଦାୟିତ୍ୱ ଗ୍ରହଣ କରି ଶାସନର ପ୍ରତ୍ୟେକ କ୍ଷେତ୍ରରେ ଋଷି ପ୍ରାଣର ମହନୀୟ କାର୍ଯ୍ୟର ସ୍ୱାକ୍ଷର ରଖି ଯାଇଛନ୍ତି । ରାଜର୍ଷି ସୁର ପ୍ରତାପଙ୍କ ସମୟରେ ଅନେକ ମନ୍ଦିର ନିର୍ମାଣ ଏବଂ ତହିଁର ସୁପରିଚାଳନା,

ରଥଯାତ୍ରା ପ୍ରଚଳନ, ବିଭିନ୍ନ ରାସ୍ତା ଘାଟ ନିର୍ମାଣ ବିଦ୍ୟାଳୟ ସ୍ଥାପନ, ଜଳାଶୟ ନିର୍ମାଣ , ଗ୍ରାମସଭା ମାଧ୍ୟମରେ ଗ୍ରାମୋନ୍ନୟନ, ନାଟ୍ୟ ସଂସ୍କୃତି ସଂସ୍ଥାପନ, ସାହିତ୍ୟ ସଭାର ଆୟୋଜନ, ମରୁଡି ଓ ଅନ୍ୟାନ୍ୟ ପ୍ରାକୃତିକ ବିପର୍ଯ୍ୟୟରେ ସମସ୍ତ ସାହାଯ୍ୟ ଆଦି ବିଭିନ୍ନ କାର୍ଯ୍ୟରେ ତାଙ୍କର ଋଷି ପ୍ରାଣର ମହନୀୟତା ସର୍ବତ୍ର ଓ ସର୍ବଦା ପ୍ରକାଶ ପାଉଥିଲା । ମାତ୍ର ୩୪ ବର୍ଷ ବୟସରେ ୧୯୧୮ ମସିହାରେ ସେ ପ୍ରାଣତ୍ୟାଗ କରିଥିଲେ ।

ରାଜା ସୁରପ୍ରତାପଙ୍କ ପରେ ତାଙ୍କ ପୁତ୍ର ରାଜା ଶଙ୍କର ପ୍ରତାପ ରାଜଗାଦୀ ଅଧିକାର କଲେ ୧୯୧୮ ମସିହାରେ । ସେତେବେଳକୁ ରାଜା ଶଙ୍କର ପ୍ରତାପ ଥିଲେ ନାବାଳକ, ବୟସ ମାତ୍ର ୧୪ ବର୍ଷ । ତେଣୁ ସେ ସାବାଳକ ହେବା ପର୍ଯ୍ୟନ୍ତ ଢ଼େଙ୍କାନାଳ କୋର୍ଟ ଅଫ ୱାର୍ଡର ଭାବରେ ବ୍ରିଟିଶର ପ୍ରତ୍ୟକ୍ଷ ଶାସନ ପ୍ରଚଳିତ ଥିଲା । ଦେୱାନ ଭାବରେ ନିଯୁକ୍ତ ହେଲେ ସ୍ୱର୍ଗତଃ ରାଜକିଶୋର ତ୍ରିପାଠୀ । ରାଜା ଶଙ୍କର ପ୍ରତାପ ୧୯୨୫ ମସିହାରୁ ସାବାଳକ ହେଲାପରେ ଗଡଜାତ ମିଶ୍ରଣ ହେବା ପର୍ଯ୍ୟନ୍ତ ୧୯୪୭ ମସିହା ପର୍ଯ୍ୟନ୍ତ ଶାସନ କଲେ ।

ଢ଼େଙ୍କାନାଳ ରାଜବଂଶ ସ୍ଥାପନ ହେଲା ୧୫୩୦ ମସିହାରୁ ମାତ୍ର ୭ କୋଶ ପରିମିତ ଅଂଚଳର କରମୂଳ ପାଟଣାକୁ ନେଇ । ସେତେବେଳର ବିଦ୍ୟା, ବୁଦ୍ଧି, କଳା, କୌଶଳ, ଶକ୍ତି, ସାମର୍ଥ୍ୟ ଏବଂ ମାନବୋଚିତ୍ତ ଶାସନ ପ୍ରକ୍ରିୟା ବଳରେ ଏହି ବଂଶର କୃତ ବିଦ୍ୟ ରାଜପୁରୁଷମାନେ ଏହାର ଅଭିବୃଦ୍ଧି କରିଥିଲେ ୧୨୦ କୋଶ ପରିମିତ ଅଂଚଳ ପର୍ଯ୍ୟନ୍ତ । ତାହା ଥିଲା ଅଧୁନା କାମାକ୍ଷାନଗର ଓ ଢ଼େଙ୍କାନାଳ ସଦର ସବ୍‌ଡିଭିଜନକୁ ନେଇ ଢ଼େଙ୍କାନାଳ ରାଜ୍ୟ । ପାରିପାର୍ଶ୍ୱିକ ପରିସ୍ଥିତି ପର୍ବତର ଅଝାଳ ଜଙ୍ଗଲ ଭିତରେ ଯାତାୟତର ଅସୁବିଧା ପୁରୁଣା କାଳର ଅସ୍ତ୍ରଶସ୍ତ୍ର ତାଲିମ ଦେଇ ସୁସ୍ଥ ସବଳ ସୈନିକ ଶକ୍ତିର ସଂଗଠନ ପ୍ରଶାସନିକ କ୍ରିୟା କର୍ମରେ ଶୃଙ୍ଖଳତା, ସଂଯମ, ନ୍ୟାୟ ନିର୍ଭିକତା ସ ସମାନତା ରକ୍ଷା ତଥା ରଜା ପ୍ରଜା ଭିତରେ ଏକ ବିଶ୍ୱାସ ଯୋଗ୍ୟ ଆପଣାର ଭାବ, ଏହି ପରି ସମସ୍ତ ସଦ୍‌ଗୁଣର ଅନୁଶୀଳନରେ ଢ଼େଙ୍କାନାଳର କିର୍ତ୍ତୀମାନ ଈଶ୍ୱର ବିଶ୍ୱାସୀ ରଣଜୟୀ ରାଜପୁରୁଷମାନେ ଯୁଦ୍ଧରେ କେବଳ ରାଜ୍ୟ ବିସ୍ତାର ପୂର୍ବକ ଢ଼େଙ୍କାନାଳର ପରିସୀମା ଅଭିବୃଦ୍ଧି କରିନଥିଲେ; କରିଥିଲେ ଅଧିକୃତ ଅଂଚଳ ପ୍ରଜାମାନଙ୍କର ମନକୁ ଓ ଜୀବନ ଜାପନର ଧାରାକୁ ପରିପୂର୍ଣ୍ଣମନରେ ଏକାନ୍ତ ଆପଣାର । ରାଜାଙ୍କ କୀର୍ତ୍ତିରେ ପ୍ରଭାବିତ ହୋଇ ସଦାଯୁଦ୍ଧ ବିଜୟୀ ଖଣ୍ଡାୟତ ପାଇକ ସେନାନୀ କର୍ତ୍ତବ୍ୟନିଷ୍ଠ ଚିତ୍ତରେ ପାରମ୍ପରିକ ଶୃଙ୍ଖଳିତ ଯୁଦ୍ଧ ବିଦ୍ୟାରେ ଦେଲେ ପାରଙ୍ଗମତାର ପରିଚୟ । ଏହି ବଂଶର ରାଜାମାନଙ୍କର ସଦାଚାର, ବୁଦ୍ଧି ଦୀପ୍ତ

ଜ୍ଞାନ ଏବଂ ରାଜଶକ୍ତିର ନେତୃତ୍ୱ ପ୍ରତି ସର୍ବଦା ଅନୁପ୍ରାଣିତ ହୋଇଥିଲେ ଏବଂ ଜନ୍ମସ୍ଥାନ ପ୍ରତି ଅନୁରକ୍ତ ରହି ତାହାର ନିରାପତ୍ତା ଏବଂ ଗୌରବକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ସଦା ତତ୍ପର ହୋଇ ରହିଥିଲେ । ରାଜା ପ୍ରଜାର ସମ୍ପର୍କରେ ଥିଲା ଆତ୍ମୀୟତା, ପରମ ବିଶ୍ୱାସ, ଯଥାଯୋଗ୍ୟ ସମ୍ମାନ ଅପୂର୍ବ ବୁଝାମଣା ଓ ସାହାଯ୍ୟ ସହଯୋଗର ଅନୁଶାସନ । ବଂଧୁତ୍ୱର ଚରମ ବିକାଶ ପ୍ରତ୍ୟେକ କ୍ଷେତ୍ରରେ ଅନୁଭୂତ ହେଉଥିଲା ।

କେବଳ ଏହି ସବୁ କାରଣରୁ ଢ଼େଙ୍କାନାଳ ଦେବାଶିଁବାଦ ପାଇ ପ୍ରଜାମାନଙ୍କର ଅକୁଣ୍ଠିତ ପୂର୍ଣ୍ଣ ସମର୍ଥନ ମୂଳକ ସହଯୋଗ ଯୋଗୁଁ ଆରମ୍ଭ କାଳରୁ ରାଜ୍ୟ ବିସ୍ତାର, ଦାନ, ଦୟା, ଧର୍ମ, ଜ୍ଞାନ, ନ୍ୟାୟ, ନିରପେକ୍ଷ ଓ ନିର୍ଭୟର ପ୍ରାଣବନ୍ତ ପ୍ରତୀକ ଭାବରେ ପ୍ରତ୍ୟେକ ସମୟରେ ଏହି ବଂଶର ବିଭିନ୍ନ ରାଜା ଇତିହାସର ପ୍ରତ୍ୟେକ ପୃଷ୍ଠାରେ ଆତ୍ମପ୍ରକାଶ କରିଛନ୍ତି । ଏହା କିମ୍ବଦନ୍ତୀ କିମ୍ବା କାହାଣୀ ନୁହେଁ ଏହା ନିଛକ ସତ୍ୟ । ଓଡିଶା ତଥା ବାହାରର ବହୁ ସମ୍ମାନିତ ଓ ପଣ୍ଡିତ ମାନ୍ୟବ୍ୟକ୍ତି ଯେଉଁମାନେ ନିର୍ବିବାଦ ବା ନିର୍ଦ୍ଦଳୀୟ ଏବଂ ଯେଉଁମାନଙ୍କୁ ସେକାଳ ଓ ଏକାଳ ସ୍ୱୀକୃତି ଦେଇଛି ସର୍ବଜନ ପ୍ରିୟ ବ୍ୟକ୍ତି ଭାବରେ ସେହିମାନଙ୍କ ଲିଖିତ ପତ୍ର, ପତ୍ରିକା, ସାହିତ୍ୟ ଓ ଇତିହାସରେ ଏହା ଲିପିବଦ୍ଧ ହୋଇଛି । ଉତ୍କଳ ଦୀପିକା, ମୁକୁର ପ୍ରଭୃତି ପତ୍ର ପତ୍ରିକା, ସମର ତରଙ୍ଗ , ମଧୁପୁର କୋଇଲି, ବଳଭଦ୍ର ବୋଲି, ରସ ବିନୋଦ, ବୁଢାରଙ୍କ ଭଳି ପୁସ୍ତକ ଏବଂ ଅଧୁନା ପ୍ରକାଶିତ ଦେଶକାଳ ପାତ୍ର ପ୍ରଭୃତି ପୁସ୍ତକରୁ ତଥା କବଡେନ୍ ରାମସ୍ୱେଙ୍କର Feudatory States of Orissa, Sir John Beans ଙ୍କର Memories of Bengal Civilians ଏବଂ Princes of India ସଂସ୍କରଣ ଓ ରୋଜିଟା ଫରବସଙ୍କର India of the Princes ପ୍ରଭୃତିରେ ଅନେକ ଅନେକ ସତ୍ୟକାହାଣୀ ଉଲ୍ଲେଖ ରହିଛି । ଏହି ଗୌରବମୟ କାହାଣୀର ଅଲିଭା ଦୀପ ଢ଼େଙ୍କାନାଳ ରାଜବଂଶକୁ ତେଜୋଦୀପ୍ତ କରିଛି ଓ କାଳଜୟୀ କରିଛି ଏଥିରେ ତିଳେ ହେଲେ ସନ୍ଦେହ ନାହିଁ ।

ଢ଼େଙ୍କାନାଳ ରାଜବଂଶର କେହିହେଲେ ନିଜର ଆତ୍ମ ବଡିମା ବା ଆତ୍ମ ଗୌରବ ନିଜ ମୁହଁରେ କହି ଯାଇ ନାହାନ୍ତି । ଦାନ, ଦୟା, ଧର୍ମ କରିବା ବେଳେ ନିଜର ଗର୍ବ ଓ ଗୌରବ ପାଇଁ ଆତ୍ମ ପ୍ରଚାର କରିବାରେ ଧର୍ମ ଓ କର୍ମରେ ହାନୀ ହୁଏ, ଏହା ବେଶ୍ ଉପଲବ୍ଧି କରିଥିଲେ ଏହି ବଂଶର ରାଜ ପୁରୁଷମାନେ । କିନ୍ତୁ ସେମାନଙ୍କର ଏହି କାର୍ଯ୍ୟ ଉଲ୍ଲେଖ ସେମାନଙ୍କର ପରବର୍ତ୍ତୀ ସମୟରେ ବହୁ ପତ୍ର ପତ୍ରିକା ବା ବିଭିନ୍ନ ଇତିହାସରେ ଯଥାର୍ଥ ଅନୁଶୀଳନ ପରେ ଉଲ୍ଲେଖ କରାଯାଇଛି । ଏହାର ଭୂରି ଭୂରି ପ୍ରମାଣ ରହିଛି ସେ କାଳର ଅନେକ ପ୍ରଖ୍ୟାତନାମା ଲେଖକଙ୍କ ଦ୍ୱାରା ଲିଖିତ ପୁସ୍ତକ ଆଦିରେ । ଏ କାଳରେ ବହୁ କଥିତ

ଯଶ ସ୍ୱନାମଧନ୍ୟ ଲେଖକଙ୍କ ପୁସ୍ତକ ଆଦିରେ ଏ ରାଜବଂଶର ଉଜ୍ଜ୍ୱଳ ବ୍ୟକ୍ତିତ୍ୱ , ନିର୍ମଳ ଚରିତ୍ର, ଉଦାରତା ସହୃଦୟତା ଏବଂ ବିଭିନ୍ନ କାର୍ଯ୍ୟ ସମ୍ପର୍କରେ ଅନେକ କିଛି ଉଲ୍ଲେଖ ରହିଛି । ଜଷ୍ଟିସ୍ ରାଧାକିଶୋର ଦାସଙ୍କ ଲିଖିତ ଆତ୍ମ ଜୀବନୀ ରାଜକିଶୋର ରାମଙ୍କ ଲିଖିତ ଆତ୍ମଜୀବନୀ, କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଲିଖିତ ଆତ୍ମଜୀମନୀ, ଜଷ୍ଟିସ୍ ହରିହର ମହାପାତ୍ରଙ୍କ ଆତ୍ମଜୀବନୀ ପ୍ରଭୃତି ବହିରେ ଅନେକ କିଛି ସାର୍ଥକ ଓ ସତ୍ୟକାହାଣୀ ସହିତ ରାଜନୀତି ଓ ରାଜନୈତିକ ନେତାମାନଙ୍କ ସମ୍ପର୍କରେ ଆଲୋଚନା କରାଯାଇଛି । ଏହି ଲେଖା ସହିତ ଆଜିର ଶାସନ ଧାରା ଶାସନକୁ ନିୟନ୍ତ୍ରିତ କରୁଥିବା ଜନନାୟକ ବା କର୍ତ୍ତାମାନଙ୍କର କାର୍ଯ୍ୟକଳାପ ସମଗ୍ର ଦେଶର ଆଭ୍ୟନ୍ତରୀଣ ପରିସ୍ଥିତି ମଧ୍ୟରେ ସାଧାରଣ ଲୋକଙ୍କର ଚଳ ପ୍ରଚଳ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ସ୍ଥିତିର ଅନୁଶୀଳନ ଏବଂ ଧର୍ମ ଓ ଜାତୀୟତାରେ ଛଳନା ପୂର୍ଣ୍ଣ ଚାତୁରୀ ଆଦିକୁ ନିରଙ୍କୁଶ ସମୀକ୍ଷାକଲେ ଅଥବା ନ୍ୟାୟ ନିରପେକ୍ଷ ଭାବରେ ଅନୁଶୀଳନ କଲେ ଭଲ ମନ୍ଦର ବିଚାର ବେଶ୍ ଉପଲବ୍ଧି କରିହେବ । ସବୁବେଳ କିଛି ଲୋକ ସତ୍ୟକୁ ଲୁଚାଇ ଅସତ୍ୟର, ଅନ୍ୟାୟର, ଅନୀତି ବା ଦୁର୍ନୀତିର ଆଶ୍ରୟ ନେଇ ଅନେକ ଗର୍ହିତ କାର୍ଯ୍ୟ କରି ମଧ୍ୟ ସେମାନଙ୍କର ଛଳନା ପୂର୍ଣ୍ଣ ଚାତୁରୀରେ ନିଜକୁ ସମାଜରେ ସେହିକିଛି ଅଳ୍ପ ସମୟ ପାଇଁ ପ୍ରତିଷ୍ଠା କରିଯାନ୍ତି । କିନ୍ତୁ ଏହା ଲୁଚି ରହେ ନାହିଁ ଏବଂ ତିଳ ତିଳ କରି ପ୍ରକାଶିତ ହୋଇପଡେ । ସେହି ଛଳନାକାରୀ ଚତୁର ଲୋକଙ୍କର ଆଚରଣ ଆପଣାଛାଏଁ ଖସିପଡେ ନିନ୍ଦିତ ଚରିତ୍ର ଖୋଳପାରୁ ବାହାରି ଆସିଲାପରେ ପୁଣି ଆଉ ଛଳନାର ଚରିତ୍ର ଖୋଜନ୍ତି । ଛଳନାବଳରେ ସେମାନେ ଆଉ ଏକ ରୂପରେ ଆତ୍ମ ପ୍ରକାଶ କରନ୍ତି ଏହାଦ୍ୱାରା ବ୍ୟକ୍ତିର ଅଥବା ସମାଜର ନୈତିକ ଅଧୋଃପତନ ଘଟିଥାଏ ।

ଏହି ବଂଶର ରାଜପୁରୁଷମାନେ ଦେଶର ଅନ୍ୟତମ କୃତୀ ସନ୍ତାନ ସୁଭାଷବୋଷ, ତାଙ୍କର ପିତା ଜାନକୀନାଥ ବୋଷ ତଥା ପରିବାର ବର୍ଗଙ୍କ ସହିତ ଘନିଷ୍ଠ ସଂପର୍କ ରଖିଥିଲେ । ଜତୀୟ ନେତା ସୁଭାଷ ବୋଷଙ୍କର ଅନ୍ତର୍ଦ୍ଧାନ ହେବାରେ ସହାୟତା କରିଥିବାରୁ ରାଜା ଶଙ୍କର ପ୍ରତାପ, ମୋର ଚତୁର୍ଥ ଦିଅର ଟିକିଭାଇ ଓ ରାଜକୁମାର ଗୌରେନ୍ଦ୍ର ପ୍ରତାପ ସିଂହ ଦେଓ ତଥା ମୋ ବିରୁଦ୍ଧରେ ୱାରେଣ୍ଟ ଜାରି କରାଯାଇଥିଲା । ମାତ୍ର ଢ଼େଙ୍କାନାଳ ରାଜା 'A' ଶ୍ରେଣୀର ଶାସକ ହୋଇଥିବାରୁ ତାଙ୍କୁ ଗିରଫ କରିବା ସହଜ ହୋଇନଥିଲା । ଏହିସବୁ ଦୃଷ୍ଟିରୁ ଆମକୁ ନାନାବିଧ ନିର୍ଯ୍ୟାତନା ଓ ଲାଞ୍ଛନା ସହିବାକୁ ପଡିଥିଲା ଓ ରାଜ୍ୟ ତଥା ରାଜପ୍ରସାଦ ଛାଡି ଚାଲି ଯିବାକୁ ପଡିଥିଲା । ଆମମାନଙ୍କ ବିରୁଦ୍ଧରେ ୱାରେଣ୍ଟ ଲାଗୁ ରହିଥିବା

ପର୍ଯ୍ୟନ୍ତ ୧୯୪୪ରୁ ୧୯୪୬ ମସିହା ଯାଏ ଆମେ ସମସ୍ତେ ସ୍ୱଦେଶରେ ଜାତ୍ତାବର ଜୀବନ ତଥା ବଲାଙ୍ଗିର, ଷଢେଇକଳା, ବୌଦ, କଲିକତା, କାଶ୍ମୀର, ପଟିଆଲା, ଓଟି (Ooty) , ତ୍ରାଭାଙ୍କୋର, ପଞ୍ଚକୋଟ, ଦିଲ୍ଲୀ, କୋଚିନ୍, ସିଂହଳ ଲାହୋର ଓ ରାଓଲପିଣ୍ଡି ଆଦି ବିଦେଶ ରାଜ୍ୟ ମାନଙ୍କରେ ଶରଣାର୍ଥୀ ଜୀବନ ଯାପନ କରିବାକୁ ବାଧ ହୋଇଥିଲୁ । ଏହିଭଳି ଘଡିସନ୍ଧି ମୁହୂର୍ତ୍ତରେ ରାଜା ଶଙ୍କର ପ୍ରତାପଙ୍କର ଧୈର୍ଯ୍ୟ ଓ ସାହସୀକତାର ଜ୍ୱଳନ୍ତ ଉଦାହରଣ ଶ୍ରୀ ଭି.ପି. ମେନନ୍‌ଙ୍କର "Story of the Intigration of Indian States", ସରଦାର କେ.ଏମ. ପାନିକର ଏବଂ ପଣ୍ଡିତ H.N. Kunjru ଓ Dr. B.C. Roy ଙ୍କର ମନ୍ତବ୍ୟ ଏବଂ Charles Chenevix Trench ଙ୍କର Viceroy's Agent ନାମକ ପୁସ୍ତକରେ ସ୍ପଷ୍ଟ ଭାବରେ ପରିସ୍ଫୁଟିତ ହୋଇଛି । Viceroy's Agent ର କେତେକ ଅଂଶ **Annexure IV** ରେ ପ୍ରଦତ୍ତ କରାଗଲା ।

## Post Script

୯, ବିଦ୍ୟୁତ ମାର୍ଗ, ଭୁବନେଶ୍ୱର,
ତା ୨୫-୪-୧୯୯୭

ଅଳ୍ପଦିନ ତଳେ ଢ଼େଙ୍କାନାଳରେ ବାଜିରାଉତ ସମ୍ବନ୍ଧରେ ଗୋଟିଏ ସଭା ହୋଇଥିଲା । ସେଥିରେ ବଡ ବଡ ଜନନାୟକମାନେ ବାଜିରାଉତ ସମ୍ବନ୍ଧରେ ଅନେକ କଥା କହିଗଲେ । ଢ଼େଙ୍କାନାଳ ଶାସନ ସମ୍ବନ୍ଧରେ ବିଷୋଦଗାର କରିଛନ୍ତି । ୧୯୩୮ ମସିହାରେ ପ୍ରଜାମଣ୍ଡଳ Agitation ପ୍ରାୟ ଅନେକ ଗଡଜାତରେ ହୋଇଥିଲା । ଢ଼େଙ୍କାନାଳର ଭୁବନ ଗାଁରେ ପ୍ରଜାମଣ୍ଡଳଲିଷ୍ଟ ମାନେ ନାନା ଭାବପ୍ରବଣ ବକ୍ତୃତା ସବୁ ଦେଲେ । ଲୋକେ ଉତ୍ୟକ୍ତ ହୋଇ ଉଠିଲେ । ସେମାନଙ୍କୁ ଆୟତ୍ତ କରିବା ଦୁଃସାଧ ହୋଇ ଉଠିଲା । ବ୍ରିଟିଶ ସରକାର ପଞ୍ଜାବ ତଥା ଅନ୍ୟାନ୍ୟ ଦେଶୀୟ ରାଜ୍ୟରୁ ଫୌଜ ଆଣି, ଖରସୂଆଁ , ଷଢେଇକଳା, ଖଇରାଗଡ ଓ ଢ଼େଙ୍କାନାଳର ଫୌଜ ସବୁକୁ ମିଶାଇ Eastern State Agency Joint Police ବାହୀନି ଗଠନ କଲେ ଓ ପ୍ରଜାମଣ୍ଡଳ Agitation କୁ ଦବାଇବାକୁ ଚେଷ୍ଟା କଲେ କିନ୍ତୁ ଲୋକେ ମାନିଲେ ନାହିଁ । ଦିନକର କଥା, ପ୍ରଜାମଣ୍ଡଳିଷ୍ଟ ମାନଙ୍କ କଥାରେ ପଡି ଲୋକେ ଯେତେବେଳେ କିଛି ଶୁଣିବାକୁ ଚାହିଁଲେ ନାହିଁ ତା ପରିବର୍ତ୍ତେ ଉଶୃଙ୍ଖଳ ହୋଇ ଉଠିଲେ, ଲୋକଙ୍କୁ ଭୟଭୀତ କରିବା ଉଦ୍ଦେଶ୍ୟରେ ଫାୟାରିଂ କରାଗଲା । ସେଥିରେ ମଧ Agitator ମାନେ ଦବିଲେ ନାହିଁ । ଗଡଜାତ ପୋଲିସ ମାନଙ୍କୁ ଗୋଳା ବାରୁଦ ଦିଆ ହେଉନଥିଲା । କେବଳ Blank Fire ପାଇଁ ଯେତିକି ଗୋଳାବାରୁଦ ଦରକାର ସେତିକି ସେମାନଙ୍କୁ ଦିଆ ହେଉଥିଲା । ବାଜିରାଉତ ଯେ Firing ରେ ମରିଛି ଏ କଥା ନିଶ୍ଚିତ । ଗୁଳି ଫାୟାରିଂ ରେ ଛସାତ ଜଣ ଖଣ୍ଡିଆଖାବରା ହୋଇଛନ୍ତି ଏକଥା ମଧ ନିଶ୍ଚିତ କିନ୍ତୁ କାହା ଗୁଳିରେ ଏପରି ଘଟଣା ହେଲା ଓ ବାଜି ରାଉତ ମଲା ଏହା କହିବା ଦୁସାଧ । ମୋ ସ୍ୱାମୀ ରାଜା ଶଙ୍କର ପ୍ରତାପଙ୍କୁ ଦୋଷ ଦେଉଛନ୍ତି କିନ୍ତୁ ଢେଙ୍କାନାଳ ରାଜପ୍ରାସାଦରୁ ଭୁବନ ୨୫ ମାଇଲ ଦୂର । ଶୁଣିବାକୁ ମିଳିଲାଯେ ପୋଲିସ୍ ଫୌଜ ଯେତେବେଳେ ଡଙ୍ଗାରେ ବସି ଭୁବନ ଗାଁରୁ ଆସିବାକୁ ବାହାରିଲେ ସେତେବେଳେ ଡଙ୍ଗାରେ ଥିବା ନାଉରିମାନେ ଡଙ୍ଗାଛାଡି ପଳାଇଲେ । ଢ଼େଙ୍କାନାଳ ଫୌଜମାନେ ବନ୍ଧୁକ Bayonet ରେ ଦଉଡି କାଟିଦେଇ ବାଉଲାମାରି ଭୁବନରୁ ନଦୀ ଏପଟକୁ ଆସିଲେ । ବାଜିରାଉତ କାହା ଗୁଳିରେ ମଲା ଏକଥା ନିଶ୍ଚିତ କରି କହି ହେବ ନାହିଁ । ବାଜି ରାଉତ ମଲାପରେ ତାର ଶବକୁ ନେଇ କଟକରେ ପ୍ରୋସେସନ କରି ବୁଲାଇଥିବା ମୋ ସମ୍ବନ୍ଧୀ ମହାରାଜା କଳାହାଣ୍ଡି ଶ୍ରୀ ପ୍ରତାପ କେଶରୀ ଦେଓ ପୂର୍ବତନ ଏମ.ପି. ଯେ କି ସେତେବେଳେ ରେଭେନସା କଲେଜରେ ପାଠ ପଢୁଥିଲେ ସେ ଦେଖିଛନ୍ତି । ସମାଜରେ ବାଜିରାଉତର କଥା ଓ ତାର ହିଷ୍ଟୋରି ପଢିଲା ବେଳକୁ

''ସମାଜ'ର ଉପର ସ୍ତମ୍ଭରେ ଲେଖା ଥିବାର ଦେଖିଲି :-

''ସିରିଡି ସାଁଇ ବାବା ତାଙ୍କର ଜଣେ ଶିଷ୍ୟକୁ କହିଛନ୍ତି - ଶିଷ୍ୟ ଜଣକ ଯା ବିରୁଦ୍ଧରେ ସାଁଇ ବାବାଙ୍କୁ କହୁଥିଲା ସେ ଅନୁପସ୍ଥିତ ଥିଲେ । ବାବା କହିଲେ '' ଯେଉଁ ଲୋକ ପର ନିନ୍ଦା କରେ ଘୁଷୁରି ଯେପରି ନିଜର ମଳକୁ ଜିଭରେ ଚାଖି ଆନନ୍ଦ ପାଏ, ଏ ସେପରି କଥା ।''

ଅନେକ ପୂଣ୍ୟବଳରେ ଆମେ ମନୁଷ୍ୟ ଜନ୍ମ ପାଇଛେ । ହରିହରି ରାମ ନାମ ଜପ ନକରି କେବଳ ପରନିନ୍ଦା ପର କୁତ୍ସାରଟନା କରିବା ପର ଶ୍ରୀକାତରତା ଅହଂଭାବ ଶୋଭାପାଏ ନାହିଁ ।

୧୯୫୭ ମସିହାରେ ମୁଁ କାମାକ୍ଷାନଗର Constituency ରୁ ଗଣତନ୍ତ୍ର ପରିଷଦରୁ ରାଜ୍ୟ ବିଧାନସଭା ଓ ଶ୍ରୀ ସୁରେନ୍ଦ୍ର ମହାନ୍ତି ପାର୍ଲିଆମେଣ୍ଟ ପାଇଁ ଛିଡା ହୋଇଥିଲେ । ଭୂବନ ବାଟ ନଦୀପାର ହୋଇ ଅନେକଥର ଯିବାଆସିବା ମୁଁ କରିଛି । ଏପରିକି ବାଜିରାଉତର ମା ଘରକୁ ମଧ୍ୟ ଯାଇଛି । ତାର କେବେ ରାଜାରାଜୁଡା ଶାସନକୁ ଆକ୍ଷେପ  କରି କହିବାର ମୋ ମନେ ପଡେ ନାହିଁ । ବରଂ ମୋତେ ଯଥୋଚିତ ସମ୍ମାନ ଦେଖାଯାଇଛି ।  ମୁଁ ଯେତେବେଳେ ଭୋଟପାଇଁ ଗାଁ ଗାଁ ବୁଲୁଥିଲି, ମୋ ସାଙ୍ଗରେ ବୁଲିବାକୁ ଓ ଢେଙ୍କାନାଳ ବାସୀଙ୍କୁ ଦେଖାକରି ତାଙ୍କର ସୁଖ ଦୁଃଖ କଥା ପଚାରିବାକୁ ରାଜା ସାହେବ ଶଙ୍କର ପ୍ରତାପ ସିଂହଦେଓ ମହିନ୍ଦ୍ର ବାହାଦୂର ଓ ମୋର ପୂଜନୀୟା ଶାଶୁ କୃଷ୍ଣଚନ୍ଦ୍ର ପ୍ରିୟା ଦେବୀ ମୋ ସାଙ୍ଗରେ ଆସୁଥିଲେ । ତାଙ୍କର ଏ ଉଦାର ଗୁଣ ମୁଁ ଜୀବନରେ ଭୁଲି ପାରିବି ନାହିଁ । ଏଥି ପାଇଁ ତାଙ୍କୁ ମୋର ପୂତ ଓ ଭକ୍ତି ପୂର୍ଣ୍ଣ ପ୍ରଣାମ ଜଣାଉଛି ।

ଇଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ ସମସ୍ତଙ୍କ ଭାଗ୍ୟ ଡୋରୀ
ମାତ୍ର ନିଜ ଭାଗ୍ୟ କାଳ ହସ୍ତେ ଏହା ପକାନ୍ତି ହେଳେ ପାଶୋରୀ
ଶକ୍ତି ନାହିଁ ବସ କାହାରି ଜଗତେ ନିୟତିକି ନେବ ନିଜ ଇଛାମତେ ।
(ରାଧାନାଥ ଗ୍ରନ୍ଥାବଳୀରେ ଲେଖା)

ମୋର ଦ୍ୱିତୀୟ ଦିଅର ଶ୍ରୀ ଶ୍ରୀଶେଷ ପ୍ରତାପ ସିଂହଦେଓ ଚତୁର୍ଥ ଦିଅର ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେଓ ଶମ୍ଭୁକ୍ଷେତ୍ର କପିଳାସ ଓ ବ୍ରଜନାଥ ବଡଜେନାଙ୍କ ସମର ତରଙ୍ଗକୁଓଡିଆରେ ଅନୁବାଦ କରି ସାହିତ୍ୟ ଏକାଡେମୀ ପୁରସ୍କାର ପାଇଛନ୍ତି ।

ଅଭାଗ୍ୟ ବସତ ମୋର ଦ୍ୱିତୀୟ ଦିଅର ଶ୍ରୀ ଶ୍ରୀଶେଷ ପ୍ରତାପ ଆମ୍ଭମାନଙ୍କୁ ଛାଡି ସ୍ୱର୍ଗଧାମକୁ ଚାଲିଯାଇଛନ୍ତି । ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେଓ ଓ ସାନଭାଇ ଶ୍ରୀ ସମରେନ୍ଦ୍ର ପ୍ରତାପ ସିଂହ ଦେଓ ଜୀବିତ ଅଛନ୍ତି । ତାଙ୍କର ଅମର ଜୀବନ ଭଗବାନଙ୍କ ଠାରେ ପ୍ରାର୍ଥନା କରୁଛି ।

ଶ୍ରୀ ଜଗନ୍ନାଥଙ୍କୁ ଧ୍ୟାୟୀ ମୋର ଲେଖା ଶେଷ କରୁଛି । Ratna Prabha Devi

(ରତ୍ନପ୍ରଭା ଦେବୀ)

# Post Script

୯, ବିଦ୍ୟୁତ ମାର୍ଗ, ଭୁବନେଶ୍ୱର,
ତା ୨୫-୪-୧୯୯୭

ମୋର ଜୀବନର କେତେଗୁଡିଏ କାହାଣୀ ଉଲ୍ଲେଖ କରୁଛି । ୧୯୨୪ ମସିହାରେ ମୋର ଶୁଭବିବାହ ରାଜା ଶଙ୍କର ପ୍ରତାପ ମହୀନ୍ଦ୍ର ବାହାଦୂର ଢ଼େଙ୍କାନାଳଙ୍କ ସହ ସମ୍ପର୍ଣ୍ଣ ହୋଇଥିଲା । ମୁଁ ତାଙ୍କର ମାମୁଁ ଝିଅ ଭଉଣୀ ହୋଇଥିଲେ ହେଁ "ଦକ୍ଷିଣେ ମାତୁଳ କନ୍ୟା"ହିସାବରେ ପଣ୍ଡିତମାନେ ଆମ ବିବାହକୁ ମତ ଦେଇଥିଲେ । ଆମ ବିବାହ ଜୀବନ ସୁଖରେ ଅନେକ ଦିନ କଟି ଯାଇଥିଲେ ହେଁ ମୋର ଦୀର୍ଘକାଳ ସନ୍ତାନ ନହେବା ହେତୁ ଠାକୁର ଦେବତାଙ୍କ ପୂଜା ଆରଧନା କରି ଶେଷରେ ମା କାମାକ୍ଷା ଧାମକୁ ଯାଇ ପଣ୍ଡାମାନେ ଯାହା ପୂଜା ବିଧି ଦେଲେ ସେହି ଅନୁସାରେ ପୂଜାକରି ଶେଷରେ କାମାକ୍ଷାପ୍ରସାଦଙ୍କୁ ପୁତ୍ର ରୂପେ ପାଇଲୁ ଓ ଆମର ଜୀବନ ଆହୁରି ସୁଖ ସ୍ୱାଚ୍ଛନ୍ଦରେ କଟିଲା ।

ମୋର ଶାଶୁ ଜଣେ ଧର୍ମ ପରାୟଣାଥିଲେ । ମୋର ଶଶୁରଙ୍କ ବିୟୋଗ ପରେ ସେ ସନ୍ୟାସିନୀ ଭାବରେ ଜୀବନ କଟାଇଥିଲେ । ପୂଜା ଅର୍ଚ୍ଚନା, ଦେବାଦେବୀଙ୍କଠାରେ ଅଗାଧ ଭକ୍ତି ତାଙ୍କର ଥିଲା । ଶ୍ରୀକୁଞ୍ଜକାନ୍ତଠାରେ ମୋର ପୂଜନୀୟ ଶଶୁର ରାଜର୍ଷୀ ସୁରପ୍ରତାପ ମହିନ୍ଦ୍ର ବାହାଦୂର ଦୁଇଜଣଙ୍କନାମରେ ଗୌର କୃଷ୍ଣ ଧାମ ଅଟ୍ଟାଳିକା ନିର୍ମାଣ କରିଥିଲେ । ସେ ରାଧାକୃଷ୍ଣ ଅଷ୍ଟ ସଖୀଙ୍କ ସହ ଦୈନନ୍ଦିନ ପୂଜାକରି କିଛିଟା ସନ୍ତନା ଲାଭ କରୁଥିଲେ । ସେ ଛୋଟ ଛୋଟ ବାଳକବାଳୀକା ମାନଙ୍କ ପାଇଁ 'ଭକ୍ତି ପୂଷ୍ପାଞ୍ଜଳି' ନାମକ ଗୋଟିଏ ବହି ଛପାଇଥିଲେ । କୋମଳମତୀ ବାଳକ ବାଳୀକାମାନେ ଯେପରି ବୁଝିପାରିବେ ସେହି ଅନୁସାରେ ସ୍ୱରଲିପି ଦେଇ ବହିଟି ଛପା ହୋଇଥିଲା। ବଙ୍ଗଳାରେ "ଭକ୍ତିକଥା" ନାମରେ ଗୋଟିଏ ବହି ମଧ ଲେଖିଥିଲେ । ଶ୍ରୀ କୁଞ୍ଜକାନ୍ତ ଓ ଅନ୍ୟାନ୍ୟ ଦେବାଦେବୀଙ୍କ ସ୍ତୁତି ପ୍ରଭୃତି ତାଙ୍କର ଅନେକ ଲେଖା ଅଛି । ହାରମୋନିୟମ ଶିକ୍ଷା ଏବଂ ଆହୁରି ଅନେକ ପୁସ୍ତକ ଲେଖିଥିଲେ ।

ମୋର ଦ୍ୱିତୀୟ ପୁତ୍ର ପଟ୍ଟାୟତ ମାତୃପ୍ରସାଦ ସିଂହଦେଓ । ତାର ନାମ ମଧ ଆମେ ଦେବୀଙ୍କ ନାମରେ ରଖିଥିଲୁ । ସେ ଖୁବ୍ ଧର୍ମପରାୟଣ । ସେ ଗୀତା, ମହାଭାରତ, ରାମାୟଣ ଇତ୍ୟାଦି ଧର୍ମ ପୁସ୍ତକ ପଢିବାକୁ ଖୁବ୍ ଭଲ ପାଏ । ଅନେକ ଧର୍ମଗ୍ରନ୍ଥ ସଂଗ୍ରହ କରି ରଖିଛି । ହିନ୍ଦୀ, ଓଡିଆ, ଇଂରାଜୀ ଖବର କାଗଜ ପ୍ରତିଦିନ ପଢି ନାମ ଅର୍ଜନ କରିବାକୁ ଭଲପାଏ । ନିଜର ଭାଇ ବନ୍ଧୁ ଓ ଆଗନ୍ତୁକ ଆସିଲେ ସେମାନଙ୍କର ଚର୍ଚ୍ଚା କରି ଆନନ୍ଦ ପାଏ । ତାକୁ ପିଲାଦିନେ ଜର୍ମାନ ମିଜେଲସ୍ ଓ ପାରା ଟାଇଫଏଡ୍ ହେବାରୁ ପରେ କାନ ଓ ଗଳାରେ ସାମାନ୍ୟ ଦୋଷ ଦେଖାଦେଲା । ତାକୁ ଇଉରୋପ ନେଇ ଆମେ ଦେଖାଇଥିଲୁ । ଇଂଲଣ୍ଡରେ ମାଞ୍ଚେଷ୍ଟରରେ ଡେଫ ଏଣ୍ଡ ଡମ ସ୍କୁଲରେ ତାର କାନ ଓ ଗଳା ପରୀକ୍ଷା କରାଇଥିଲୁ । ସୁଇଜରଲେଣ୍ଡରେ ମଧ ଡାକ୍ତର ଦେଖାଇ ସେମାନେ କହିବା ମୁତାବକ Ionesion

ଦ୍ୱାରା ତାକୁ ଚିକିତ୍ସା କରାଇଥିଲୁ । ତା ପାଇଁ ସମସ୍ତ ସମୟରେ ମନରେ ଦୁଃଖ ଆସେ କିନ୍ତୁ ତାପାଇଁ ଯେତିକି କରିବା କଥା ସେଥିରେ ହେଳା କରିନାହୁଁ । ଘରେ ମାଷ୍ଟର ରଖି ତାକୁ ପାଠପଢାଇଥିଲୁ । ତାର ବୁଦ୍ଧି ଖୁବ୍ ପ୍ରଖର ହେତୁ ବହି ବାନ୍ଧିବା କାମ ତା ବାପାଙ୍କଠାରୁ ଶିଖିଥିଲା ଓ ଚେରମୁଳିରେ ଔଷଧି ତିଆରି କରି ଅନେକ ଲୋକଙ୍କୁ ଆରୋଗ୍ୟ କରିଛି । ଯେଉଁ କାମରେ ଲଗାଇଲେ ତାହା ନିପୁଣ ଭାବରେ କରିପାରେ । ଭଗବାନ ତାକୁ ଦୀର୍ଘଜୀବି କରି ରଖିଥାନ୍ତୁ ଏହା ଶ୍ରୀ ଜଗନ୍ନାଥଙ୍କଠାରେ ଏକାନ୍ତ ପ୍ରାର୍ଥନା ।

ମୋର ପାଞ୍ଚୋଟି ଦିଅର ଥିଲେ । ସେମାନେ ସମସ୍ତେ ମୋତେ ବଡ ଭାଉଜର ସମ୍ମାନ ଦେଇ ଆସିଛନ୍ତି । ସବୁଠାରୁ ଛୋଟ ଦୁଇ ଦିଅର ଟିକି ଓ ସାନ ମୋ ପାଖେ ପାଖେ ରହିଥିଲେ । ମୁଁ ଦୀର୍ଘକାଳ ସନ୍ତାନ ହୀନା ଥିବା ହେତୁ ଯେଉଁମନ କଷ୍ଟ କରୁଥିଲି ସେମାନେ ପାଖେ ପାଖେ ରହୁଥିବାରୁ ମୁଁ ସନ୍ତାନ ଦୁଃଖ ମଧ ସମସ୍ତ ସମୟରେ ଭୁଲିଯାଉଥିଲି । ମୋର ସ୍ୱାମୀ ରାଜା ସାହେବ ମଧ ସେମାନଙ୍କୁ ପୁତ୍ର ତୁଲ୍ୟ ଭାବି ସେମାନଙ୍କର ସର୍ବବୀଧ ସୁଖ ସ୍ୱାଛନ୍ଦପ୍ରତି ଦୃଷ୍ଟି ଦେଇଥିଲେ । ଆଜି ଜଣେ ଜଣେ ହୋଇ ସ୍ୱର୍ଗଧାମକୁ ଚାଲିଯାଇଛନ୍ତି । କେବଳ ଗୌରେନ୍ଦ୍ର ପ୍ରତାପ ଓ ସମରେନ୍ଦ୍ର ପ୍ରତାପ ଅଛନ୍ତି । ଭଗବାନଙ୍କଠାରେ ସେମାନଙ୍କର ମଙ୍ଗଳ କାମନା କରୁଛି । ସେମାନେ ଦୀର୍ଘଜିବି ହୋଇ ସୁଖରେ ରୁହନ୍ତୁ । ମୋ ଜାଆମାନେ ମଧ ମୋର ଭଉଣୀ ତୁଲ୍ୟଥିଲେ । ସେ ପାଞ୍ଚଜଣଙ୍କ ମଧରୁ ଦୁଇ ଜଣ ଜୀବିତ ଅଛନ୍ତି ।

ଆମ ପରିବାରିକ ଜୀବନ ବଡ ସୁଖ ସ୍ୱାଛନ୍ଦ୍ୟରେ କଟିଯାଇଛି । ଆମେ ଯେଉଁମାନେ ବର୍ତ୍ତମାନ ଜୀବିତ ଅଛୁ ଶ୍ରୀ ଭଗବାନଙ୍କର ଶ୍ରୀ ଚରଣେ ଆଶ୍ରୟ କରି ଚାଲୁଁ ଏହା ଶ୍ରୀ ଜଗନ୍ନାଥଙ୍କଠାରେ ଭକ୍ତିପୂତ ଅନ୍ତରର କାମନା

Ratna Prabha Devi

(ରତ୍ନପ୍ରଭା ଦେବୀ)

Annexure - I

# DHENKANAL

STATE  GAZETTE,

**Extraordinary.**

PUBLISHED BY AUTHORITY

DHENKANAL, MARCH 31, 1936

CONSTITUTION OF THE COUNCIL.

Whereas the Ruler considers it expedient and desirable that there should be an Executive Council for the Dhenkanal State, it is hereby ordered that such a Council be constituted as follows :-

| | | |
|---|---|---|
| 1. | Ruler of the State | President |
| 2. | Patait N.P. Singh Deo, B.A. | Vice-President |
| 3. | Dewan Bahadur D.N. Das B.A. | Judicial Member. |
| 4. | Rajkumar S.P. Singh Deo, B.L. | Home Member |

1. The following matters will be dealt with and finally decided by this council.

(a) All mattters involving policy and procedure and all rules and orders of general nature and application concerning any of the departments of the administration.

(b) All appointments to Superior service.

(c) Suspension or dismissal of the public servants or Superior services of any of the departments of the State.

(d) All matters relating to the introduction of any laws and rules there under or any part thereof into the State and also repeal of such laws and rules so far as the State is concerned.

(e) All matters regarding the general policy oflandsettlment,reclamation , irrigation and all other cognate subjects.

(f) All matters relating to the general policy about finance including the budget.

(g) All matters relating to the foreign affairs including extradition with the exception of those which the Ruler will be pleased to deal with himself without reference to the Executive Council.

(h) All matters which any of members or members may consider to be of sufficient importance in any of the departments in their respective portfolios to go before the Executive Council.

(i) Distribution of Portfolios.

(j) Any other matter which the Ruler will be pleased to order especially to be brought before this Council for deliberation and decision.

2. Final decision of the Council will follow the majority of the votes except that of the Ruler subject to the final approval or veto of the Ruler, the President.

3. The Ruling Chief shall exercise all powers of supervision and control over the administration of subjects entrusted to the Vice-President and members of the Council.

4. The meeting of the Executive Council will be called under the direct order of the President or in his absence from the Head Quarters, of the Vice-President if occasion or emergency requires this course, by a notice over the signature of the Secretary.

5. All proceedings of the Council will be recorded in the minute book to be signed by the President which will be maintained by the Secretary.

6. This order of the Ruler shall take effect from 1st April 1936 and remain in froce until further order.

7. Detailed list of the Portfolios in charge of the members of the Executive Council.

a) Vice-President will be in charge of the portfolios of :

1) Political, Foreign and appointment department.

2) Finance

3) State Secretariat.

4) Collectorate including Treasury, Audit, Land revenue and miscellaneous revenue.

5) Revenue departments i.e. certificate, mutation leases etc.

6) Forest.

7) Research work.

8) General supervision.

b) Home Member will remain in charge of the portfolios of -

1) Development department
2) Education.
3) Medical and sanitation.
4) Police and Excise.
5) Model farm and garden.
6) Store department.
7) Jail and press
8) Village improvement and Rural uplift work.
9) Agriculture
10) Fisheries.
11) Industry and commerce.
12) Local self Government.
13) State granary.
14) Mining.
15) P.W.D and Irrigation.

c) The Judicial member will remain in charge of the Portfokios of :

1) Law and Justice
2) Nizarat
3) Record Room
4) State Gazette.

By order of the Ruler
Sd/ N.P. Singh Deo.
Prime Minister

## CONSTITUTION OF THE HIGH COURT.

Whereas the Ruler considers it expedient and desirable that the State of Dhenkanal should have a High Court of Justice , it is hereby ordered as follows :-

1. There shall be a High Court called 'The High Court of Judicature at Dhenkanal" exercising the extraordinary original Jurisdiction, and appellate and revisional jurisdiction, both Civil and Criminal as provided respectively in the Code of Civil Procedure and in the code of Criminal Procedure now in force within the territorial limits of the States.

2. The High Court shall consist of a Chief Judge and as many judges

not exceeding 3 as the Ruller may form time time think fit to appoint, who shall be selected from among persons qualified as hereinafter mentioned Viz.

1) A barrister or an Advocate of not less then 10 years standing

or

2) A person who has held judicial office not inferior to that of a sub-ordinate judge or a District Officer or a Judge of small cause court either in British India or in any Indian State for not less than 5 years.

3) a) The High Court shall ordinarily excercise its appellate and revisional powers by a bench of two judges of that Court.

b) The jurisdiction of the High Court may be exercised by a single judge of that Court in the following matters only and until further orders in no others :-

i) On the Criminal side - granting bail, admitting appeals and admitting and disposing of petitions for revision of orders of the Sessions Judge and Magistrates.

ii) On the Civil side - disposing of second appeals in suits valued at not more than Rs.200/- and civil revision.

iii) The Chief Judge may hear any civil suit in exercise of the original jurisdiction of the High Court as the Ruler may be pleased to direct.

4) a) The High Court may make rules for the constitution of a Full Bench of the Court, and may, by such rules, prescribe the mode of determining which judges shall constitute as a Full Bench when such sitting becomes necessary.

b) The Chief Judge will determine the constitution of the Bench and distribution of cases.

5. The Chief Judge may transfer any case from the file of any Judge sitting alone to the file of any other Judge or Bench of the Court.

6. Any•Judge of the High court sitting alone and any Bench of Judges thereof not being a Full Bench may refer, for the decision of a Bench of two Judges or of a Full Bench, any question of law or custom having the force of law, or of the construction of any document, or of the admissibility of any evidence, arising in any case before the Judge or Bench, and such Judge or Bench shall dispose of the case in accordance with the decision of the Bench to which the question has

been referred.

7. a) Where there is difference of opinion among the Judges composing any Bench of the High Court, the decision shall be in accordance with the decision of the majority of those Judges.

b) If there is no such majority.

i) The decision shall be in accordance with the opinion of the Senior Judge of the Bench;

ii) in other cases, the Bench before which the difference has arisen, shall refer the point or points of difference to such other Judge of the Court as may be selected by the Chief Judge, and the case shall be disposed of in accordance with the decision of such Judge.

8. The High Court may, from time to time by notification, make rules not inconsistent with any Reguilation or order for the time being in force.

a) declaring what persons shall be permitted to practise as pleaders in the High Court and other Courts subordinate thereto ;

b) declaring what persons shall be permitted to practise as petition writers in the Subordinate Courts of the State, regulating the conduct of business by persons so practising, determining the authority by which breach of rules under this clause shall be dealt with and prescribing the procedure to be followed by such authority;

c) providing for the translation, if any of any papers filed or produced in the High Court, and requiring payment of the expenses incurred therefor;

d) Prescribing the persons who shall be entitled to inspect records of any Court, regulating the procedure for the inspection of such records or for obtaining a copy of the same, and prescribing the fees payable for such inspection and for copies;

e) prescribing the travelling and other expenses to be allowed to witnesses in Civil cases, and the fees to be allowed to Commissioners appointed by Civil Courts;

f) prescribing costumes to be worn in Court by the judges of the High Court and the courts subordinate thereto and by legal practitioners;

g) conferring and imposing on the Ministerial officers of the High Court and of the courts subordinate thereto such powers and duties of a non-judicial or quasi-judicial nature as it thinks fit, and

regulating the mode in which powers and duties so conferred and imposed shall be exercisaed and perrformed.

h) prescribing forms and registers to be used in the subordinate Courts;

i) providing for the inspection of the subordinate Courts, and the supervision of the working thereof; and

j) regulating all such matters as it may think fit, with a view to promoting the efficienty of the Judicial and ministerial officers of the Courts of the State and maintaining proper discpline among such officers.

9. The High Court shall keep such registers, books and accounts as may be necessary for the transaction of the business of the Court.

By order of the Ruler.

Sd/ N.P. Singh Deo
Prime Minister

---

ABOLITION OF BETHI SYSTEM

Whereas it is considered expedient that Bethi System which is in vogue since time immemorial and has outlived its utility and is no longer suited to the temparament and outlook of the people in general and whereas the origin of this system is based on the fact that some reduction in the rental was allowed as an exchange for the Bethi labour and whereas it is considered necessary to provide certain restriction to meet emergency;- it is hereby ordered that (1) the bethi system will be abolished with effect from 1st April 1936 subject to the following reservations :-

1) Social ceremonies of the Ruling Family.
2) Shikar
3) Forest fire.

In case of Kheda operations labour will have to be secured compul sorily of course on payment of wages rates of which will be determined on such occasion. Rates of wages for labour to be required for works of other departments of the State will also ave to be

determined in view of the pravailing economic conditions from time to time.

II) In lieu of Forced labour the tenants concerened will contribute Rs.0.40 per rupee to the state fund in view of the fact that the state should be compensated for the loss of such labour.

III) That all Lakhrajdars barring Debottar and Khanja Lakh rajdar, other rent free Jagirdars and their Stitiban tenants will contribute at the same rate calculated over the rentals at which their holdings would have been assesed upon as ordinary tenants of the State as the benefits they would derive from the abolition of the system will be undeniable and considerable.

By order of the Ruler
Sd/N.P. Singh Deo
Prime Minister

# କାଉନ୍‌ସିଲ୍ ସଂଗଠନ

ଯେହେତୁ ମହାମହିମ ଢେଙ୍କାନାଳାଧୀଶ୍ୱର ଢେଙ୍କାନାଳ ଷ୍ଟେଟ୍‌ରେ ଗୋଟିଏ ଏକ୍‌ଜିକିଉଟିଭ୍ କାଉନ୍‌ସିଲ୍ ହେବା ବିହିତ ଏବଂ ବାଞ୍ଛନୀୟ ମନେ କରୁଅଛନ୍ତି, ସେହି ହେତୁରୁ ଏତଦ୍ୱାରା ଆଦେଶ କରାଯାଉ ଅଛିଯେ ଉକ୍ତ କାଉନ୍‌ସିଲଟି ନିମ୍ନଲିଖିତ ରୂପେ ସଂଗଠିତ ହେବ ।

| | |
|---|---|
| ୧. ମହାମହିମ ଢେଙ୍କାନାଳାଧୀଶ୍ୱର | ସଭାପତି |
| ୨. ପଟାୟତ ଏନ୍.ପି.ସିଂହ ଦେଓ, ବି.ଏ. | ସହକାରୀ ସଭାପତି |
| ୩. ଦେବାନ ବାହାଦୂର ଡି.ଏନ୍. ଦାସ, ବି.ଏ. | ଜୁଡିସିଆଲ ମେମ୍ବର |
| ୪. ରାଜକୁମାର ଏସ୍.ପି. ସିଂହ ଦେଓ, ବି.ଏଲ | ହୋମ୍ ମେମ୍ବର |

୧ ନିମ୍ନଲିଖିତ ବିଷୟ ସବୁ ଉକ୍ତ କାଉନସିଲ୍ ଦ୍ୱାରା ଆଲୋଚିତ୍ ହୋଇ ଶେଷ ନିଷ୍ପତ୍ତି କରାଯିବ ।

କ) ନୀତି ଓ ପଦ୍ଧତି ସମ୍ପର୍କୀୟ ସମସ୍ତ ବିଷୟ ଏବଂ ଶାସନର ଯେ କୌଣସି ବିଭାଗ ସମ୍ବନ୍ଧୀୟ ପ୍ରୀତି ଏବଂ ପ୍ରୟୋଗର ନିୟମ ଓ ଆଦେଶ ।

ଖ) ଉଚ୍ଚଶ୍ରେଣୀର ଚାକିରିର କର୍ମଚାରୀମାନଙ୍କର ନିଯୁକ୍ତି ।

ଗ). ଷ୍ଟେଟ୍‌ର ଯେ କୌଣସି ବିଭାଗର ଉଚ୍ଚ ଶ୍ରେଣୀର ଚାକିରିରେ ଥିବା ସାଧାରଣ କର୍ମଚାରୀ ମାନଙ୍କୁ କାର୍ଯ୍ୟରୁ ରହିତ କରିବା ବା ବହିଷ୍କରଣ କରିବା ।

ଘ) ଷ୍ଟେଟ୍‌ରେ କୌଣସି ଆଇନ୍ ଏବଂ ତତ୍ ସମ୍ପର୍କୀୟ ନିୟମ କିମ୍ବା ଉକ୍ତ ଆଇନର ଅଂଶ ବିଶେଷ ପ୍ରଚଳନ ଏବଂ ଷ୍ଟେଟ୍‌ର ଆବଶ୍ୟକତା ଅନୁସାରେ ଉକ୍ତ ଆଇନ ଓ ନିୟମ ଗୁଡ଼ିକ ରହିତ କରିବା ସଂପର୍କୀୟ ସମସ୍ତ ବିଷୟ ।

ଙ) ଜମି ବନ୍ଦୋବସ୍ତ, ନୟାବାଦ, ଜଳ ସେଚନ ଏବଂ ତତ୍‌ସଂପର୍କୀୟ ଅନ୍ୟାନ୍ୟ ସମୁଦାୟ ଘଟଣାମାନଙ୍କର ସାଦ୍ଧାରଣ ନୀତି ସମ୍ବନ୍ଧୀୟ ସମୁଦାୟ ବିଷୟ ।

ଚ) ବଜେଟ ସହ ଅର୍ଥ ବିଷୟକ ସାଧାରଣ ନୀତିର ସମସ୍ତ ବିଷୟ ।

ଛ) ବୈଦେଶିକ ପ୍ରସଙ୍ଗ (ଏକ୍‌ସ୍‌ଟ୍ରାଡିସନ ସହ) ସଂପର୍କୀୟ ସମସ୍ତ ବିଷୟ । ଏ ସଂପର୍କରେ ମହାମହିମ ଢେଙ୍କାନାଳାଧୀଶ୍ୱର କାଉନ୍‌ସିଲର ବିନାପରାମର୍ଶରେ ନିଜେ ଯଦି କିଛି ବଚାର କରିବାକୁ ଚାହାନ୍ତି, ତାହା କରି ପାରିବେ ।

ଜ) କୌଣସି ମେମ୍ବର ବା ମେମ୍ବରମାନେ ସ୍ୱୀୟ ତତ୍ତ୍ୱବଧାନରେ ଥିବା ବିଭାଗମାନଙ୍କର ଯେଉଁସବୁ ଏକ୍‌ଜିକିଟିଭ୍ କାଉନ୍‌ସିଲ୍‌ରେ ଆଗତ କରିବାକୁ ବିଶେଷ ଆବଶ୍ୟକ ବୋଲି ବିବେଚନା କରନ୍ତି, ସେସବୁ ବିଷୟ ।

ଝ) ବିଭାଗ ବଣ୍ଟନ ।

ଞ) ଅନ୍ୟ ଯେ କୌରସି ବିଶିଷ୍ଟ ବିଷୟ ମହାମହିମ ଢେଙ୍କାନାଳାଧୀଶ୍ୱର ବିଚାର ଏବଂ ନିଷ୍ପତ୍ତି ପାଇଁ କାଉନସିଲ୍‌ରେ ଆଗତ ହେବାକୁ ଆଦେଶ ଦିଅନ୍ତି ।

୨. ଅଧିକାଂଶ ସଭ୍ୟଙ୍କର ମତାନୁସାରେ କାଉନସିଲ୍ ର ଶେଷ ନିଷ୍ପତ୍ତି ହେବ । ସଭାପତି ମହୋଦୟଙ୍କ ମତ ନିଆଯିବ ନାହିଁ । କିନ୍ତୁ ସଭାର ଶେଷ ନିଷ୍ପତ୍ତି ତାଙ୍କର ଶେଷ ଅନୁମୋଦନ ବା ସ୍ୱତନ୍ତ୍ର ବିଚାରକ୍ଷମତା ଉପରେ ନିର୍ଭର କରିବ ।

୩. ସହକାରୀ ସଭାପତି ଏବଂ କାଉନସିଲର ଅନ୍ୟାନ୍ୟ ମେମ୍ବରମାନଙ୍କର ତତ୍ତ୍ୱାବଧାନରେ ଥିବା ବିଷୟ ମାନଙ୍କର ପରିଚାଳନା ଉପରେ ପରିଦର୍ଶନ ଏବଂ ଶାସନର ସମସ୍ତ କ୍ଷମତା ମହାମହିମ ଢେଙ୍କାନାଳଧୀଶ୍ୱର ପରିଚାଳନନା କରିବେ ।

୪. ସଭାପତି ମହୋଦୟଙ୍କର ସାକ୍ଷାତ ଆଦେଶରେ କିମ୍ବା ହେଡ୍‌କ୍ୱାଟରରୁ ତାଙ୍କର ଅନୁପସ୍ଥିତିରେ, ବଶେଷ ଘଟଣା ବା ଜରୁରୀ କାର୍ଯ୍ୟରେ ଦରକାର ପଡିଲେ, ସହକାରୀ ସଭାପତିଙ୍କର ସାକ୍ଷାତଆଦେଶରେ ସେକ୍ରେଟାରୀଙ୍କ ଦସ୍ତଖତ ଥାଇ, ବିଜ୍ଞାପନ, ଦରିଆରେ, ଏକ୍‌ଜିକୁଟିଭ୍ କାଉନସିଲର ଅଧିବେଶନ ଆହୂତ ହେବ ।

୫. କାଉନସିଲର ବିବରଣ ଗୁଡିକ ଗୋଟିଏ ମାଇନିଉଟ ବହିରେ ବା ବିବରଣୀ ପୁସ୍ତିକାରେ ଲେଖା ହେବ । ଏହି ବହିରେ ସଭାପତି ମହୋଦୟଙ୍କର ଦସ୍ତଖତ ରହିବ ଏବଂ ଉକ୍ତ ବହିଟି ସେକ୍ରେଟାରୀଙ୍କ

ଦ୍ୱାରା ରକ୍ଷିତ ହେବ ।

୬. ମହାମହିମ ଢେଙ୍କାନାଳାଧୀଶ୍ୱରଙ୍କର ଏହି ଆଦେଶ ୧୯୩୬ ସାଲ ଏପ୍ରିଲ ମାସର ପ୍ରଥମ ଦିବସରୁ ଜାରି ହେବ ଏବଂ ଅନ୍ୟାଦେଶ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହେବ ।

୭. ଏକ୍‌ଜିକିଉଟିଭ୍ କାଉନସିଲ୍‌ର ମେମ୍ବରମାନଙ୍କର ତତ୍ତ୍ୱାବଧାନରେ ଥିବା ବିଷୟମାନଙ୍କର ବିସ୍ତୃତ ତାଲିକା :-

କ) ସହକାରୀ ସଭାପତିଙ୍କ ତଳଲିଖିତ ତତ୍ତ୍ୱାବଧାନ :-

୧. ରାଜନୈତିକ, ବୈଦେଶିକ ଏବଂ ନିଯୁକ୍ତି ବିଭାଗ ।

୨. ଅର୍ଥ

୩. ଷ୍ଟେଟ୍ ସେକ୍ରେଟରିଏଟ୍ ।

୪. ଟ୍ରେଜେରୀ, ଅଡିଟ୍ ଭୂମି ଏବଂ ଅନ୍ୟାନ୍ୟ ରାଜସ୍ୱସହ ଆୟ ବିଭାଗ

୫. ରାଜସ୍ୱ ବିଭାଗମାନ; ଯଥା - ସାର୍ଟିଫିକେଟ୍, ମିଉଟେସନ୍ ପଟା ଇତ୍ୟାଦି ।

୬. ଜଙ୍ଗଲ

୭. ରିସାର୍ଚ୍ଚ କାର୍ଯ୍ୟ ।

୮. ସାଧାରଣ ପରିଦର୍ଶନ ।

ଖ) ହୋମ୍ ମେମ୍ବରଙ୍କ ତତ୍ତ୍ୱବଧାନ :-

୧. ଉନ୍ନତି ବିଭାଗ

୨. ଶିକ୍ଷା

୩. ମେଡିକାଲ୍ ଏବଂ ସ୍ୱାସ୍ଥ୍ୟ

୪. ପୋଲିସ୍ ଏବଂ ଏକ୍‌ସାଇଜ୍

୫. ଆଦର୍ଶ କୃଷି ମନ୍ଦିର ଏବଂ ଉପବନ

୬. ଷ୍ଟୋର ବିଭାଗ

୭. ଜେଲ୍ ଏବଂ ଛାପାଖାନା

୮. ଗ୍ରାମୋନ୍ନତିଜନିତ କାର୍ଯ୍ୟ

୯. କୃଷି

୧୦. ମତ୍ସ୍ୟ

୧୧. ବ୍ୟବସାୟ ଓ ବାଣିଜ୍ୟ

୧୨. ସ୍ଥାନୀୟ ସ୍ୱାୟତ୍ତ ଶାସନ

୧୩. ଷ୍ଟେଟ୍ ଖମାର

୧୪. ଖଣି

୧୫. ପି.ଡବଲିଉ. ଡି. ଏବଂ ଜଳସେଚନ ବିଭାଗ

ଗ) ଜୁଡିସିଆଲ ମେମ୍ବରଙ୍କ ତତ୍ତ୍ୱାବଧାନ ।

୧. ଆଇନ୍ ଏବଂ ନ୍ୟାୟ

୨. ନାଜରାତି

୩. ମହାଫିଜ୍ ଖାନା

୪. ଷ୍ଟେଟ୍ ଗେଜେଟ୍

ଅନୁମତ୍ୟନୁକ୍ରମେ
ଏନ୍.ପି. ସିଂହ ଦେଓ
ପ୍ରାଇମ୍ ମିନିଷ୍ଟର

# ହାଇକୋର୍ଟ ସଂଗଠନ

ଯେହେତୁ ଢ଼େଙ୍କାନାଳ ଷ୍ଟେଟ୍‌ରେ ଗୋଟିଏ ହାଇକୋର୍ଟ ଅଫ୍ ଜଷ୍ଟିସ୍ ହେବା ବିହିତ ଏବଂ ବାଞ୍ଛନୀୟ ବୋଲି ମହାମହିମ ଢ଼େଙ୍କାନାଳାଧୀଶ୍ୱର ବିବେଚନା କରନ୍ତି, ତେଣୁ ଏତଦ୍ୱାରା ନିମ୍ନଲିଖିତ ଆଦେଶ କରାଯାଉଛି ।

୧. "ଦି ହାଇକୋର୍ଟ ଅଫ୍ ଜୁଡିକେଚର ଆଟ ଢ଼େଙ୍କାନାଳ" ନାମରେ ଗୋଟିଏ ହାଇକୋର୍ଟ ରହିବ । ଷ୍ଟେଟ୍‌ର ରାଜ୍ୟ ସୀମା ମଧ୍ୟରେ ପ୍ରଚଳଥିବା କୋର୍ଡ ଅଫ୍ ସିଭିଲ୍ ପ୍ରସିଡିଓର ଅନୁସାରେ ପରିଚାଳିତ ଦେବାନି ଏବଂ ଫୌଜଦାରୀ ଶାସନର ଅସାଧାରଣ ପ୍ରାଥମିକ, ଆପିଲେଟ୍ ଏବଂ ରିଭିଜନାଲ କ୍ଷମତା ଉକ୍ତ ହାଇକୋର୍ଟ ପରିଚାଳନା କରିପାରିବ ।

୨. ହାଇକୋର୍ଟରେ ଜଣେ ଚିଫ୍ ଜଜ ଏବଂ ତିନିଜଣ ବା ତହିଁରୁ କମସଂଖ୍ୟକ ଜଜ୍, ମହାମହିମ ଢ଼େଙ୍କାନାଳାଧୀଶ୍ୱରଙ୍କର ବିବେଚନାନୁସାରେ ଥରକୁ ଥର ନିଯୁକ୍ତ ହେଉଥିବେ । ସେମାନଙ୍କଠାରେ ଏହାପରେ ଲିଖିତ ହୋଇଥିବା ଗୁଣଥିବା ଆବଶ୍ୟକ ।

୧) ଦଶବର୍ଷ ବା ତହିଁରୁ ଅଧିକ ବର୍ଷ କାର୍ଯ୍ୟକରିଥିବା କୌଣସି ବାରିଷ୍ଟର ବା ଆଡ୍‌ଭୋକେଟ

କିମ୍ବା

୨) ଯେଉଁ ବ୍ୟକ୍ତି ଜଣେ ସବ୍‌ଡିନେଟ୍ ଜଜ୍ କିମ୍ବା ତଦପେକ୍ଷା ଉପର ସ୍ତରରେ ବିଚାର ବିଭାଗରେ,

କିମ୍ବା ଡିଷ୍ଟ୍ରିକ୍ଟ୍ ଅଫିସର ଭାବରେ, କିମ୍ବା ପାଞ୍ଚବର୍ଷ ବା ତତୋଧିକ ସମୟ ପାଇଁ ବ୍ରିଟିଶ ଭାରତ ବା ଭାରତୀୟ ଷ୍ଟେଟ୍‌ରେ ସ୍ମଲକଜ୍ କୋର୍ଟର ଜଜ୍‌ଭାବରେ କାର୍ଯ୍ୟ କରିଛନ୍ତି ।

୩. କ) ହାଇକୋର୍ଟ, ସାଧାରଣତଃ ସେହି କୋର୍ଟର ଦୁଇଜଣ ଜଜ୍‌ଙ୍କଦ୍ୱରା ଗଠିତ ବେଞ୍ଚଦ୍ୱାରା ତାହାର ଆପିଲେଟ୍ ବା ରିଭିଜନାଲ କ୍ଷମତା ପରିଚାଳନ କରିପାରିବ ।

ଖ) ଅନ୍ୟାଦେଶ ପର୍ଯ୍ୟନ୍ତ କେବଳ ନିମ୍ନଲିଖିତ ବିଷୟମାନଙ୍କରେ ହାଇକୋର୍ଟର ଜଣେ ମାତ୍ର ଜଜ୍ ସେହି କୋର୍ଟର କ୍ଷମତାମାନ ପରିଚାଳନ କରି ପାରିବେ ।

(୧) ଫୌଜଦାରୀ ସଂପର୍କ - ଜାମିନ୍‌ଦେବା, ଅପିଲ ଗ୍ରହଣ କରିବା ଏବଂ ସେସନଜଜ୍ ଓ ମାଜିଷ୍ଟ୍ରେଟ୍ ମାନଙ୍କର ଆଦେଶରେ ରିଭିଜନ ପାଇଁ ଦରଖାସ୍ତ ଗହଣକରି ଫଇସଲା କରିବା ।

(୨) ଦେବାନି ସଂପର୍କ - ଦୁଇଶହ ଟଙ୍କା ବା ତହିଁରୁ କମ୍‌ଟଙ୍କାର ମକଦ୍ଦମାମାନଙ୍କରେ ଦ୍ୱିତୀୟ ଆପିଲ ଫଇସଲ କରିବା ଏବଂ ଦେବାନି ରିଭିଜନ କରିବା ।

(୩) ମହାମହିମ ଢେଙ୍କାନାଳାଧୀଶ୍ୱରଙ୍କର ଆଦେଶ ଅନୁସାରେ ହାଇକୋର୍ଟର ପ୍ରାଥମିକ କ୍ଷମତା ପରିଚାଳନା କରି ଚିଫ୍, ଜଜ୍ ଯେକୌଣସି ଦେବାନି ମୋକଦ୍ଦମା ବିଚାର କରିପାରିବେ ।

(୪) (କ) ହାଇକୋର୍ଟ ଫୁଲ୍ ବେଞ୍ଚର ସଂଗଠନ ବିଷୟରେ ନିୟମ କରି ପାରିବେ ଏବଂ ଫୁଲ ବେଞ୍ଚ ବସିବା ଆବଶ୍ୟକ ହେଲେ ସେଥିରେ ଯେଉଁ ଜଜ୍‌ମାନେ ବସିପାରିବେ ତାହା ଉପଯୁକ୍ତ ନିୟମ ଦ୍ୱାରା ନିର୍ଦ୍ଧାରଣ କରିପାରିବେ ।

(ଖ) ଚିଫ୍ ଜଜ୍, ବେଞ୍ଚ ସଂଗଠନ ଏବଂ ମୋକଦ୍ଦମା ବଣ୍ଟନ ନିର୍ଦ୍ଧାରଣ କରବେ ।

(୫) ଚିଫ୍‌ଜଜ୍ ଏକାକୀ କାର୍ଯ୍ୟ କରୁଥିବା କୌଣସି ଜଜ୍‌ଙ୍କ ଫାଇଲରୁ ଯେ କୌଣସି ମୋକଦ୍ଦମା ଅନ୍ୟ କୌଣସି ଜଜ୍ ବା ବେଞ୍ଚର ଫାଇଲକୁ ନେଇଯାଇପାରିବେ ।

(୬) ଏକାକୀ କାର୍ଯ୍ୟ କରୁଥିବା ହାଇକୋର୍ଟ କୌଣସି ଜଜ୍ ବା ବେଞ୍ଚ (ଯାହାକି ଫୁଲ୍ ବେଞ୍ଚ ନୁହେଁ) ଆଇନ ବିଷୟରେ କିମ୍ବା ଆଇନ ପରି ବଳବାନ କୌଣସି ରୀତି, କିମ୍ବା କୌଣସି ଦସ୍ତାବିଜ ଲେଖନ, କିମ୍ବା କୌଣସି ସାକ୍ଷ୍ୟର ଗ୍ରହଣ ଯୋଗ୍ୟତା ବିଷୟରେ ସେହି ଜଜ୍ ବା ବେଞ୍ଚଙ୍କ ସମକ୍ଷରେ ଯଦି କୌଣସି ପ୍ରଶ୍ନ ଉତ୍ଥାପିତ ହୁଏ, ତାହା ଦୁଇଜଣ ଜଜ୍‌ଙ୍କ ଦ୍ୱାରା ଗଠିତ ବେଞ୍ଚକୁ ବା ଫୁଲ୍ ବେଞ୍ଚକୁ ପଚାରି ପାରିବେ ଏବଂ ପ୍ରୋକ୍ତ ପ୍ରଶ୍ନ ପୃଷ୍ଟ ହୋଇଥିବା ବେଞ୍ଚର ବିଚାର ଅନୁସାରେ ପୂର୍ବୋକ୍ତ ଜଜ୍ ବା ବେଞ୍ଚ୍ ମୋକଦ୍ଦମା ଫଇସଲ କରିବେ ।

୭. ହାଇକୋର୍ଟର କୌଣସି ବେଞ୍ଚର ଜଜ୍‌ମାନଙ୍କ ମଧ୍ୟରେ ମତଭେଦ ହେଲେ ଅଧିକାଂଶ ଜଜ୍‌ଙ୍କ ବିଚାର ଅନୁସାରେ ବିଚାର କରାଯିବ ।

## XI

surveillance." With regard to the cultural development of the State

**Annexure-II**

# Darbar's Address

DHENKANAL

STATE  GAZETTE,

**Extraordinary.**

PUBLISHED BY AUTHORITY

DHENKANAL, 26th June1939

CONSTITUTION OF THE COUNCIL.

**26.6.1939**
**DHENKANAL**

The State of Dhenkanal may justly feel proud of its administration which from the time of its illutrious founder Sri Hari Singh in 1529 A.D. upto the present has always been run with the sole object of promoting the cultural, social and economic welfare of the people and in this respect Dhenkanal occupeis perhaps a unique position among the States of Orissa. We use no language of convention when we say that no other State in Orissa can point to a record of more beneficent administration, broad-based on the good will of a grateful people. We confidently assert that in the race of progress the people of this State have never fallen behind their brethren in any other State.

A resume of the progress achieved in the past during the time of each successive Ruler, will make this address inordinatelylong and we would briefly touch on some important features of the administration as recorded by eminent authorities. The great historian Mr. W.W. Hunter who visited Dhenkanal in 1870 spoke of Dhenkanal as "the most civilised of the Tributary States though Mayurbhanj or the Peacock country was the largest" and of the Ruler as "representing the very highest point of culture, moderation and justice, which any of the chiefs has attained under the British

the homage of a grateful people must go back to that illustrious prince Maharaja Bhagirath Mahindra Bahadur who made extensive rent-free grants to maintain the position and culture of the Brahmin community. He was one of the few worthies from whom emanated the initiatives to which the Ravenshaw College, the Temple Medical Hospital and School and the Cuttak Printing Press owed their origin. But for his charities, the progress of education in Orissa would have been put back by at least 50 years. Mr. Stirling in his account of Orissa remarked, "The large percentage of the Brahmin population compared with the other Garjat States is accounted for by the fact that the previous Chiefs of Dhenkanal and more particularly Maharaja Bhagirath Mahindra Bahadur an enlightened Ruler and lover of Sanskrit literature, made extensive grants of Lakhraj lands to learned Brahmins and induced them to settle down in the State with a view to raise the standard of public morality.

This State can also boast of High English School established over 40 years ago when a similar institution could be found only in the State of Mayurbhanj and a Sanskrit tol the only institution of its kind at the time of its kind at the time of its establishment, used to attract students from long distances. Even now it occupies foremost place as a seat of Sanskrit learning. The expendiutre of the State under the head of education has always been very high. The amount generally spent under this head is nearly 13% of the total revenue. The percentage of literacy in this state is much higher when compared with that in neighbouring States and British Districts.

With regard to the social advancement of the people this State can take claim the credit of effecting an improvement of a far reaching character. Upto thee time of Maharaja Bhagirath Mahindra Bahadur, the aboriginal tribes used to go naked under a superstitious belief that the wearer of cloth would fall victim to tigers. It was the personal influence of that noble Ruler Bhagirath Mahindra Bahadur which disabused the people of this erroneous impression and the people were for the first time induced to wear cloth and all the apparels were distributed free by that magnanimous Maharaja. For the stabilisation of the society the bebeficent Ruler of the State have bestowed free jagirs (rent-free lands) on the barbers, potters, blacksmits, carpenters, washerman and men of different callings whose services were essential to the development of society.

No less important were the efforts of the Rulers of this State

towards the spiritual advancement of people. A spirit of toleration has alwasy marked the attitude of the Rulers towards the religious beliefs of different sects of the Hindu community and the followers of other religions. The bulk of people are followers of the Baisnab cult and the establishment of large number of shrines in different parts of the State point to the earnestness of the Ruler to satsify the religious cravings of the people. Even in recent times Baisnab preachers of high repute were brought to the holyland of ours which was sanctified by the visits of the great profounder of Baisnab cult-Mahapravu Sri Chaitanya Deb and Mahima Goswami the preacher of the Mahima cult. Every village in this State has its Bhagabat Ghar.

The economic development of the people has always engaged the careful attention of the Rulers of the State. The tenants have always had free access to the Rulers and a direct relationship subsists between the ruler and thetiller of the soil except in a few rent free tenures, but the percentage of such tenures is insignificant. Stable rights in land were conferred in the State on people long before similar privileges were granted in other States. This security of the tenancy right induced the people to apply themselves whole heartedly to the improvement of their agricultural condition and they had advanced to comfort and prosperity to such a degree that as early as 1818 Lt. Lawrie while passing through this State made the following remakrs :-

"This Mahal seems to have been one of nature's favoured spots, a sort of Peru on a small scale". We may incidentally mention here that the incidence of taxation per head in this State is only Rs.1/12 which is much less then what obtains in any one of the neighbouring States. The question of health and sanitation, the improvement of cattle and water supply in the State have always occupies a prominent place in the consideration of the authorities. There are about 2000 tanks within the ambit of the State and to help in the irrigation of important crops a bit water reservoir was constructed in 1935, capable of irrigating about 20000 acres of land.

The reservation of sufficient grazing land in each village known as Gochar marks, a distinct step towards improvement. A satisfactory increase in the number of hospitals and arrangement for combating outbreaks of epidemic diseases even in the outlying parts of the State constitute a marked feature of the administration.

The security of life and property is ensured by an effieient organisation of the Police. All laws of the State are codified and they are administered by an impartial judiciary and the individual liberty of the

